# ଜୀବନ-ତୀର୍ଥରେ
# କବି କମଳାକାନ୍ତ

ଡକ୍ଟର ମଥୁରନାଥ ହୋତା



ଫ୍ରେଣ୍ଡସ୍ ପବ୍ଲିଶର୍ସ
ପୁସ୍ତକ ପ୍ରକାଶକ ଓ ବିକ୍ରେତା
ବିନୋଦ ବିହାରୀ, କଟକ-୨

ଜୀବନ-ତୀର୍ଥରେ କବି କମଳାକାନ୍ତ । ଲେଖକ : ଡକ୍ଟର ମଥୁରାନାଥ ହୋତା, ପ୍ରକାଶକ : ସହଦେବ ପ୍ରଧାନ, ଫ୍ରେଣ୍ଡସ୍ ପବ୍ଲିଶର୍ସ ବିନୋଦବିହାରୀ, କଟକ-୨ । ପ୍ରଥମ ପ୍ରକାଶ : ବଡ଼ଦିନ—୧୯୮୭ । ପ୍ରଚ୍ଛଦ : ଶ୍ରୀ ଛନ୍ଦା ଚରଣ ଆଚାର୍ଯ୍ୟ, ମୁଦ୍ରଣ : ମହାଲକ୍ଷ୍ମୀ ପ୍ରେସ୍, ସାହେବଜାଦା ବଜାର, କଟକ-୨

JIBANA TIRTHARE KABI KAMALAKANTA
Authar : Mathuranatha Hota. Publisher : Sahadev Pradhan, FRIENDS' PUBLISHERS, Binodbehari, Cuttack 753002. First Edition : 25th December-1987 Cover Design : Chhanda Charan Acharya. Printer : MAHALAXMI PRESS, Sahebzada bazar, Cuttack-2

Price— Rs. 35-00

ପୂଜ୍ୟ ନନା ଡକ୍ଟର ଅଯୋଧ୍ୟାନାଥ ହୋତା ଓ ସ୍ନେହଶୀଳା ଭାଉଜ ଶ୍ରୀମତୀ ପ୍ରଣତି ହୋତାଙ୍କ ସଭକ୍ତି ନିବେଦିତ ।

# ପ୍ରାକ୍ କଥନୀ

ଦୀର୍ଘ ତିନି ଦଶନ୍ଧିରୁ ଊର୍ଦ୍ଧ୍ୱ କାଳ ଧରି ଶ୍ରୀ କମଳାକାନ୍ତ ଲେଙ୍କା ଜଣେ ନିରବଚ୍ଛିନ୍ନ କବି । କଳା ଓ ଜୀବନର ଐକ୍ୟବୋଧକୁ କାବ୍ୟରୂପ ଦେବାରେ ସେ ଅନ୍ୟତମ ଅଗ୍ରଣୀ ପ୍ରତିଭା । ସମାଲୋଚକଙ୍କ ଦ୍ୱାରା ସେ ଅଳ୍ପ ବହୁତେ ଆଲୋଚିତ । ତଥାପି ତାଙ୍କ କାବ୍ୟସମୂହର ନିଷ୍ଠାପର ମୂଲ୍ୟାୟନ ଏ ଯାବତ୍ ସମ୍ଭବ ହୋଇନାହିଁ । ସେଇ ଅଭାବବୋଧରୁ 'ଜୀବନ ତୀର୍ଥରେ କବି କମଳାକାନ୍ତ' ଗ୍ରନ୍ଥର ପରିକଳ୍ପନା । ଓଡ଼ିଶାରେ ଜଣେ ଜଣେ ଆଧୁନିକ କବିଙ୍କୁ ନେଇ ଗ୍ରନ୍ଥରଚନା କରିବାର ଏହା ତୃତୀୟ ଉଦ୍ୟମ । ଏହା ପୂର୍ବରୁ ଅଧ୍ୟାପକ ଦାଶରଥି ଦାସ 'ମୁଖଲୋକରେ ରକ୍ତ ସପ୍ତମ' ଓ ଅଧ୍ୟାପକ ଭଗୀରଥି ସାହୁ 'ସାଂପ୍ରତିକ କବିତା ଓ କବି ପ୍ରସନ୍ନ ପାଟଶାଣୀ' ଶୀର୍ଷକ ଗ୍ରନ୍ଥରଚନା କରି ଏ ଦିଗରେ ପଥପ୍ରଦର୍ଶକ ହୋଇଛନ୍ତି । ଆଧୁନିକ ଓଡ଼ିଆ କବିତା ନାନା ପ୍ରତିକୂଳତା ଓ ପ୍ରତିଦ୍ୱନ୍ଦ୍ୱିତା ଭିତରେ ଦୀର୍ଘ ପଚାଶ ବର୍ଷ ତାର ପ୍ରବାହ ଅବ୍ୟାହତ ରଖିଛି । ତେବେ ଏଥିପାଇଁ ସମାଲୋଚକଙ୍କର ଭୂମିକା ଯେ ଗୁରୁତ୍ୱପୂର୍ଣ୍ଣ, ଏହା ଅସ୍ୱୀକାର କରିହେବ ନାହିଁ । ଏ ପର୍ଯ୍ୟନ୍ତ ଆଧୁନିକ ଓଡ଼ିଆ କବିତା ଉପରେ ଲେଖାଯାଇଥିବା ପୁସ୍ତକର ସଂଖ୍ୟା ଅଙ୍ଗୁଳିମେୟ । ପୁଣି ସେଗୁଡ଼ିକ ତାତ୍ତ୍ୱିକ ମୋହକୁ ସମ୍ପୂର୍ଣ୍ଣରୂପେ ତ୍ୟାଗ କରିଛନ୍ତି ବୋଲି କହିହେବ ନାହିଁ । ଏ କଥାକୁ ସାମ୍ନାରେ ରଖି ଏ ଗ୍ରନ୍ଥ ରଚିତ । ଜାଣେନା ଏଥିରେ ମୁଁ କେତେଦୂର ସଫଳ ହୋଇଛି । ପାଠକେ ତାର ମୂଲ୍ୟାୟନ କରିବେ ।

ଏ ଗ୍ରନ୍ଥ ପ୍ରସ୍ତୁତିରେ କବି ଶ୍ରୀ ଲେଙ୍କା ପାଣ୍ଡୁଲିପି ଓ ଟିପ୍ପଣୀ ଯୋଗାଇ କାର୍ଯ୍ୟଟିକୁ ପୂର୍ଣ୍ଣାଙ୍ଗ କରିବାରେ ସହାୟତା ଦେଇଥିବାରୁ ମୁଁ ତାଙ୍କୁ ସାଧୁବାଦ ଜଣାଉଛି । ( ଏଥିରେ ଶ୍ରୀ ଲେଙ୍କାଙ୍କର ତିନୋଟି ଅପ୍ରକାଶିତ ପାଣ୍ଡୁଲିପି ଯଥା— 'ଉନ୍ମୋଚନ', 'ଦୁଃଖସହ କଥାବାର୍ତ୍ତା' ଏବଂ 'ଚିତା ଅଗ୍ନି କାନ୍ଥର ଛବି : ପରିଧି ବାହାରେ ଅପେକ୍ଷାରତ ପୃଥିବୀ' ବ୍ୟବହୃତ ହୋଇଛି । ସେ ଗ୍ରନ୍ଥଗୁଡ଼ିକରେ ସଙ୍କଳିତ କବିତା ପ୍ରାୟତଃ ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶିତ । ତେଣୁ ସେଗୁଡ଼ିକୁ ଆଲୋଚନାର ପରିସରଭୁକ୍ତ କରାଯାଇଛି । )

ଗ୍ରନ୍ଥଟି ପାଇଁ ସାମନ୍ତଚନ୍ଦ୍ରଶେଖର ମହାବିଦ୍ୟାଳୟ ଓଡ଼ିଆ ବିଭାଗର ମୁଖ୍ୟ ଅଧ୍ୟାପକ ତଥା ବିଶିଷ୍ଟ ସମାଲୋଚକ ଡ଼ଃ ହେମନ୍ତ କୁମାର ଦାସଙ୍କ ଉତ୍ସାହ କାର୍ଯ୍ୟଟିକୁ ତ୍ୱରାନ୍ୱିତ କରିଥିବାରୁ ତାଙ୍କ ନିକଟରେ ବିଶେଷ କୃତଜ୍ଞ । ଏହାଛଡ଼ା ମୋର ଅଧ୍ୟାପକ ବନ୍ଧୁ ଶ୍ରୀ ଉଦୟନାଥ ସାହୁ, ଶ୍ରୀ ସୁଶାନ୍ତ କୁମାର ବର୍ମା, ଡ଼ଃ

ଗୋପବନ୍ଧୁ ଦାଶ, ଶ୍ରୀ ବଳରାମ ଦାସ, ଡ଼ଃ ପ୍ରମୋଦ କୁମାର ଦାଶ, ଶ୍ରୀ ରବୀନ୍ଦ୍ରନାଥ ମିଶ୍ର ଓ ଆହୁରି ଅନେକ ବନ୍ଧୁ ପ୍ରେରଣା ଦେଇଥିବାରୁ ସେମାନଙ୍କୁ ଧନ୍ୟବାଦ ଜଣାଉଛୁ । ଏ ଗ୍ରନ୍ଥର ପୂର୍ଣ୍ଣତା ମୋ ସାନଭାଇ ଶ୍ରୀମାନ ବୈଦ୍ୟନାଥର ଏକନିଷ୍ଠ ସହଯୋଗ ଫଳରେ ସମ୍ଭବ ହୋଇପାରିଛି ବୋଲି ମର୍ମେ ମର୍ମେ ଅନୁଭବ କରୁଛୁ । ସବା ଶେଷରେ, ଗ୍ରନ୍ଥଟି ପାଠକମାନଙ୍କ ନିରପେକ୍ଷ ତଥା ଉଦାର ବିଚାରଶୀଳତାରେ ପରିଶୀଳିତ ହେବାର ଆଶା ରଖୁଛି ।

**ମଥୁରାନାଥ ହୋତା**

# ସୂଚୀ

# ପ୍ରଥମ ଅଧ୍ୟାୟ

## ଦ୍ୱିତୀୟ ବିଶ୍ୱଯୁଦ୍ଧୋତ୍ତର ପୃଥିବୀ ଓ ଆଧୁନିକ ଓଡ଼ିଆ କବିତା

ଦ୍ୱିତୀୟ ବିଶ୍ୱଯୁଦ୍ଧ ମଣିଷର ଭାଗ୍ୟ ଓ ଭବିତବ୍ୟ ପାଇଁ ଏକ ସୁକଠୋର ଅଭିଶାପ । ଆଣବିକ ବିସ୍ଫୋରଣ ସମ୍ବଳିତ ଏହି ଯୁଦ୍ଧ ମଣିଷର ଅନ୍ତଶ୍ଚେତନାରେ ଘଟାଇଥିଲା ଏକ ନିଷ୍ଠୁର ପରିବର୍ତ୍ତନ । ପ୍ରଥମ ବିଶ୍ୱଯୁଦ୍ଧରୁ ଅଙ୍କୁରିତ ସଂଶୟୀ ଦୃଷ୍ଟି ଦ୍ୱିତୀୟ ବିଶ୍ୱଯୁଦ୍ଧ କାଳରେ ଘନୀଭୂତ ହୋଇଛି । ଦୁଇ ମହାଯୁଦ୍ଧର ଏଇ ବିସ୍ତୀର୍ଣ୍ଣ ଉପତ୍ୟକା ଭିତରେ ଗତି କରିଥିବା ମଣିଷ ତାର ଚାରିପାଖର ପୃଥିବୀକୁ କେମିତି ଏକ ଭିନ୍ନ ଦୃଷ୍ଟିରେ ଦେଖିବାକୁ ଆରମ୍ଭ କରିଛି । ହିରୋସିମା, ନାଗାସାକୀର ବିଧ୍ୱସ୍ତ ଓ ବିକଳାଙ୍ଗ ମଣିଷ ନିକଟରେ ଜୀବନ ଏକ ଶୂନ୍ୟପାତ୍ର ଧରି ଠିଆ ହୋଇଥିଲା ବେଳେ ଅନ୍ୟ ଦିଗରେ ଚାଲିଛି ବୈଷୟିକ କ୍ଷେତ୍ରରେ ଅପ୍ରତ୍ୟାଶିତ ସମୃଦ୍ଧି । ସାରା ଜଗତ ହଠାତ୍ ଯେପରି ଚେଇଁ ଉଠିଛି ଏଇ ମାନବୀୟ ଆହ୍ୱାନର ସମ୍ମୁଖୀନ ହେବାପାଇଁ । ଜନମାନସରେ ବିଜ୍ଞାନ ପ୍ରତି ଆସିଛି ସଶ୍ରଦ୍ଧ ମନୋଭାବ । ମାତ୍ର ବିଜ୍ଞାନ ମଣିଷକୁ ଅନେକ କ୍ଷେତ୍ରରେ ପ୍ରତାରିତ କରିଛି । ଆପଣା ବୁଦ୍ଧି ବଳରେ ଶକ୍ତିଶାଳୀ ହେବା ଲାଗି ବିଭିନ୍ନ ଦେଶ ମଧ୍ୟରେ ଆରମ୍ଭ ହୋଇଯାଇଛି ଏକପ୍ରକାର ଦୁର୍ବିନୀତ ପ୍ରତିଯୋଗିତା । ସାଧାରଣ ମଣିଷକୁ ଏଥିପାଇଁ ତ୍ୟାଗ ସ୍ୱୀକାର କରିବାକୁ ପଡ଼ିଛି । କିନ୍ତୁ ସେମାନଙ୍କର କିଛି ଉପକାର ହୋଇନାହିଁ । ବହୁ ଅର୍ଥ ବ୍ୟୟ କରି ଯେଉଁ ସବୁ ଯୋଜନା କାର୍ଯ୍ୟକାରୀ କରାହୋଇଛି, ସେଥିରେ ସାଧାରଣ ସ୍ୱାର୍ଥକୁ ବଳି ଦିଆଯାଇଛି । ସାଧାରଣ ମଣିଷ ଦିନେ ହୁଏତ ଆଶାପୋଷଣ କରିଥିଲା— ଦିନେ ନା ଦିନେ ବିଜ୍ଞାନ ତାର ସାମାଜିକ ଓ ଆର୍ଥନୀତିକ ସମସ୍ୟାର ସମାଧାନ କରିବ । କିନ୍ତୁ ଏଇ ଭାବନା କ୍ରମଶଃ ଧୂମାଭ ହୋଇଯାଇଛି । ଧୂସର ପୃଥିବୀର ମଣିଷ ନୈରାଶ୍ୟର ଏକ ନିଷ୍ଠୁର ଇଲାକାରେ ଇତସ୍ତତଃ ହେଉଥିଲା ବେଳେ ବିଜ୍ଞାନ ତାର ବାହାଦୁରୀ ଦେଖେଇବାକୁ ଭୁଲି ନାହିଁ । ଆଲୋକଠାରୁ ଦ୍ରୁତଗାମୀ ଯାନ ନିର୍ମାଣ ପାଇଁ ସେ କର୍ମତତ୍ପର ହୋଇଛି । ଉଦ୍ୟମ କରିଛି ବିଶ୍ୱ ସୃଷ୍ଟିର ରହସ୍ୟ ଉନ୍ମୋଚନ ଲାଗି । ଦ୍ୱିତୀୟ ବିଶ୍ୱଯୁଦ୍ଧର ଗୁରୁତର ସମସ୍ୟାକୁ ସମାଧାନ କରି ଦେଇଛି ବୋଲି ଆଜି କିଏ ହୁଏତ ବାହୁସ୍ଫୋଟ ମାରୁଛି ।[୧] ମାତ୍ର ବିଶ୍ୱର ଘଟଣାବଳୀ ଏକ

୧ । Maslow, Abraham. 'Reaching Beyond The Rational' —an essay published in 'Time'—April, 1973.

ଭିନ୍ନ ରୂପରେ ଦେଖନ୍ତି । ଆଧୁନିକ ମଣିଷ ମନରେ ଏହାଦ୍ୱାରା ସଂଶୟ ସୃଷ୍ଟି ହେବା ସ୍ୱାଭାବିକ । ବିଶେଷ କରି ବିଂଶଶତକର ସପ୍ତମ ଦଶକର ପ୍ରାକ୍ କାଳରେ ଏଇ ପୃଥିବୀ କ୍ରମଶଃ ଅଧିକ କୁହେଳିକାଚ୍ଛନ୍ନ ହେବାକୁ ଲାଗିଛି । ଠିକ୍ ୧୯୬୫ ମସିହା ପରେ କୌଣସି ବୈଜ୍ଞାନିକ ସାଫଲ୍ୟ ମଣିଷ ମନରେ ଆଣୁଥିଲା ଚମକ । କିନ୍ତୁ ସପ୍ତମ ଦଶକ ବେଳକୁ ବିଜ୍ଞାନର ଆବିଷ୍କାରରେ ସେ ଗୁରୁତ୍ୱର ବେଦନା ଅନୁଭବ କରୁଛି । ଚିନ୍ତାଧାରାର କି ଦ୍ରୁତ ପରିବର୍ତ୍ତନ ! କାରଣ ମଣିଷ ଉପଲବ୍ଧି କରୁଛି ଯେ ସଭ୍ୟତା ଓ ସଂସ୍କୃତିର ବିନାଶ ନାମରେ ଏସବୁ ବ୍ୟୟବହୁଳ ଗବେଷଣାର ଉପଯୋଗିତା ଅତି ନଗଣ୍ୟ । ବୈଜ୍ଞାନିକ ଜ୍ଞାନର ପ୍ରସାର ଫଳରେ ବହୁ କଳ କାରଖାନା ବସିଛି ସତ, କିନ୍ତୁ ଏହାଦ୍ୱାରା ପରିବେଶ ଦୂଷିତ ହୋଇଯାଉଛି । କାରଖାନାରୁ ନିର୍ଗତ ଚିମିନିର ଧୂଆଁ, ନିଷ୍କାସିତ ମଇଳା, ଯନ୍ତ୍ର ଦାନବର ବିକଟ ଚିତ୍କାର ମଣିଷର ଚେତନା ରାଜ୍ୟରେ କଠୋର ଆଘାତ ଦେଉଛି । ବିଷାକ୍ତ ପରିବେଶରେ ଆତଯାତ ହେଉଥିବା ମଣିଷଗୁଡ଼ାକ ସତେ ଯେପରି ନିସ୍ତେଜ କାକୁସ୍ଥ ଜୀବଗୁଡ଼ିଏ । ମୁହଁରେ ନା ଅଛି ଔଜ୍ଜ୍ୱଲ୍ୟ, ନା ବଞ୍ଚିବା ପାଇଁ ଦୃଢ଼ ମନୋବଳ । ଶୂନ୍ୟରେ ଝୁଲୁଥିବା ଏଇ ମଣିଷ ଲାଗି ପୃଥିବୀର ନେତୃବୃନ୍ଦ ଯେପରି ମୂର୍ଚ୍ଛିତ ଚକ୍ଷୁ ! ନିଜ ନିଜର ପରିଚିତ ପୃଥିବୀରେ ପାଦ ଥାପିବା ଲାଗି ସେମାନଙ୍କର ଅଧିକାର ଥିବା କଥାକୁ କେହି ହୁଏତ ଗୁରୁତ୍ୱର ସହ ଚିନ୍ତା କରୁନାହାନ୍ତି । ପାଶ୍ଚାତ୍ୟ ରାଷ୍ଟ୍ର ଭଳି ଭାରତର ଅବସ୍ଥା ହୁଏତ ଏତେ ଜଟିଳ ହୋଇନି, କିନ୍ତୁ ସମସ୍ୟା ଯେ କ୍ରମଶଃ ଜଟିଳତର ହେଉଛି, ଏଥିରେ ସନ୍ଦେହ ନାହିଁ । ବହୁ ମନୀଷୀ ଖୋଲାଖୋଲି ମତ ପ୍ରକାଶ କଲେଣି ଯେ ପାଶ୍ଚାତ୍ୟ ରାଷ୍ଟ୍ର ସମୂହ ଯଦି ଏଇ ସଙ୍କଟଜନକ ଅବସ୍ଥାରୁ ଉଦ୍ଧାର ପାଇଁ ଆଇନ ସଙ୍ଗତ ପଦକ୍ଷେପ ନ ନିଅନ୍ତି, ତେବେ ପରିସ୍ଥିତି ଅଣାୟତ୍ତ ହୋଇଯିବ । ଫଳରେ ଅନିବାର୍ଯ୍ୟ ଧ୍ୱଂସ ଆଡ଼କୁ ପୃଥିବୀ ଆଗେଇଯିବା ଛଡ଼ା ଅନ୍ୟ ରାହା ଦେଖି ପାରିବ ନାହିଁ ।

କେବଳ ବସ୍ତୁ ଜଗତରେ ନୁହେଁ, ଭାବ ଜଗତରେ ମଧ୍ୟ ଆସିଛି ବିରାଟ ବିପର୍ଯ୍ୟୟ । ଯେଉଁସବୁ କାର୍ଯ୍ୟ ମନୁଷ୍ୟ ପକ୍ଷରେ ଗର୍ହିତ ବା ନିନ୍ଦନୀୟ ବୋଲି କୁହାଯାଉଥିଲା, ତାହା ଆଜିକାଲି ଅତି ସାଧାରଣ ଘଟଣା । ବରଂ ସେସବୁ କାର୍ଯ୍ୟ କରି ପାରୁଥିବା ଲୋକଙ୍କୁ ପ୍ରଶଂସା କରାଯାଉଛି, ସେଇଟାକୁ ତା'ର ପାରିବାପଣିଆ ବୋଲି କୁହାଯାଉଛି । ନାଙ୍ଗ ଅତ୍ୟାଚାର, ଧର୍ଷଣ, ଚୋରି, ଜାଲିଆତି ଆଦି ଆଜି ସାରା ପୃଥିବୀର ସମସ୍ୟା । ଭାରତରେ ଏସବୁର ମାତ୍ରା କ୍ରମବର୍ଦ୍ଧମାନ । ସକାଳର ତାଜା ସମ୍ବାଦପତ୍ର ଯେତେବେଳେ ପୃଥିବୀର ବିଷଣ୍ଣତାକୁ କୋଳେଇ ଆମ ଆଗରେ ନଇଁପଡ଼ିଲାବେଳେ ଚେତନାର ସଙ୍କୀର୍ଣ୍ଣ ଗଳି ଭିତରେ ଆମେ ପ୍ରମାଣ କରୁଛୁ ଆମର ଅସହାୟତା !

ଗ୍ରୀସ ସଭ୍ୟତା, ମିଶରୀୟ ସଭ୍ୟତା, ମେସୋପଟାମିଆ ସଭ୍ୟତା ଓ ଭାରତୀୟ ସଭ୍ୟତାର ବିକାଶ ଦ୍ୱାରା ସୃଷ୍ଟି ହୋଇଥିବା ଯୁଗ ଯୁଗର ମୂଲ୍ୟବୋଧ ଆଧୁନିକ କାଳରେ ବିପର୍ଯ୍ୟସ୍ତ ହୋଇଯାଇଛି । ସମାଜର ଅନିୟମିତ ଆଚରଣ ଆଜି ପ୍ରତ୍ୟକ୍ଷ ହେବାକୁ ବାଧ୍ୟ ହୋଇଛୁ । ମାନସିକ ବିକୃତି, ସ୍ନାୟବିକ ଦୁର୍ବଳତା, ଅକାଳ ବାର୍ଦ୍ଧକ୍ୟ, ନିଶାଦ୍ରବ୍ୟ ପ୍ରତି ପ୍ରବଳ ଆକର୍ଷଣ ଆଜିର ଅନେକ ଦୁଃଖଦ ଘଟଣାର କାରଣ ହୋଇଛି । ମଣିଷ ଆଜି ଏକାନ୍ତ ଅକୃତଜ୍ଞ, ଅପରିଣାମଦର୍ଶୀ । ଆପଣା ଦାନ୍ତରେ ଆଜି ଜିହ୍ୱାଚ୍ଛେଦନ ପାଇଁ ସେ ସମୁଦ୍ୟତ । ଜଣେ ସମାଜ ବିଜ୍ଞାନୀ ଆଜିର ମଣିଷକୁ ସତର୍କ କରି ଦେଇ ଲେଖିଛନ୍ତି —"The earth has yeilded to us great quantities of energy and wealth. Yet we have not played the role of wise husband man. Our earth is wounded, and we are weilding the death weapon. Our collective selfishness may kill us unless we find a new way to live." (୧) । ଏ ଶତକର ଷଷ୍ଠ ଦଶକରେ ଜଣେ ଐତିହାସିକ ଥିଓଡ଼ର ରୋଜାକ୍ ତାଙ୍କର "The making of a counter culture" ପୁସ୍ତକରେ ନିଜର ପ୍ରଚ୍ଛନ୍ନ ସ୍ୱାଧୀନ ମନୋବୃତ୍ତିର ପରିଚୟ ଦେଇଛନ୍ତି । ଆଧୁନିକ ସଂସ୍କୃତିର ଏପାଖ ସେପାଖ ଦେଖି ସାରିଲା ପରେ ସେ ଏଥିପ୍ରତି ଶ୍ରଦ୍ଧା ପୋଷଣ କରି ପାରି ନାହାନ୍ତି । ସେ ଗୋଟାଏ ଗୁରୁତ୍ୱପୂର୍ଣ୍ଣ ଦିଗ ପ୍ରତି ପାଠକମାନଙ୍କର ଦୃଷ୍ଟି ଆକର୍ଷଣ କରିଛନ୍ତି । ତାଙ୍କ ମତରେ, ବସ୍ତୁବାଦୀ ଦୃଷ୍ଟିଭଙ୍ଗୀ ନେଇ ଗବେଷଣା କରିବା ଦ୍ୱାରା ସଭ୍ୟତା ଓ ସଂସ୍କୃତିର ବିକାଶପାଇଁ ମଣିଷ ଯେଉଁ ଉଦ୍ୟମ କରୁଛି ଏବଂ ବୈଜ୍ଞାନିକ ଗବେଷଣାକୁ ଯେପରି ଉତ୍ସାହିତ କରାଯାଉଛି, ସେଥିରେ ମଣିଷର ବ୍ୟକ୍ତିଗତ ଅନୁଭୂତିକୁ ଯଥୋଚିତ ସମ୍ମାନ ଦିଆଯାଉ ନାହିଁ । ଫଳତଃ ପ୍ରକୃତିର ରହସ୍ୟ ଉଦ୍‌ଘାଟନ ପାଇଁ ସେ ଦୁଃସାହସୀ ଭୂମିକା ନେଇ ପାରୁନାହିଁ । ତେଣୁ ତାର ମାନସିକ ଶାନ୍ତି ଓ ପବିତ୍ରତା ବ୍ୟାହତ ହେଉଛି । ସେ ଦୃଢ଼ମତ ଉପସ୍ଥାପନ କରି କହିଛନ୍ତି ଯେ—ବସ୍ତୁବାଦୀ ବିଜ୍ଞାନ ପ୍ରତି ଆମେ ପୂର୍ଣ୍ଣ ଦୃଷ୍ଟି ନିବଦ୍ଧ କରୁଥିବାରୁ ଆଧ୍ୟାତ୍ମିକ ଚେତନା ପ୍ରତି ଅବମାନନା କରୁଛୁ । କାରଣ ବସ୍ତୁବାଦୀ ବିଜ୍ଞାନ ଦୃଷ୍ଟିରେ ଆଧ୍ୟାତ୍ମିକତା ଏକ ବାତୁଳତା ।

---

୧ । Gentry, Jerry—" A New look at the Energy Crisis"—an essay published in "The Plain Truth"— July-August, 1973.

ସମାଜ ବିଜ୍ଞାନୀ, ମନସ୍ତତ୍ତ୍ୱବିଦ୍ , ଐତିହାସିକ, ସାହିତ୍ୟିକ ସମସ୍ତେ ଆଜି ନିଜ ଗୋଟାଏ ଖୋଜିବାରେ ବ୍ୟସ୍ତ । ପୃଥିବୀ, ତେଣୁ ଏଇ ବ୍ୟସ୍ତତାର ଖୋଜା-ନେଉଡ଼ାରେ କ୍ରମଶଃ କ୍ଷୁଦ୍ର । ଅଥଚ ଆମ ସମ୍ପର୍କ ଅନ୍ତରଙ୍ଗତା ବିହୀନ । ଦ୍ୱିତୀୟ ବିଶ୍ୱ-ଯୁଦ୍ଧରୁ ମୁକ୍ତି ଲଭିଥିବା ପୃଥିବୀରେ ଯେଉଁ ଅନିଶ୍ଚିତତା ଆସିଥିଲା, ତାହା ଏ ଯାବତ୍ ପ୍ରଶମିତ ହୋଇନି । ହେବା ବି ସମ୍ଭବ ନୁହେଁ । ଶାଗୁଣାର ପକ୍ଷ ତଳେ ବନ୍ଦୀ ମଣିଷର କୋଳାହଳ ସତେ ଯେମିତି ଦସ୍ୟୁମାୟତା ଓ ଅର୍ଥହୀନତାରେ ରୂପାନ୍ତରିତ । ସମାଧାନ ନୁହେଁ, ସମସ୍ୟାର ଯନ୍ତ୍ରଣାଗାରରେ ଆଜିର ମଣିଷ ନାଟିକା ନିକ୍ଷେପିତ । ଆଜି ବି ପୃଥିବୀର ଗୋଟାଏ କୋଣରେ କଳାଗୋରାର ସଂଘର୍ଷ ଲାଗିଛି । ସେଥିରେ ହୁଏତ ମୋଜେସ୍ (୩) ଭଳି ଜାତୀୟତାବାଦୀ କବିଙ୍କୁ ଫାଶିଖୁଣ୍ଟରେ ଝୁଲିବାକୁ ପଡ଼ୁଛି । ମୁଜିବୁର୍ ରହମନ୍ ଭଳି ଜାତୀୟତାବାଦୀ ନେତାଙ୍କୁ (୪) ହୀନସାର୍ଥ ପାଇଁ ହତ୍ୟା କରାଯାଉଛି ଓ ଇନ୍ଦିରାଗାନ୍ଧୀଙ୍କୁ ଦେଶ ପାଇଁ ଆତ୍ମବଳି ଦେବାକୁ ପଡ଼ୁଛି । ଚତୁର୍ଦ୍ଦିଗରେ ଅଶାନ୍ତିର ଏକ ଶ୍ୱାସରୁଦ୍ଧ ବାତାବରଣ । ଏଥିରୁ ନିଷ୍କୃତି ପାଇଁ ଅନେକେ ହୁଏତ ଏକ ଅତୀନ୍ଦ୍ରିୟ ଆବେଗଦ୍ୱାରା ପରିଚାଳିତ ହେବାକୁ ପସନ୍ଦ କରୁଛନ୍ତି । ମନସ୍ତତ୍ତ୍ୱବିଦ୍ ଫ୍ରୟେଡ୍ ଏହାକୁ ଆଦୌ ଗୁରୁତ୍ୱ ଦେଇ ନ ଥିଲେ । ମାତ୍ର ବର୍ତ୍ତମାନ ମନସ୍ତତ୍ତ୍ୱବିଦ୍ ଙ୍କଠାରୁ ଆରମ୍ଭ କରି ସମାଜତତ୍ତ୍ୱବିଦ୍ ଓ ବୈଜ୍ଞାନିକ-ଗଣ ଏଥିପ୍ରତି କୌତୂହଳୀ ହେଲେଣି । ଆମେରିକାରେ ଏସବୁ କଥାକୁ ନୂତନ ଦୃଷ୍ଟିକୋଣରୁ ବିଚାର କରାଗଲାଣି ।

ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ପ୍ରତିଭାର ବିକାଶ ସ୍ୱାଭାବିକ ହୋଇ ପାରିନାହିଁ । ପ୍ରତିଦ୍ୱନ୍ଦ୍ୱୀ ଶକ୍ତିମାନଙ୍କର 'ଯୁଦ୍ଧଂଦେହି' ଡାକରା ଭିତରେ ବିଚାର ପ୍ରତିଭାବାନ୍ ମଣିଷର ସୃଜନଶୀଳତା ପ୍ରତି ଏକ ପ୍ରଚଣ୍ଡ ଧକ୍କା ଆସିଛି । ଜ୍ଞାନଲାଭ ପାଇଁ ବିବିଧ ବ୍ୟବସ୍ଥା ରହିଛି ସତ, କିନ୍ତୁ ତାହାର ଉପଯୋଗ ପାଇଁ ହାତରେ ସମୟାଭାବ । ତେଣୁ ମଣିଷ ନିଜସ୍ୱ ପରିମଣ୍ଡଳରେ ନିଜେ ବନ୍ଦୀ । ଉନ୍ନତର ଗତି ଯେତିକି ହେବା କଥା ତାହା ହୋଇପାରୁନାହିଁ ।

---

୩ । ମୋଜେସ୍ — ଦକ୍ଷିଣ ଆଫ୍ରିକାର ଜାତୀୟତାବାଦୀ କବି, ଯାହାଙ୍କୁ ସମ୍ରାଜ୍ୟବାଦୀ ଗୋରା ସରକାର ୧୯୮୫ ରେ ଫାଶିଖୁଣ୍ଟରେ ଚଢ଼ାଇଥିଲେ ।

୪ । ବଙ୍ଗଳା ଦେଶର ଜାତୀୟବାଦୀ ନେତା । ଅସୀମ ତ୍ୟାଗ ବଳରେ ସେ ଦେଶକୁ ସ୍ୱାଧୀନ କରିଥିଲେ । ପରେ ରାଷ୍ଟ୍ରପତି ଓ ସାମରିକ ଅଭ୍ୟୁତ୍ଥାନ ପରେ ତାଙ୍କୁ ହତ୍ୟା କରାଯାଇଥିଲା ।

ପୃଥିବୀର ଆର୍ଥନୀତିକ ବ୍ୟବସ୍ଥା କେବଳ ଧନଶାଳୀ ରାଷ୍ଟ୍ରମାନଙ୍କ ହାତରେ ଥିବାରୁ ଯୁଦ୍ଧ ପରବର୍ତ୍ତୀ ପୃଥିବୀର ଅନେକ ସ୍ଥାନରେ ହା' ଅନ୍ନର ଚିତ୍କାର ଶୁଭୁଛି । ଦୈନ୍ୟ ପୀଡ଼ିତ ଏଇ ମଣିଷ ତେଣୁ ସ୍ୱାଧୀନତାର ବନ୍ଦନା କରିବ କିପରି ? ତଥାପି ଉନ୍ନତ ରାଷ୍ଟ୍ରମାନଙ୍କ ଆଦର୍ଶରେ ବିକାଶମୁଖୀ ରାଷ୍ଟ୍ରଗୁଡ଼ିକର ପରିବର୍ତ୍ତନ ହେଉଛି । ଯନ୍ତ୍ରମାନବ ମଣିଷ ହାତରୁ କାମ ଛଡ଼ାଇ ନେଇ ତାକୁ ବେକାର କରି ଦେଉଛି । ଅନୁନ୍ନତ ତୃତୀୟ ବିଶ୍ୱରେ ବେକାରି ସମସ୍ୟା ବଢ଼ିଛି, ତା' ସଙ୍ଗେ ସଙ୍ଗେ ଆମେରିକା, ଫ୍ରାନ୍ସ, ରୁଷିଆ, ବ୍ରିଟେନ୍ ପ୍ରଭୃତି ଦେଶରେ ଏ ସମସ୍ୟା ଉତ୍କଟ ହେବାକୁ ଲାଗିଛି । ଭାରତର ଅବସ୍ଥା ଆହୁରି ସଙ୍କଟାପନ୍ନ । ୧୯୪୭ ମସିହାରେ ସ୍ୱାଧୀନତା ଆସିଛି ସତ, ମାତ୍ର ଆର୍ଥିକ ସ୍ୱାଧୀନତା ଏ ପର୍ଯ୍ୟନ୍ତ ବି ସୁଦୂର ପରାହତ ହୋଇ ରହିଛି । ସବୁ କ୍ଷେତ୍ରରେ ସ୍ୱେଚ୍ଛାଚାରୀ ହୋଇ ଆମେ ଶାନ୍ତି ଖୋଜୁଛୁ । ଦ୍ୱିତୀୟ ମହାଯୁଦ୍ଧ ପରେ ଭଲ ମନ୍ଦର ସୀମା ସରହଦ ନିରୂପଣ କରିବା ପାଇଁ ସାରା ପୃଥିବୀରେ କେତେ ସଭା ସମିତି, ଆଲୋଚନା-ସମାଲୋଚନା ନ ହୋଇଛି ? ତଥାପି ଭଲ ପରିବର୍ତ୍ତେ ମନ୍ଦ ପ୍ରତି ଆମର ଉନ୍ମୁଖତା ବଢ଼ି ବଢ଼ି ଚାଲିଛି । ଜନସଂଖ୍ୟା ବିସ୍ଫୋରଣ, ଖାଦ୍ୟାଭାବ, ଶକ୍ତିର ଅଭାବ ମଣିଷର ସୁଖ ସମ୍ଭୋଗର ଆଶାକୁ ଆଶାରେ ହିଁ ରଖି ଦେଇଛି । ସମସ୍ୟା ତୁଳନାରେ ପ୍ରତିକାରର ମାତ୍ରା କିନ୍ତୁ ନଗଣ୍ୟ । ଅସ୍ଥିରତା ଓ ହତାଶା ଭିତରେ ସଢ଼ୁଥିବା ମଣିଷସମାଜ ବାଧ୍ୟ ହୋଇ ଅନୈତିକ ହୋଇଯାଉଛି ।

ପୃଥିବୀର ଏଇ ପରିବର୍ତ୍ତନ ସହ ଭାରତ ବା ଓଡ଼ିଶା ଭାଗୀଦାର ହେବା ଅସମ୍ଭବ ନୁହେଁ । ଏଇ ବିପ୍ଳବାତ୍ମକ ନୂତନ ଯୁଗରେ ତେଣୁ କାବ୍ୟଚେତନା, ଚିତ୍ରଭାସ୍କର୍ଯ୍ୟ ଓ ନାନାପ୍ରକାର କଳାତ୍ମକ ସୃଜନ ଶିଳ୍ପରେ ବିପୁଳ ପରିବର୍ତ୍ତନ ହୋଇଛି । ପ୍ରଥମ ବିଶ୍ୱଯୁଦ୍ଧ ପରେ ଏସବୁ ପ୍ରତି ନୂତନ ଆଭିମୁଖ୍ୟ ପ୍ରକାଶ ପାଇଲା ସତ, କିନ୍ତୁ ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ପୁରାତନ ମୂଲ୍ୟବୋଧ, ଆଙ୍ଗିକ, ଭାବନା ଓ ରୀତି ସମ୍ପୂର୍ଣ୍ଣ ଅସ୍ୱୀକୃତ ନ ହେଲେ ବି କିୟଦଂଶ ପରିବର୍ତ୍ତିତ ହେଲା । ପ୍ରଥମ ବିଶ୍ୱ-ଯୁଦ୍ଧର ବିଧ୍ୱସ୍ତ ଚିତ୍ର ଦେଖି ଟି. ଏସ. ଇଲିଅଟ୍ ଯେଉଁ ବେଦନା ଅନୁଭବ କରିଥିଲେ, ତା'ର ଫଳଶ୍ରୁତି ହେଉଛି ଓ୍ୱେଷ୍ଟଲ୍ୟାଣ୍ଡ । ଦ୍ୱିତୀୟ ମହାଯୁଦ୍ଧ ବେଳକୁ ତାଙ୍କ କାବ୍ୟାଧାରାର ପ୍ରଭାବ ପାଶ୍ଚାତ୍ୟ ସାହିତ୍ୟ ଜଗତରେ ରହିଛି, କିନ୍ତୁ ପରେ ତାହା ହ୍ରାସ ପାଇବାରେ ଲାଗିଛି । ମାତ୍ର ସେତିକବେଳକୁ ଇଲିଅଟ୍‌ଙ୍କ ପ୍ରଭାବ ଓଡ଼ିଆ ସାହିତ୍ୟରେ ପଡ଼ିଛି । ୧୯୬୦ ପର୍ଯ୍ୟନ୍ତ ଓଡ଼ିଆ କବିତାରେ ଇଲିଅଟ୍‌ଙ୍କ ପ୍ରଭାବ ଅଖଣ୍ଡ । ଆଧୁନିକ ଓଡ଼ିଆ ସାହିତ୍ୟରେ ସଚ୍ଚି ରାଉତରାୟଙ୍କ ମାନସ ଜଗତ ସେଇହିଁ ତିଆରି କରନ୍ତି । 'ପାଣ୍ଡୁଲିପି'ର ଉଦ୍ଭବ ସୃଷ୍ଟି ବେଳେ ଶ୍ରୀରାଉତରାୟଙ୍କର ଇଲିଅଟ୍‌ଙ୍କ

ପଡ଼ି ଆସିଛି ଅପ୍ରତିରୋଧ ଆକର୍ଷଣ । 'ନୈଦ୍ଧତ'ର ଅଧିକାଂଶ କବିତାରେ ଏହାର ସଙ୍କେତ ସୁସ୍ପଷ୍ଟ ହେଲେବି, 'ସ୍ୱାକ୍ଷର' ଓ 'ଗ୍ରାମଧାମ୍ୟ' କବିତା ଦୁଇଟିରେ କବିଙ୍କର ମନୋଭାବ ସ୍ପଷ୍ଟ ହୋଇ ଉଠିଛି । ଏଇ ଦୁଇଟି କବିତାରେ କବି ରାଉତରାୟ ଇଲିଅଟ୍‌ଙ୍କ ଧର୍ମମତ ପ୍ରତ୍ୟାଖ୍ୟାନ କରିଛନ୍ତି । ମାତ୍ର ଗୁରୁ ପ୍ରସାଦ ମହାନ୍ତି ଇଲିଅଟ୍‌ଙ୍କ ପ୍ରତ୍ୟକ୍ଷ ପ୍ରଭାବ ଗ୍ରହଣ କରିଛନ୍ତି ଏବଂ ଏହା ବିଂଶଶତକର ଉତ୍ତର ପସ୍ବଣ କାଳରେ ଦେଖା ଦେଇଛି । ପରେ ଶ୍ରୀରମାକାନ୍ତ ରଥ 'ଚଉପହର' (ଏପ୍ରିଲ, ୧୯୬୦) ପର୍ଯ୍ୟନ୍ତ ଇଲିଅଟ୍‌ଙ୍କ କାବ୍ୟର ବାତାବରଣକୁ ପ୍ରସାରିତ କରିଛନ୍ତି ।

ସଭ୍ୟତାର ଶୈଶବ ଓ ମଧ୍ୟଯୁଗରୁ ଆରମ୍ଭ କରି ବର୍ତ୍ତମାନ ପର୍ଯ୍ୟନ୍ତ ସମସ୍ତ ସାହିତ୍ୟ ଓ ଶିଳ୍ପକଳା ଈଶ୍ୱର ବିଶ୍ୱାସ ଉପରେ ନିର୍ଭରଶୀଳ ହୋଇ ବିକାଶ ଲାଭ କରିଥିଲା । ଅଗଣିତ ମନ୍ଦିର, ମସଜିଦ୍, ଗୀର୍ଜା, ତୋରଣ, ମିନାର ଏସିଆ ଓ ୟୁରୋପର ଅଙ୍ଗ ସୌଷ୍ଠବରେ ଅତୁଳନୀୟ ଶୋଭା ବୃଦ୍ଧି କରିଥିଲା । "କଳାର ଇନ୍ଦ୍ରଜାଲ, ଶିଳ୍ପର ଚରମ ଉତ୍କର୍ଷ. ଏଇ କେତେକ ପଦ କଥାରେ ହିଁ ଯେପରି ସେ ଯୁଗର ମହିମାମୟ ଇତିହାସର ପୃଷ୍ଠା ପ୍ରକାଶ । କିନ୍ତୁ ଇତିହାସ ବେଶିଦିନ ଏ ସଂସ୍କୃତିର ପରିଣତି ବରଦାସ୍ତ କଲାନାହିଁ । ସମାଜର ସ୍ୱ-ବିରୋଧ, ଅନ୍ତର୍ଦ୍ୱନ୍ଦ୍ୱ ନିଜର କବର ନିଜେଇ ରଚନା କରି ପକାଇଲେ । (୫) ଇତିହାସର ନିଷ୍ଠୁର ପରିହାସରେ ଧର୍ମପ୍ରାଣ ଲୋକମାନଙ୍କର ବିଶ୍ୱାସ କମି ଆସିଲା । ହେତୁବାଦୀ ଚିନ୍ତାର ହେଲା ବିସ୍ଫୋରଣ । ଡାରଉଇନ, ହ୍ୟୁମ୍, ହ୍ୱାଇଟ୍‌ହେଡ୍, କାଣ୍ଟ, ବାର୍ଗସଁ ପ୍ରଭୃତି ମନୀଷୀଙ୍କ ଚିନ୍ତାରେ ନୂତନ ଚେତନାର ଅଭ୍ୟୁଦୟ ହେଲା । ଔଦ୍ୟୋଗିକ ବିପ୍ଳବର ପ୍ରାକ୍ କାଳରେ ସାହିତ୍ୟରୁ ରୋମାଣ୍ଟିକ ସ୍ୱର ବଦଳିଗଲା ଏବଂ ମଣିଷ କ୍ରମଶଃ ବେଶି ସନ୍ଦେହୀ ହେବାକୁ ଲାଗିଲା । ପ୍ଲବେର୍, ଭଲ୍‌ଟେର ହ୍ୟୁଗୋ, ଏମିଲ୍‌ଜୋଲା ପ୍ରମୁଖ ସାହିତ୍ୟିକ ଏଇ ନୂଆ ଦୁନିଆର ଇସ୍ତାହାର ପ୍ରକାଶ କଲେ । ଫରାସୀ ବିପ୍ଳବର ଆହ୍ୱାନରେ ସାମ୍ୟ, ମୈତ୍ରୀ, ଓ ଭ୍ରାତୃତ୍ୱ ପାଇଁ ୟୁରୋପର ଲେଖକମାନେ ମାତିଗଲେ । କିନ୍ତୁ ଏଇ ଧାରା ଦୀର୍ଘସ୍ଥାୟୀ ହୋଇପାରିଲା ନାହିଁ । ୧୮୭୦ ମସିହାରେ ଫ୍ରାନ୍ସ ପ୍ରୁସିଆ ଦ୍ୱାରା ପରାଜିତ ହେଲା ପରେ ଫରାସୀ ବିପ୍ଳବର ସବୁ ବଡ଼ ବଡ଼ ଆଶା ବୁଦ ବୁଦ୍ ଭଳି ମିଳାଇଗଲା । ବହୁବର୍ଷ ଧରି ଏହି ଧାରା ୟେଟସ୍, ପାଉଣ୍ଡ, ଇଲିଅଟ୍ ପ୍ରମୁଖ ଯେଉଁ କାବ୍ୟର ଉଦ୍‌ଘୋଷଣା କଲେ ସେଥିରେ ପାରିପାର୍ଶ୍ୱିକ ଜଟିଳତାର ସାର୍ବଜନୀନ ପଥ ଆବିଷ୍କୃତ ହୋଇପାରିଲା ନ । ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ପରିସ୍ଥିତିର ଜଟିଳତା ଅଧିକ ବୃଦ୍ଧି ପାଇଲା । ସାହିତ୍ୟ

---

୫ । ରାଉତରାୟ, ସଚ୍ଚିଦାନନ୍ଦ-'କବିତା—୧୯୬୨'—ପୃ. ୧୧୯-୧୨୦ ।

କ୍ଷେତ୍ରରେ ଆଧୁନିକ ଚେତନାର ବ୍ୟାପକ ପ୍ରସାର ଘଟିଲା । ତେଣୁ ପଞ୍ଚମ ଦଶକର କବିମାନେ କେବଳ ବା ୟୁରୋପୀୟ ନୁହନ୍ତି । ସେମାନେ ସମଗ୍ର ବିଶ୍ୱର କେନ୍ଦ୍ରରେ । ବିଶ୍ୱକୁ ସୁବିଧ କରିଦେଲା ସାମର୍ଥ୍ୟ ସେମାନଙ୍କର ଥାଉ ବା ନ ଥାଉ, ସେମାନେ ଯେ ଦେଶୀୟ ଦିଗନ୍ତ ମଧ୍ୟରେ ସୀମାବଦ୍ଧ ନ ଥିଲେ, ଏ କଥା ଅନସ୍ୱୀକାର୍ଯ୍ୟ । ତାହାର ବହୁବିଧ ପ୍ରମାଣ ଏହି ଯୁଗର କବିମାନଙ୍କର କବିତାରେ ବର୍ଣ୍ଣିତ ଭୂଗୋଳର ବିବରଣୀରେ, ଆନ୍ତର୍ଜାତିକ ଜଗତର ଚିତ୍ରମାଳାରେ ।

ଆଜିର ଓଡ଼ିଆ କବି ତେଣୁ ବୃହତ୍ ବିଶ୍ୱରେ ଅଧିଷ୍ଠିତ । ବିଦେଶୀ କବିର ପଂକ୍ତି ବା ଅଂଶର ବ୍ୟବହାର ସହିତ ନିଜ ଦେଶର ଚିହ୍ନ ବର୍ଣ୍ଣ ଗନ୍ଧ ତାର କବିତାରେ ସମ୍ପୃକ୍ତ । ଯେଉଁ କବିମାନଙ୍କର ଯୌବନ ଦ୍ୱିତୀୟ ମହାଯୁଦ୍ଧର ଦୁଃସ୍ୱପ୍ନରେ କଟିଛି, ସେମାନଙ୍କ ରଚନାରେ ପୃଥିବୀର ପତନଶୀଳତା ଯେ ଆନୁପୂର୍ବ ପ୍ରତିଫଳିତ ହେବ ନାହିଁ, ଏପରି କୁହାଯାଇ ନ ପାରେ । ରବୀନ୍ଦ୍ରନାଥଙ୍କ ଭାଷାରେ, ଆଧୁନିକ କବି 'ମାଧୁରୀର ରଥ ପରିବ୍ରାଜକ' । ମାତ୍ର ଆମ ଦେଶକୁ ୟୁରୋପର ଯୁଦ୍ଧୋତ୍ତର ବିଭୀଷିକା ଓ ହତାଶା ଆସିନାହିଁ ବୋଲି କେତେକ କହନ୍ତି । ଏହାର ସତ୍ୟତାକୁ କବି ସୀତାକାନ୍ତ ମହାପାତ୍ର ସମର୍ଥନ କରନ୍ତି । "ଶହ ଶହ ମଣିଷ ଖାଦ୍ୟାଭାବ ହେତୁ ଆଜି ମଧ୍ୟ ନିଜର ଭିଟାମାଟି ଛାଡ଼ି ଅରଣ୍ୟ ପଥରେ ପାଦ ଦେଉଛନ୍ତି । ରାସ୍ତା କଡ଼ରେ ଦ'ପଟ ଯେକା ରୁଟିକୁ ଘେରି ବସିଥିବା ପରିବାର ପାଇଁ କୋଇଲିର ସ୍ୱନ ବା କଂକର ଉଡ଼ିବା ଦୃଶ୍ୟ କେତେ ଅର୍ଥହୀନ । ମୃତ୍ୟୁ, ଆତ୍ମହତ୍ୟା, ସାମାଜିକ ବିଚ୍ୟୁତି, ପ୍ରବଞ୍ଚନା ସବୁ ଆମ ଆଗରେ । ତେଣୁ ୟୁରୋପର ଛାଇପଛି ଆମ ସାହିତ୍ୟ ସୃଷ୍ଟି ହୋଇଛି ବୋଲି କହିବା ଠିକ୍ ନୁହେଁ । (୬) ସେଥିପାଇଁ ଷଷ୍ଠ ଦଶକରେ ଆଧୁନିକ ଓଡ଼ିଆ କବିତା ବୈୟକ୍ତିକ ଖିଆଲି ଭାବନାର ପରିପ୍ରକାଶ ଓ ବିଚିତ୍ର ପରୀକ୍ଷା ନିରୀକ୍ଷା-ସର୍ବସ୍ୱ ହୋଇଯାଇଛି । ଏହିପ୍ରକାର ଅସୁସ୍ଥ କାବ୍ୟିକ ବାତାବରଣ ସୃଷ୍ଟି କରିଛି । (୭) ଏ ଅଭିଯୋଗ ଅମୂଳକ ନୁହେଁ; ମାତ୍ର ଏହାକୁ ଅନୁସରଣ କରି କାବ୍ୟିକ ପରୀକ୍ଷାରୁ ଅବ୍ୟାହତି ନେବା କବିମାନଙ୍କ ପକ୍ଷରେ କଷ୍ଟକର । ଡକ୍ଟର ଜାନକୀବଲ୍ଲଭ ମହାନ୍ତି ( ଭରଦ୍ୱାଜ ) କାବ୍ୟପରିସର ଭିତରକୁ ଅସୁନ୍ଦର ଓ ଅରୁଚିକର ବିଷୟ ପ୍ରବେଶକୁ ପସନ୍ଦ କରି ନାହାନ୍ତି । କିନ୍ତୁ ଏକଥା ସତ ଯେ ପ୍ରାକ୍ ସ୍ୱାଧୀନତା କାଳରୁ ପ୍ରଥମେ ସଚ୍ଚିଦାନନ୍ଦଙ୍କ ରଚନାରେ ଏହି ଅସୁନ୍ଦର

---

୬ । ମହାପାତ୍ର, ସୀତାକାନ୍ତ—'ଭିନ୍ନ ଆକାଶ ଭିନ୍ନ ଦୀପ୍ତି', ୧୯୬୮, ପୃ—୪୧ ।

୭ । ଚଇନି, ରତ୍ନାକର—'ସ୍ୱାଧୀନୋତ୍ତର ଓଡ଼ିଆ ସାହିତ୍ୟ,'— ( ମହାନ୍ତି, ଜାନକୀବଲ୍ଲଭଙ୍କ ପ୍ରବନ୍ଧରେ ସାଂପ୍ରତିକ ଓଡ଼ିଆ କବିତାରେ ନୂତନ ପ୍ରବୃତ୍ତି — ୧୯୬୭, ପୃ-୧୩୮ )

ବିଷୟର ପ୍ରବେଶ ଘଟିଛି । ପ୍ରତିମା ନାୟକଙ୍କର 'ବ୍ରଣ ଦୁଷ୍ଟ ମୁଖ', 'ପଚା ବିଡ଼ାଳର ଦୁର୍ଗନ୍ଧ', 'ନାରୀର ଯୌନଦ୍ୱାରରେ ଛୁଞ୍ଚି ବନ୍ଦ ହେବାର' ବର୍ଣ୍ଣନା ପାରଂପରିକ ସୌନ୍ଦର୍ଯ୍ୟବୋଧର ପରିସୀମାକୁ ଲଙ୍ଘନ କରି ଯାଇଛି । ପରବର୍ତ୍ତୀକାଳରେ ଗୁରୁ ପ୍ରସାଦଙ୍କ କବିତାରେ 'କୁମ୍ଭୀପାକ ନରକରେ ଅସହାୟ ଦଶା, (ଗୋବର ଗଣେଶ) କଥା ଚିନ୍ତା କରି ଦେଲେ ବା ଅଲକା ସାନ୍ୟାଲ ପ୍ରେମ କରି ଗର୍ଭବତୀ ହେଲାବେଳେ ବା 'ରମୁର କ୍ୟାଲକୋ ଯୋଡ଼ି ଜଳିଗଲା, ପୋଡ଼ିଗଲା ଫ୍ରେଞ୍ଚକଟ୍ ଦାଢ଼ି' (କାଳପୁରୁଷ) କହିଲାବେଳେ ଓଡ଼ିଆ କାବ୍ୟଶାଳାକୁ ପ୍ରବେଶ କରିବା ପାଇଁ ଅସୁନ୍ଦର ସଶ୍ରଦ୍ଧ ଆମନ୍ତ୍ରଣ ପାଇଛି । ରମାକାନ୍ତ ରଥଙ୍କ କବିତାରେ ତାହା ଆହୁରି ଶାଣିତ ଭାବେ ଫୁଟି ଉଠିଛି ।

"ମୁଁ ତାର ପଳିତ ଓ ଶଙ୍ଖ ମଳ ମଳ/ ବିବସ୍ତ୍ର ପେଟକୁ ଆସ୍ତେ ଆସ୍ତେ ଆପୁଡ଼ାଇଥିଲି/ କାଳେ ତାକୁ କଷ୍ଟ ହେବ ଏବଂ ତା' ପେଟରେ/ ଯାହା ଥିଲା କାଳେ ତାକୁ କଷ୍ଟ ହେବ ବୋଲି ।/ କ୍ରମେ ଶୀତଦିନ ରାତିଅଧର କୁହୁଡ଼ି/ଘର ମୋ ପାପୁଲି ହେଲା ଓଜନିଆ ଏବଂ/ ଆସ୍ତେ ହାତ ଭର୍ତ୍ତି କଲି ସଜନା ପତ୍ରଙ୍କ/ କମ୍ବଳରେ ମୁଁ ଚନ୍ଦ୍ରର ପେଟ ଆଉଁସିଲି ।" (ଭିନ୍ନ ମନ ସନ୍ଦିଗ୍ଧ ମୃଗୟା)

ପ୍ରବହମାନ କାଳସ୍ରୋତରେ ପ୍ରତ୍ୟେକ ଆଧୁନିକ ଓଡ଼ିଆ କବି ଆଧୁନିକତାକୁ ସେମାନଙ୍କର ନିଜସ୍ୱ ବୋଲି ଦାବୀ କରନ୍ତି । କିନ୍ତୁ ଏହି ଧାରଣା ହୁଏତ ଠିକ୍ ନୁହେଁ । କାରଣ ପ୍ରତି ଯୁଗର ସ୍ରଷ୍ଟା ନିଜ କାଳରେ ଆଧୁନିକ । ଏହା ଏକ ଆପେକ୍ଷିକ ଶବ୍ଦ । ସାହିତ୍ୟର ମୂଲ୍ୟ ନିରୂପଣ ଗୋଟିଏ ଅବିଚ୍ଛିନ୍ନ ଧାରା । ଯେଉଁଠି ସମାଜର ଜୀବନ ପ୍ରବାହ ଜୀର୍ଣ୍ଣ ଓ ଅବ୍ୟାହତ, ସେଠି ଯେତେ ଅଗ୍ରଗତି କଲେ ମଧ୍ୟ ପ୍ରବାହ ଆଧୁନିକ ହୋଇପାରେ ନାହିଁ । ଯେଉଁଠି ସାମାଜିକ ସମ୍ପର୍କର ପୂର୍ବାପର ସଙ୍ଗତି ଛିନ୍ନ—ସାମାଜିକ ବିପ୍ଳବ ଓ ଯୁଦ୍ଧ ଦ୍ୱାରା ସେଇଠି ନୂତନ ଜୀବନ ପ୍ରବାହର ପ୍ରତିଶ୍ରୁତି ଅବଧାରିତ । ପ୍ରାଚୀନ ଧାରା କେବଳ ଇତିହାସର ବସ୍ତୁ ହୋଇ ରହିଥାଏ । ତେଣୁ ପ୍ରତି ଯୁଗର କଳାକାର ତାଙ୍କ ପୂର୍ବକାଳକୁ ନିଜସ୍ୱ ସୁବିଧା ଦୃଷ୍ଟିରୁ ବିଶ୍ଳେଷଣ କରନ୍ତି । ପଞ୍ଚ ଦଶକର ପ୍ରାଚୀନ ସାହିତ୍ୟକୁ ଏ ଦୃଷ୍ଟିରୁ ନିଜ ବ୍ୟବହାରରେ ଲଗାଇଛନ୍ତି । ସାରଳାଦାସଙ୍କ 'ମହାଭାରତ' ଜଗନ୍ନାଥ ଦାସଙ୍କ 'ଭାଗବତ', ନାରାୟଣ ନନ୍ଦଙ୍କ 'ବ୍ରହ୍ମସୁଧାନିଧି' ପ୍ରଭୃତି ଦାର୍ଶନିକ ଓ ଧର୍ମ ଗର୍ଭିତ ଗ୍ରନ୍ଥ ଜୀବନର ମୂଲ୍ୟ ଅନୁସନ୍ଧାନରେ ଆଧୁନିକ ଓଡ଼ିଆ କବିଙ୍କୁ ବିଶେଷ ପ୍ରେରଣା ଯୋଗାଇଛି । ଭୀମ ଭୋଇଙ୍କ ଭଜନ ଏହି କାଳର ଓଡ଼ିଆ କବିମାନଙ୍କ ପାଇଁ ଜୀବନ ପ୍ରତି ଥିବା ଆନ୍ତରିକତା ଓ ଶୁଭଦୃଷ୍ଟିର କାରଣ ହୋଇଛି ।

ଷଷ୍ଠ ଓ ସପ୍ତମ ଦଶକର ଓଡ଼ିଆ କବିତାରେ ଜୀବନ ସମ୍ପର୍କରେ ନୂଆ ଭାବ ବିଶ୍ଳେଷଣ ଆରମ୍ଭ ହୋଇଥିଲେବି ଦୁର୍ବୋଧ ଫର୍ମ ଭିତରେ କବିତାଗୁଡ଼ିକ ପ୍ରାୟ ଶ୍ୱାସରୁଦ୍ଧ ହୋଇ ପଡ଼ିଛନ୍ତି । ସେଥିପାଇଁ ଏହି ଆଲୋଚ୍ୟ କାଳର କବିଙ୍କ ବହୁ ସମାଲୋଚନା ସହ୍ୟ କରିବାକୁ ପଡ଼ିଛି । ଭାବଚେତନାର ଏହି ଅବଶ୍ୟମ୍ଭାବୀ ପରିବର୍ତ୍ତନକୁ ହୁଏତ ପାଠକ ଠିକ୍ ଭାବରେ ଅନୁସରଣ କରିବାକୁ ସମର୍ଥ ହୋଇ ପାରି ନାହିଁ । ତେଣୁ କବିମାନଙ୍କ ପକ୍ଷରୁ ପାଲଟା ଅଭିଯୋଗ କରି କୁହାଯାଇଛି, ପାଠକମାନେ କୌଣସି ଚେଷ୍ଟା ନ କରି ଅଯଥା କବିମାନଙ୍କୁ ଦୋଷାରୋପ କରୁଛନ୍ତି । କାବ୍ୟଚେତନାର ଉଚ୍ଚତାକୁ ସେମାନେ ଯାଇପାରୁନାହାନ୍ତି । ସେମାନେ କହୁଛନ୍ତି—କବିତା ସମସ୍ତଙ୍କ ପାଇଁ ଉଦ୍ଦିଷ୍ଟ ନୁହେଁ । ଯେ ପର୍ଯ୍ୟନ୍ତ ଜନସାଧାରଣଙ୍କ ହୃଦୟ ନୂତନ କାବ୍ୟଚେତନାର ପରିମଣ୍ଡଳ ସ୍ପର୍ଶ ନ କରିଛି, ସେ ପର୍ଯ୍ୟନ୍ତ କୌଣସି ଉଚ୍ଚ ଦରର ସ୍ରଷ୍ଟା ପାଠକର ଶ୍ରଦ୍ଧାଭାଜନ ହୋଇ ପାରିବେ ନାହିଁ । ଏଥିପାଇଁ ରମାକାନ୍ତ ରଥଙ୍କ 'ଅନେକ କୋଠରି'ରେ ତାଲା ପଡ଼ିଛି ବୋଲି କୁହାଯାଇଛି । ଭଲ କବିତାର ଆଦର ସବୁବେଳେ ସୀମିତ—ଏକଥା ସେ କାଳର କବିଏ ବୁଝିଥିଲେ । ଅବଶ୍ୟ ପରେ ସେମାନେ ସରଳ ହେବାକୁ ପ୍ରଯତ୍ନ କରିଛନ୍ତି । ଗୁରୁପ୍ରସାଦଙ୍କ 'କାଳପୁରୁଷ', ରମାକାନ୍ତଙ୍କ 'ବାଘଶିକାର' କମଳାକାନ୍ତଙ୍କ 'ଉଦ୍ଧରଣ' ବା ସୀତାକାନ୍ତଙ୍କ 'ଅନୁଷ୍ଟୁପ୍' ହୁଏତ ସ୍ୱତନ୍ତ୍ର ଉଦ୍ଦେଶ୍ୟ ଥିଲା । ସମକାଳୀନ ସମସ୍ୟା ସମ୍ବନ୍ଧରେ ଏସବୁ କବିଙ୍କର ସ୍ପର୍ଶକାତରତା ତେଣୁ ସ୍ପଷ୍ଟ ବାରି ହୋଇଯାଏ ।

ପ୍ରାକ୍ ସ୍ୱାଧୀନତା କାଳରେ ଦେଶ ଭକ୍ତି ଥିଲା ଏକ ଆବଶ୍ୟକତା । ନିସ୍ୱାର୍ଥପରଭାବେ ଦେଶ ମାତୃକାପାଇଁ ଜୀବନ ବିସର୍ଜନ ମଧ୍ୟ ଆମ ମନରେ ପବିତ୍ରତା ଆଣୁଥିଲା । କିନ୍ତୁ ସ୍ୱାଧୀନତା ପରେ 'ଦେଶଭକ୍ତି' ପ୍ରତାରଣା ଓ ନୀତିହୀନତାର ପ୍ରତିନିଧିତ୍ୱ କଲା । ପାଟ ମୁକୁଟ ପିନ୍ଧିବା ଆଳରେ ଆତ୍ମପୂଜା ଓ ଆତ୍ମପ୍ରତିଷ୍ଠା ସ୍ୱାଧୀନତା ପରବର୍ତ୍ତୀ ସମାଜ ଜୀବନକୁ କ୍ରମଶଃ ଦୁର୍ବଳ ଓ ଅବିଶ୍ୱସ୍ତ କରିଦେଲା । ଏହାର ନିର୍ଭୁଲ ଓ ନିର୍ଭୀକ ଉଚ୍ଚାରଣ ଶୁଣାଗଲା ସଚ୍ଚିଦାନନ୍ଦ ରାଉତରାୟ, ଅନନ୍ତ ପଟ୍ଟନାୟକ, ମନମୋହନ ମିଶ୍ର, ନିତ୍ୟାନନ୍ଦ ମହାପାତ୍ର, ରଘୁନାଥ ଦାସ, ରବି ସିଂ ଓ ବ୍ରଜନାଥ ରଥ ପ୍ରମୁଖଙ୍କ କବିତାରେ । ଯଦିଓ ଗୋଦାବରୀଶ ମହାପାତ୍ରଙ୍କ 'ବଙ୍କା ଓ ସିଧା', 'କଣ୍ଟା ଓ ଫୁଲ' ଆଦି କବିତା ଗ୍ରନ୍ଥରେ ଏ ଚେତନାର ଶାଣିତ ଖଡ଼୍ଗ ରୂପ ବୈଶାଖୀ ପରି ବେଶ୍ ଝଲ୍‌ମଲ୍ । କିନ୍ତୁ ଏଇ ସାମାଜିକ ବୈଷମ୍ୟ ବିରୋଧୀ କାବ୍ୟବିପ୍ଳବ ଗୁରୁପ୍ରସାଦଙ୍କଠାରୁ ଭିନ୍ନ ରୂପ ନେଲା ଏବଂ ଏହା ମୁଖ୍ୟତଃ ମଣିଷର ଚୈତନ୍ୟିକ ସମସ୍ୟା ପ୍ରତି ଅଧିକ ଗୁରୁତ୍ୱ ଆରୋପ କଲା । ଏଇ ଚେତନାର ସୂତ୍ରଧର ଭାବେ ରମାକାନ୍ତ ରଥ, ସୀତାକାନ୍ତ ମହାପାତ୍ର,

ସୌଭାଗ୍ୟ କୁମାର ମିଶ୍ର, କମଳାକାନ୍ତ ଲେଙ୍କା, ରାଜେନ୍ଦ୍ର କିଶୋର ପଣ୍ଡା, ଜଗନ୍ନାଥପ୍ରସାଦ ଦାସ, ଦୀପକ ମିଶ୍ର, ହରପ୍ରସାଦ ଦାସ ଓ ପ୍ରଭାତ ଶତପଥୀ କବିଗଣ ଜୀବନର ଅନ୍ତର୍ମୁଖୀ ଅଭିଜ୍ଞତା ପ୍ରତି ଧ୍ୟାନ ଦେଲେ ଏବଂ ଫଳତଃ ନାନା ପରୀକ୍ଷା ନିରୀକ୍ଷା ଜରିଆରେ ଆତ୍ମସନ୍ଧାନୀ ଚିତ୍ତବୃତ୍ତିର କାବ୍ୟ ପରିଚୟ ସ୍ପଷ୍ଟ ହେଲା । ଏହି ସମୟରେ 'ଢ଼ ଞ୍ଚ ଲୁ' ଗୋଷ୍ଠୀ ତାଙ୍କର ସମସାମୟିକ କବିମାନଙ୍କ ସମ୍ବନ୍ଧରେ ଯେଉଁ ସ୍ପଷ୍ଟୀକରଣ ଦେଇଛନ୍ତି ତାହା ଖୁବ୍ ମୂଲ୍ୟବାନ୍ । ମୁକ୍ତି ପାଇଁ ଅହରହ ଆମର ସଂଗ୍ରାମ । ଏ ପର୍ଯ୍ୟନ୍ତ ଭାଷା ଖୋଜୁଛୁ, ପାଇନୁ । ବୃଦ୍ଧା ସଭ୍ୟତାର ଅନର୍ଥକ ଧୂଳି ଛଡ଼ାଇ ଅମେ ଆମ ମନକୁ ମାର୍ଜିତ ସଫା କରିବାକୁ ଚେଷ୍ଟା କରୁଛୁ । ପୃଷ୍ଠି ସକ୍ଷମ ହୋଇନୁ । ନିଜକୁ, ପରିବେଶ ଓ ପରିସ୍ଥିତିକୁ ଅନୁଧ୍ୟାନ କରୁଛୁ, ରାସ୍ତା ତ ଅନେକ ଲମ୍ବା" । (୮)

ଅଷ୍ଟମ ଦଶକର କବିମାନେ ପୂର୍ବର କାବ୍ୟଧାରାକୁ ଅକ୍ଷୁଣ୍ଣ ରଖିଛନ୍ତି ସତ, ମାତ୍ର ପାଠକର ନିକଟବର୍ତ୍ତୀ ହେବା ଲାଗି ସେମାନଙ୍କ ସଚେତନତା ବିଶେଷ ବୃଦ୍ଧି ପାଇଛି । ଅବଶ୍ୟ ଏହି ସ୍ୱଳ୍ପ ସମୟ ସୀମା ମଧ୍ୟରେ ସାହିତ୍ୟର ଗତିବିଧି ସମ୍ପର୍କରେ ଗୋଟାଏ ନିର୍ଦ୍ଦିଷ୍ଟ କିଛି ଆଶା କରିବା ବୃଥା । କାରଣ ବିରାଟ କାଳ ପରିଧି ମଧ୍ୟରେ ଦଶ କୋଡ଼ିଏ ବର୍ଷର ସ୍ଥିତି ଗୋଟାଏ ବିନ୍ଦୁ ପରି । ତଥାପି ଏହି ସମୟରେ ପ୍ରକାଶ ପାଇଥିବା କେତେ ଗ୍ରନ୍ଥଗୁଡ଼ିକୁ କାବ୍ୟଚେତନାର ନୂଆ ରସାସ୍ୱାଦ ପାଇଁ ଶ୍ରଦ୍ଧାର ସହ ସ୍ମରଣ କରିବା ଅପ୍ରାସଙ୍ଗିକ ହେବ ନାହିଁ । ସେଇଗୁଡ଼ିକ ହେଲା—'କବିତା-୧୯୭୧' (ସଙ୍କଳିତଗ୍ରନ୍ଥ), 'ସନ୍ଦିଗ୍ଧ ମୃଗୟା' (୧୯୭୧—ରମାକାନ୍ତ ରଥ,) 'ଶବ୍ଦର ଆକାଶ' (୧୯୭୧—ସୀତାକାନ୍ତ ମହାପାତ୍ର), 'ନଈ ଉହ୍ଲେଇ' (୧୯୭୩—ସୌଭାଗ୍ୟ ମିଶ୍ର), 'ମଧ୍ୟାହ୍ନର ଛାଇ' (୧୯୭୪—ଦୀପକ ମିଶ୍ର,) 'କବିତାର ମୁହଁ, (୧୯୭୪—କମଳାକାନ୍ତ ଲେଙ୍କା), 'ପ୍ରଥମ ପୁରୁଷ' (୧୯୭୧—ଜଗନ୍ନାଥ ପ୍ରସାଦ ଦାସ), 'ଘୁଣାକ୍ଷର' (୧୯୭୭—ରାଜେନ୍ଦ୍ର ପଣ୍ଡା), 'ପବନର ଘର' (୧୯୭୧—ବିବେକ ଜେନା), 'ବିଷାଦ ଏକ ଋତୁ' (୧୯୭୪—ହନୁଜା ରାଓ), 'ଗ୍ରସ୍ତ ସମୟ' (୧୯୭୪ - ପ୍ରଭାତ ଶତପଥୀ), 'ଆଲୋକିତ ବନବାସ' (୧୯୭୮—ହରପ୍ରସାଦ ଦାସ) 'ଅବତରଣ' (୧୯୭୨—ବ୍ରଜ୍ୟୋତି ମହାନ୍ତି) 'ବାଇଗେଣୀ ଋତୁ' (ସରୋଜ ରଞ୍ଜନ ମହାନ୍ତି), 'ଦେବୀପାଦ' (ପ୍ରମୋଦ କୁମାର ମହାନ୍ତି), 'ହାତରେ କିଛି ନାହିଁ' (ଜୟକୃଷ୍ଣ ବାରିକ) ପ୍ରଭୃତି । ଏସବୁ ଉପସ୍ଥିତାମାନଙ୍କ ବ୍ୟତୀତ ପ୍ରବୀଣ କବିମାନେ ଯଥାସମ୍ଭବ କାବ୍ୟ ସାଧନାରେ ନିଷ୍ଠାପ୍ରକାଶ କରିଛନ୍ତି । କିନ୍ତୁ ସେମାନଙ୍କ କବିତାରେ ନୂତନତାର ସ୍ୱାକ୍ଷର ସତେ ଯେମିତି 'ନୂତନ ସ୍ୱାକ୍ଷର'

---

୮ । ମହାପାତ୍ର, ସୀତାକାନ୍ତ—'ଭିନ୍ନ ଆକାଶ ଭିନ୍ନ ଦୀପ୍ତି'—୧୯୭୮, ପୃ-୧୭୮ ।

(ଚିନ୍ତାମଣି ବେହେରା) ଭିତରେ ବନ୍ଦୀ । ବିନୋଦଚନ୍ଦ୍ର, କୃଷ୍ଣବିହାରୀ, ବେଣୁଧର ରାଉତ ଓ ଚିନ୍ତାମଣିଙ୍କ କବିତା ଯଥାକ୍ରମେ ମଗ୍ନପ୍ରାୟ ସେ ଏକ ଲେମନ୍ସ୍'ନୀଳହ୍ରଦ', 'ପିଙ୍ଗଳାର ସ୍ୱପ୍ନ' ଓ 'ତୃଷ୍ଣାସ୍ନ ଚକ୍ଷୁ ଦାନ୍ତ ଦେଇ' 'ସ୍ଥବିର ଅଶ୍ୱାରୋହୀ' (ବଂଶୀଧର ଷଡ଼ଙ୍ଗୀ) ପାଖରେ ପହଁଞ୍ଚିଯାଇଛି । ସେହିଭଳି ଜାନକୀ ବଲ୍ଲଭ ମହାନ୍ତିଙ୍କ 'ତିର୍ଯ୍ୟକ୍' ( ୯୬୧ ) ର ସଫଳତା 'ବିଚିତ୍ରବର୍ଣ୍ଣା' (୧୯୭୩) ରେ ଦୁର୍ଲଭ ଓ ଦୁର୍ଗାଚରଣ ପରିଡ଼ାଙ୍କ 'ଇନ୍ଦ୍ରାୟୁଧ' (୧୯୬୧) ଗତାନୁଗତିକ ରୋମାଣ୍ଟିକ୍ ପ୍ରବଣତାରୁ ମୁକ୍ତ ହୋଇପାରି ନାହିଁ ।

ଉତ୍ତର ସବୁଜ କାଳରେ ଓଡ଼ିଆ କବିଙ୍କ ମାନସିକ ସଙ୍କଟ ଏକ ବଡ଼ ସମସ୍ୟା ହୋଇ ଠିଆ ହୋଇଛି । ଏ ସଙ୍କଟ ବସ୍ତୁବଧ ଓ ବସ୍ତୁଧା ପାରିପାର୍ଶ୍ୱିକ ପରି- ମଗ୍ଚ୍ଛନ୍ନ, ଆତ୍ମକୈନ୍ଦ୍ରିକ, ଜୈବିକ ଓ ଚୈତନିକ ଅବବୋଧରୁ ଜନ୍ମ ନେଇଛି । ଏଇ ଅବବୋଧର ପରିଶୀଳିତ କାବ୍ୟରୂପର ସ୍ୱତନ୍ତ୍ରତା ନେଇ ପ୍ରତ୍ୟେକ କବି ମୌଳିକତା ଦାବୀ କରନ୍ତି । ଭାବଚେତନା ଓ ରସଚେତନାରେ ସମୃଦ୍ଧ ଏଇ ସମୟର କବିତା ପ୍ରତ୍ୟେକ କବିଙ୍କୁ ନିଷ୍କପଟ ଭାବେ ଚଟ୍ଟୋଟ କରିବାରେ କୁଣ୍ଠା କରେ ନାହିଁ । ଅନୁଭୂତିର ଗମ୍ଭୀରତା, ଆପଣାକୁ ଓ ଆପଣା ପାରିପାର୍ଶ୍ୱକୁ ଅନ୍ତରଙ୍ଗ ଭାବେ ବୁଝିବାର ପ୍ରଯତ୍ନ ଏ ଦିଗର କାବ୍ୟଶିଳ୍ପ ପ୍ରତି ନିଷ୍ଠିତ ଏକ ବଡ଼ ଆଶ୍ୱାସନା । ରସୋତ୍ତୀର୍ଣ୍ଣତା ତେଣୁ କାବ୍ୟଧର୍ମର ଏକ ଜରୁରୀ ଆବଶ୍ୟକତା ହୋଇ ଦେଖା ଦେଇଛି । ସ୍ପଷ୍ଟତା, ସରଳତା, ଆଭିଧାନିକ ଅର୍ଥବୋଧରୁ ମୁକ୍ତ ଓ ଅନୁଭୂତି ପ୍ରତି ବିଶ୍ୱସ୍ତତା ଏଇ ଆବଶ୍ୟକତାର ଗୋଟାଏ ଗୋଟାଏ ଅପରିହାର୍ଯ୍ୟ ବିଭବ । ଅଥଚ ଜୀବନ ପ୍ରତି, ନିଜ ପ୍ରତି, ପରିବେଶ ପ୍ରତି ବ୍ୟଙ୍ଗ ଓ ପ୍ରଚୁର ଅସନ୍ତୋଷ ଭରି ରହିଛି । ନିଜର ଅସହାୟତାକୁ, ଆଧ୍ୟାତ୍ମିକ ବ୍ୟାକୁଳତାକୁ, ଏପରିକି 'ଅକ୍ଷମ ଦେବତା' (ହରିହର ମିଶ୍ର) କୁ ନାନା ଦଣ୍ଡବାଣରେ ଜର୍ଜରିତ କରିବାକୁ ଆଜିର କବି ବଦ୍ଧପରିକର । ମୋଟାମୋଟି, ଆଜିର କବି ଜୀବନର ଅନ୍ତରଙ୍ଗ ଶିଳ୍ପୀ, ସତ୍ୟର ଉଦ୍ଗାତା । ତାର ପରିଧି 'କାହାକୁ ପୁଚ୍ଛିବା ହୃଷୀକେଶ' (ସୀତାକାନ୍ତ ମହାପାତ୍ର ) ଠାରୁ 'କେବଳ ଶିଖିଛୁ ଭଲ ପାଇବା' ( ସୁନୀଲ ସ୍ୱସ୍ତି ) ଯାଏ, 'ଅନ୍ଧ ମହୁମାଛି' ( ସୌଭାଗ୍ୟ ମିଶ୍ର )ର ଅନ୍ଧପାଗଳାମିଠାରୁ 'ପଶ୍ଚିମର ସକାଳ' (ରାମକୃଷ୍ଣ ସାହୁ) ଯାଏ ପରିବ୍ୟାପ୍ତ ।

ଏଇ ସାମାନ୍ୟତମ ଆଦ୍ୟ କଥନରୁ କବି କମଳାକାନ୍ତ ଲେଙ୍କାଙ୍କ କବିତାର ବିଶେଷତ୍ୱ ଓ ସ୍ୱାତନ୍ତ୍ର୍ୟ ବିଚାର କରିବା, ଭାବୁଛି, ଉଚିତ ହେବ ।

# ଦ୍ୱିତୀୟ ଅଧ୍ୟାୟ

## କବି ଦୃଷ୍ଟିରେ ଜୀବନ ଓ ଶ୍ରୀ ଲେଙ୍କାଙ୍କ କାବ୍ୟପୁରୁଷ

ଶ୍ରୀ କମଳାକାନ୍ତ ଲେଙ୍କା ଜଣେ ଆଧୁନିକ କବି । ପ୍ରାୟ ତିନି ଦଶନ୍ଧି ଧରି ସେ ଏକ ନିରବଚ୍ଛିନ୍ନ ସ୍ରଷ୍ଟା । ନାନା ପରୀକ୍ଷା ନିରୀକ୍ଷା ଭିତର ଦେଇ ତାଙ୍କ କାବ୍ୟପୁରୁଷ ସତତ ଆବିଷ୍କାର ପଥରେ ଅଗ୍ରସର । ଆଧୁନିକ ଜୀବନର ସେ ଅନ୍ୟତମ ଏକନିଷ୍ଠ ଭାଷ୍ୟକାର । ଜୀବନର ତୀକ୍ଷ୍ଣ ଅନୁଭୂତି, ସମକାଳୀନ ସମସ୍ୟା ଓ ସଙ୍କଟର ଚିତ୍ର ତାଙ୍କ ସୃଷ୍ଟିରେ ସ୍ପଷ୍ଟ ଓ ପ୍ରାଞ୍ଜଳ । ମଣିଷର ସୁଖ ଦୁଃଖର ଭାବନା ସହିତ ଜଡ଼ିତ ତାଙ୍କର କାବ୍ୟ-ଭାବନା । ଅନ୍ତର୍ବିଶ୍ୱ ଓ ବହିର୍ବିଶ୍ୱ– ଏହିପରି ଯୋଡ଼ିଏ ବିଶ୍ୱରେ ବନ୍ଦୀ ହୋଇଥିବା ମଣିଷ ସିଏ । ତାଙ୍କ ଜୀବନ ପାଇଁ ଶୂନ୍ୟ କି ପୂର୍ଣ୍ଣ. ଏହାର ପରୀକ୍ଷା ପାଇଁହିଁ ତାଙ୍କର ଜୀବନବ୍ୟାପୀ ସାଧନା । ଜୀବନ ମାନେହିଁ ସଂଘାତ, ଏ କଥା କବିଙ୍କୁ ଭଲଭାବରେ ଜଣା । ନିଜ ଭାଷାରେ କବି ତାର ସ୍ପଷ୍ଟୀକରଣ ଦେଲାବେଳେ ଆମର ଶିଳ୍ପଦୃଷ୍ଟି ଫିଟିଯାଏ । ଭାବନାରେ ଆସେ ସାନ୍ଦ୍ରତା । "ଯାହା ଜୀବନରେ ସଂଘାତ ବା ସଂଗ୍ରାମ ବା ନିଜ ସହ ଭଲ ମନ୍ଦର ଲଢ଼େଇ ନାହିଁ ସେ ସୁଅ ମୁହଁର ପତର । ଖାଇବା, ପିଇବା, ଶୋଇବା, ଦେହସୁଖ ଗୋଟାଇବା ବା ପ୍ରଥାସିଦ୍ଧ ଲୋକାଚାରକୁ ଖାତିର୍ ଦେଖାଇବା ଦ୍ୱାରା ଜୀବନନଈର, ଖୁବ୍ ବେଶିରେ ବେଳେ ହାତ ପାଣିଯାଏ ଯାଇ ହବ । ତେଣିକି ନୁହଁ । ସତ୍ୟର ଗଭୀରକୁ/ ଗଭୀରତାକୁ ଯିବା ପାଇଁ/ ବୁଡ଼ିବା ପାଇଁ/ ବୁଝିବା ପାଇଁ ହେଲେ ପହଁରା ଜଣାଥିବା ଦରକାର । ପୋଖରି ବୁଡ଼ାଳି ହବା ସୁଦ୍ଧା । ପହଁରିବା ପାଇଁ ବା ବୁଡ଼ିବା ପାଇଁ କଳ୍ପନା ଦୁଃସାହସ ଦରକାର । ବେଳେବେଳେ ଜୀବନ ବିକାଶମୟରେ ଦୁଃସାହସିକତାକୁ ବାଜି ଲଗାଇବାକୁ ପଡ଼େ ।" (୧) । ତେବେ କ'ଣ ସାହିତ୍ୟ ବ୍ୟକ୍ତିଗତ ପ୍ରତିକ୍ରିୟାର ମୂକ ସାକ୍ଷୀ ! ହଁ, ପ୍ରତିଟି ସୃଷ୍ଟି ମୂଳରେ ବ୍ୟକ୍ତିଗତ ପ୍ରତିକ୍ରିୟାର ପ୍ରଚ୍ଛନ୍ନ କ୍ରିୟା ଥାଏ । ଏହାର ପ୍ରମାଣ ଦେବାକୁ ଯାଇ କବି ଶ୍ରୀ ଲେଙ୍କା ଫରାସୀ କବି ଅର୍ଥର ର୍ୟାମ୍ବୋଙ୍କୁ ସ୍ୱୀକାର କରନ୍ତି । (୨) । ର୍ୟାମ୍ବୋ 'Bad Blood' କବିତାରେ ଲେଖିଛନ୍ତି—

---

୧ । କବି କମଳାକାନ୍ତ ଲେଙ୍କାଙ୍କ ସହ ସାକ୍ଷାତକାର୍ – ଶ୍ରୀ ନିରାକାର ସାହୁ, 'ନବଲିପି'— ଫେବୃୟାରୀ-୧୯୮୬ ।

୨ । କବି କମଳାକାନ୍ତ ଲେଙ୍କାଙ୍କ ସହ ସାକ୍ଷାତକାର—ଶ୍ରୀ ଧନଞ୍ଜୟ ନାୟକ— "ସାରଥି"—ଏପ୍ରିଲ୍-୧୯୮୧ ।

'To whom shall I hire myself out ?
what beast should I adore ?
What holy image is attacked ?
What hearts shall I break ?
What lies should I uphold ?
In what blood tread ?" (୩)

ର୍ୟାମ୍ବୋ ତାଙ୍କର ଇନ୍ଦ୍ରିୟମୂହକୁ ଶକ୍ତିଶାଳୀ କରିବାପାଇଁ ଯଥେଷ୍ଟ ଉଦ୍ୟମ କରିଥିଲେ ବୋଲି ତାଙ୍କର ସଂକ୍ଷିପ୍ତ ଜୀବନୀକାର ହୁବର୍ଟ କ୍ରିକ୍ ମୋର୍ (Hubert Creek More) ଉଲ୍ଲେଖ କରିଛନ୍ତି । ଏହାକୁ ମଧ୍ୟ ର୍ୟାମ୍ବୋ ନିଜର କାବ୍ୟଦର୍ଶନ ଭାବେ ମର୍ଯ୍ୟାଦା ଦେଇଛନ୍ତି । ବାସ୍ତବତାକୁ ଅନୁଧ୍ୟାନ କରିବାପାଇଁ ଏହା ତାଙ୍କର କାଳ୍ପନିକ ତଥା ରହସ୍ୟମୟ ଉପାୟ ହୋଇପାରେ । କିନ୍ତୁ ପାଶ୍ଚାତ୍ୟ ଦେଶମାନଙ୍କର ଏସବୁ ପ୍ରୟାସ ପ୍ରାତ୍ୟହିକ ଜୀବନର ଶୂନ୍ୟତା ଓ ଦୁଃଖକୁ ନଷ୍ଟ କରିବାପାଇଁ ଅଭିପ୍ରେତ । ମାତ୍ର ଏସବୁ ଚିନ୍ତା ସାତ ସମୁଦ୍ର ତେର ନଈ ପାରିହୋଇ ଓଡ଼ିଶାକୁ ଆସିଛି । ର୍ୟାମ୍ବୋଙ୍କ ଭଳି କବି କମଳାକାନ୍ତ ବେଦନାରେ ଜର୍ଜରିତ ହୋଇଛନ୍ତି । ୧୯୬୭ ରେ ପ୍ରକାଶିତ ତାଙ୍କ ଦୀର୍ଘ କବିତା 'ଉତ୍ତରଣ'ଠାରୁ ଅଦ୍ୟାବଧି ରଚିତ କବିତା ସଂଗ୍ରହମାନଙ୍କରେ ଏହି ଭାବନାର ଏକ କ୍ରମ ପ୍ରସାରିତ ଦିଗନ୍ତ ସ୍ପର୍ଶ କରି ହୁଏ । ଇନ୍ଦ୍ରିୟଗୁଡ଼ିକର ବିଶୃଂଖଳ ବ୍ୟବହାରରେ ର୍ୟାମ୍ବୋ ଭୟଙ୍କର ଯୌନବ୍ୟାଧିଗ୍ରସ୍ତ ହୁଅନ୍ତି ଏବଂ ସେଥିରେ ତାଙ୍କର କାଳ ହୁଏ । ଡାକ୍ତର-ଖାନାରେ ଚିକିତ୍ସିତ ହେଲାବେଳେ ମନ ତାଙ୍କର ଅବଶ ହୋଇ ଯାଇଛି ଓ ସେ ନିଃସଙ୍ଗତାର ଶିକାର ହୋଇଛନ୍ତି । ତାଙ୍କୁ ପୃଥିବୀ ହୋଇଛି ନର୍କର ନିକଟବର୍ତ୍ତୀ । "I should have my hell for anger, my hell for pride - and the hell of laziness; a symphony of hells" (୪) । କମଳାକାନ୍ତ କିନ୍ତୁ ନର୍କରେ ଦେଖନ୍ତି ସ୍ୱର୍ଗର ଛବି—"ମେଞ୍ଚାଏ ଅଙ୍ଗାରକୁ ମୁଠାଇ/ ଥୋକାଏ କଣ୍ଟାରକୁ ଦାନ୍ତରେ/ ଗାଧୋଇ କୁଷ୍ଠୀର ଘା'କୁ ପିଏ/ ଶୁଙ୍ଘେ ସେ ପବନ ଆହ୍ଲାଦ/ ମୋ ରକ୍ତର, ମୋ ଖଣ୍ଡା ଖେଳର/ପାରଦର୍ଶିତା, ମୋ ରକ୍ତ ଓ ନର୍କର/ ଭୂସ୍ୱର୍ଗ !" ( ଜୀବନର ଡାକ ନାଁ—'ଖସିବାର ବେଳ'—ପୃ. ୩-୪ ) ।

---

୩ । Rimband, Arthur, 'A season in Hell'—1952, New York, P. 15

୪ । Ibid—P. 33.

କବି କେତେବେଳେ ଭୋଗୀ ତ ପୁଣି କେତେବେଳେ ଯୋଗୀ । ଯୋଗୀର ଦୃଷ୍ଟି ଯେଉଁଠି ତୀକ୍ଷ୍ଣ, ସେଠି ଗଳିତ କୁଷ୍ଠର ଭୟଙ୍କର ଜୀବାଣୁର କରାମତ କିଛି ନୁହେଁ । ଯୋଗୀଟିଏ ତେଣୁ କୁଷ୍ଠୀର ଘା'କୁ ଶୁଙ୍ଘିପାରେ ବା ଚାଟିପାରେ । ଯେମିତି ବିବେକାନନ୍ଦ ସେଦିନ ତାଙ୍କର ଗୁରୁ ରାମକୃଷ୍ଣଙ୍କର କର୍କଟ ରୋଗ ଫଳରେ ଉପୁଜିଥିବା ପୂଜ ରକ୍ତକୁ ଶୋଷି ନେଇଥିଲେ । ଏଇଠି ଜୀବନ ବୈରାଗୀ ସାଧୁହିଁ ଜୀବନବାଦୀ ଭୂମିକାରେ ଅବତୀର୍ଣ୍ଣ । ଭାରତରେ ଦୁଇଟି ଚିନ୍ତା ସବୁବେଳେ କ୍ରିୟାଶୀଳ ହୋଇଛି—ଗୋଟାଏ ଯୋଗ ଦୃଷ୍ଟି, ଅନ୍ୟଟି ଭୋଗ ଦୃଷ୍ଟି । ଯୋଗ ଦୃଷ୍ଟି କଥାତ ସମସ୍ତେ ଜାଣନ୍ତି, କିନ୍ତୁ ଭୋଗ ଦୃଷ୍ଟି କଥା କମ୍ ଲୋକ ସ୍ୱୀକାର କରନ୍ତି । ଆଲେକ୍ଜାଣ୍ଡର ଯେତେବେଳେ ଭାରତ ଆକ୍ରମଣ କରିବାକୁ ଆସିଥିଲେ, ସେତେବେଳେ ତାଙ୍କ ସାଙ୍ଗରେ ଆରିଆନ ନାମକ ଜଣେ ଐତିହାସିକ ଆସିଥିଲେ । ସେ ଭାରତୀୟଙ୍କ ସମ୍ପର୍କରେ ଲେଖିଛନ୍ତି— "ଭାରତୀୟଙ୍କ ଠାରୁ ଅଧିକ ନୃତ୍ୟ ଗୀତ ପ୍ରିୟ ଜାତି ଆଉ ନାହାନ୍ତି ।" ଆମର ଗୀତା ମଧ୍ୟ ସ୍ୱୀକାର କରିଛି 'ପ୍ରବୃତ୍ତିହ୍ୟ ନିବୃତ୍ତିରେଷାଂ' ଅର୍ଥାତ୍ ପ୍ରବୃତ୍ତି ମାଧ୍ୟମରେ ହିଁ ନିବୃତ୍ତି ଆସେ । ଯାହାର ଭୋଗ ନାହିଁ, ସେ କ'ଣ ଅବା ତ୍ୟାଗ କରିବ ? ରାଜପୁତ୍ର ଗୌତମ ତ୍ୟାଗ କଲେ ସେ ହେବେ ବୁଦ୍ଧଦେବ । କିନ୍ତୁ ସମସ୍ତର ଭଉଁରୀ ଭିତରେ ପଡ଼ିଥିବା ଲୋକଟିଏ/ଷଡ଼ଯନ୍ତ୍ରର ବ୍ୟୂହ ଭିତରକୁ ଫିଙ୍ଗା ହୋଇଥିବା ବାସ୍ତବ ଜୀବନର ଅସହାୟତାଟିଏ ତ୍ୟାଗ କଲେ ପାଏ କ'ଣ ? ଭୋଗର ଅର୍ଥ ତାଠି କି ମୂଲ୍ୟବୋଧ ନେଇ ଉଭା ହେବାର ସାମର୍ଥ୍ୟ ଖୋଜେ ? ଏ ଦୃଷ୍ଟିରୁ କମଳାକାନ୍ତଙ୍କ କାବ୍ୟଦୃଷ୍ଟି ସଙ୍ଗେ ଭାରତୀୟ ଚିନ୍ତାର ଗୋଟାଏ ଐକ୍ୟ ରହିଛି । ମାତ୍ର ଏଥିରେ ବି କମଳାକାନ୍ତ ତୃପ୍ତ ହୋଇ ପାରି ନାହାନ୍ତି । ଜୀବନକୁ ସେ ବିଭିନ୍ନ ଦୃଷ୍ଟିକୋଣରୁ ଦେଖିବାକୁ ପ୍ରୟାସ କରିଛନ୍ତି । ସେଥିପାଇଁ ହୁଏତ ସେ ଶ୍ୟାମ ଭାଇଙ୍କ ଭାବପ୍ରବଣ ସାଧକ ଜୀବନର ଇସ୍ତାହାର 'ମୋ ଜୀବନ ପଛେ ନର୍କେ ପଡ଼ିଥାଉ, ଜଗତ ଉଦ୍ଧାର ହେଉ'କୁ ସହଜରେ ଗ୍ରହଣ କରି ପାରିନାହାନ୍ତି । କବି କହନ୍ତି— "ଶ୍ୟାମ ଭାଇ, ତୁମ ଗୋଡ଼ ଖୋଲିବା ଲାଗି/ମୁଁ ମୁଁ କିଣିଛି ।/ ତୁମ ଚଉଦ ପୁରୁଷ ଶୂନ୍ୟରେ ନ ଚଢ଼ିଲେ/ ତୁମ ପାଇଁ ମୁଁ ଅଛି । ଅଛି ।" (ମୋ ଛଡ଼ା ପ୍ରଭୃତି ମଣିଷ—ଗୀତ ଗା' ନା ରେ ପକ୍ଷୀ ପୃ. ୬୫) କବିଙ୍କର ଏ ଦମ୍ଭୋକ୍ତି ଭିତରେ ନିହିତ ତାଙ୍କର ଜୀବନ ଦର୍ଶନ । ଶ୍ୟାମ ଭାଇଙ୍କ ଯୋଗୀ ଦୃଷ୍ଟି କମଳାକାନ୍ତଙ୍କ ଯୋଗୀ ଦୃଷ୍ଟିଠାରୁ ସମ୍ପୂର୍ଣ୍ଣ ପୃଥକ ମନେହୁଏ । ବଞ୍ଚିବା ମରିବା ଭିତରେ କିଛି ପାର୍ଥକ୍ୟ ନାହିଁ ବୋଲି ଶ୍ରୀ ଲେଙ୍କା କହିଲାବେଳେ ଶ୍ୟାମ ଭାଇଙ୍କ ଦର୍ଶନକୁହିଁ ସେ ବିରୋଧ କରନ୍ତି । "ଜୀବନ ମାନେ ଗୋଟେ ଭୂଇଁ ଯେଉଁଠି/ ବଞ୍ଚିବା ଓ ମରିବା ଭିତରେ ବିଶେଷ କିଛି ତଫାତ୍ ନ ଥିଲାବେଳେ ମଣିଷ ବେଲୁନ୍ ଭଳି/ ଶ୍ୱାସ ପ୍ରଶ୍ୱାସରେ ଯୁଦ୍ଧ କରୁଥାଇ । ହାରିବା ଓ ଜିତିବାର ମାନେ ଖୋଜିଲେ

ଦିଶେ : ନିଜେ ନିଜଠୁ / ଭିନ୍ନ, ସମସ୍ତ ସମସ୍ତଠୁ ଛିନ୍ନ, ଦୁଃଖ ସୁଖ ଏକାକାର ।"
(ତୁମେ ଯେଉଁମାନେ ଆସୁଚ'—ଗୀତ ଗା' ନାରେ ପକ୍ଷୀ—ପୃ. ୮୯ ) ।

ଅନ୍ୟକୁ ମଣିଷ ସହଜରେ ବୁଝିପାରେ ନାହିଁ । ସମସ୍ତଙ୍କୁ ବୁଝିବା ପୂର୍ବରୁ ଆଗେ ନିଜକୁ ବୁଝିବା ଦରକାର । ଏକଥା ଆମର ସନାତନ ଧର୍ମ କହେ । ନିଜେ ନିଜଠାରେ ଅଣଆୟତ୍ତ ହୋଇ ପଡ଼ିଲେ ମଣିଷ ଭଗବାନଙ୍କର ପବିତ୍ର କୋଳର ଶରଣାପନ୍ନ ହୁଏ । କିନ୍ତୁ ନିଜକୁ ଚିହ୍ନି ଅନ୍ୟ ସମସ୍ତଙ୍କୁ ନ ଚିହ୍ନିଲା ପର୍ଯ୍ୟନ୍ତ ଭଗବାନ ବୋଧହୁଏ ମଣିଷ ନିକଟକୁ ଓହ୍ଲାଇ ଆସନ୍ତି ନାହିଁ । ର୍ୟାମ୍ବୋ ଏ ବିଷୟରେ ନିଜର ଦୃଢ଼ ଉକ୍ତି ପ୍ରକାଶ କରିଛନ୍ତି । "I am not a prisoner of my reason. I said : God I want freedom in salvation. : how am I seek it ? Frivolous tastes have left me. No more need of devotion or of divine love." (*) । ୧୮୭୨ ମସିହାରେ ଆର୍ଥର୍ ର୍ୟାମ୍ବୋ ଏ କଥା ଲେଖିଥିଲେ । କିନ୍ତୁ ଶହେ ବର୍ଷ ପରେ ବି ସେ ଭାବନାର ଅବସାନ ହୋଇନାହିଁ । କମଳାକାନ୍ତ ଓଡ଼ିଶାରେ ବସି ବି ସେଇ ଭାବନାକୁ ଅନୁଭବ କରିଛନ୍ତି । ପ୍ରକାଶ ଭଙ୍ଗୀରେ କମଳାକାନ୍ତଙ୍କର ବିଶେଷତ୍ୱ ଧରା ପଡ଼େ । 'କି ଯାଏ : ବଞ୍ଚେ ଅବା ମରେ' କବିତାରେ ସେ ର୍ୟାମ୍ବୋଙ୍କୁ ଟପି ଯାଇ ସୃଜିଛନ୍ତି ଏକ ଚମତ୍କାର କାବ୍ୟାଲୋକ । "ମୋ ପୁଣ୍ୟର ତୁମେ ଅଂଶୀଦାର/ ମୋ ପାପର ମୁଁ ଅଧିକାରୀ/ ମୁଁ ବଞ୍ଚେ ଅବା ମରେ, ମରେ ଅବା ବଞ୍ଚେ/ କି ଯାଏ ତୁମର, ହେ ନବୀନ ସୁନ୍ଦର ଶ୍ୟାମ,/ ବଂଶୀଧାରୀ !!" (ଗୀତ ଗା' ନାରେ ପକ୍ଷୀ—ପୃ. ୬୦ ) । ବେଦ, ଉପନିଷଦ, ଗୀତା, ଭାଗବତ କହିଥିଲେ—ଯମ ନିୟମାଦି ପାଳନ କଲେ ମଣିଷର ଆତ୍ମ ଦୃଷ୍ଟିର ଉନ୍ମୋଚନ ଘଟେ । ଏଥିପାଇଁ ଲୋଡ଼ା କଠିନ ସଂଯମ । ଆଧୁନିକ କବି କିନ୍ତୁ ଏହି କଥା ପ୍ରତି ଶ୍ରଦ୍ଧାଶୀଳ ଦୃଷ୍ଟିପାତ କରନ୍ତି ନାହିଁ । ବରଂ ଇନ୍ଦ୍ରିୟକୁ ବିଶୃଙ୍ଖଳ କରି ଜୀବନର ସବୁ ବାସ୍ତବ ଅର୍ଥ ତା' ଭିତରୁ ଖୋଜିବାକୁ ସେ ଉଦ୍ୟମଶୀଳ । ଏହା ଏକ ଆତ୍ମଘାତୀ ମନର ଭୟଙ୍କର ଅଭିଳାଷ ! ଜୀବନକୁ ଚିହ୍ନିବା ପାଇଁ ଇନ୍ଦ୍ରିୟମାନଙ୍କର ଆମନ୍ତ୍ରଣ କବିଙ୍କୁ ଯେଉଁଠି ନେଇ ପହଞ୍ଚାଇ ଦିଏ, ତାହାର ନାମ ଦୁଃଖ । ଜୀବନ ପ୍ରତି ଏହା ଏକ ନେଗେଟିଭ୍ ଆପ୍ରୋଚ୍ । ନିଜେ ବିଷପାନ କରି ନୀଳକଣ୍ଠ ଭୂମିକାରେ ଅଭିନୟ କରିବା କେତେ ବିପଦପୂର୍ଣ୍ଣ ସତେ ! ଏହା ଜୀବନ ପ୍ରତି କବିଙ୍କର ଏକ ଦୃଷ୍ଟିକୋଣ । ଆଡ୍‌ଲସ୍ ହକ୍‌ସଲେଙ୍କ ମତରେ ଏହାହିଁ ଆଧୁନିକତାର ଅନ୍ୟ ନାମ । ଯେପରି—''ପିଇ ଯାଅ ଦେଶୀ ବା ବିଦେଶୀ ସୁରା/

* । I bid—P. 23--

ପେଲି ପାଣି ରକ୍ତର ହ୍ରାଡ଼କୁ" (ସନ୍ନ୍ୟାସ — କବିତାର ମୁହଁ—ପୃ.୬୬) ବା "ମାଲେ, ମୁଁ ଏଇନେ ଫେରୁଛି ପିଇ ସମୁଦ୍ର। ଓ/ ସେଥିପାଇଁ ତୁ ବୋଧେ ନିଷ୍କରୁଣ ହେଲୁ, ଏବଂ /ପେଲି ଦେଲୁ ରକ୍ତର ସମୁଦ୍ରେ ମା' /ନିଆଁର ହ୍ରଦକୁ।" (ମୋ ମା'ପ୍ରତି — କବିତାର ମୁହଁ)। ଏଇ ଅନୁଭୂତି ଭିତର ଦେଇ ସଞ୍ଚରଣଶୀଳ କବିଙ୍କୁ ଯଦି ଖାପ-ଛଡ଼ା କୁହାଯାଏ, ତେବେ ସେ ନାଚାର। ମାତ୍ର ସାର୍ତ୍ରେ କହନ୍ତି — ବାତୁଳତା ଏକ ଖାପ୍ଛଡ଼ା ଆଚରଣ ନୁହେଁ। "There is a reason in madness ।" କାରଣ ତାଙ୍କ ମତରେ କବିତା ରଚନା ଏକ ବିଶେଷ ଉଦ୍ୟୋଗ (an enterprise)। କବିର ଭାବନାରେ ହୁଏତ ପୌର୍ବାପର୍ଯ୍ୟ କ୍ରମରକ୍ଷାର ଅଭାବ ଥାଇପାରେ। ମାତ୍ର ତାହା ଭାବ ବା ବୁଦ୍ଧି ମାନ୍ଦ୍ୟର ପରିଚାୟକ ନୁହେଁ। ଏହା ସତ୍ତ୍ୱେ ତା'ର ଚେତନାର ଉଚ୍ଚତାରେ ପାଠକ ପହଞ୍ଚି ନ ପାରିଲେ କବି ନିଜକୁ ଦାୟୀ କରି ଆତ୍ମସମାଲୋଚନାରେ ମଗ୍ନ ହୁଏ ଏବଂ କବିର ଏଇ ପ୍ରତିକ୍ରିୟା ପାଠକର ଅସନ୍ତୋଷରୁ ଜନ୍ମ ନେଇଥାଏ। "ସାବାସ୍ ସାବାସ୍ କବି। ଆଣ୍ଠୁଏ ପାଣିରେ/ ବୁଡ଼ି ମର। ଶାମୁକାଏ ଦୁଃଖର ହ୍ରଦରେ/ ଭାସୁ ତୋର ଶବ। ହେବରେସା ବେହେଡ଼ା ବୁଢ଼ା/ ହସୁଥାଉ, କାନ୍ଦୁଥାଉ/ ଚୁପ୍ଚାପ୍ ବସିଥାଉ ମହିଷି ପିଠିରେ।" (କବି ଉବାଚ—ଗୀତ ଗା' ନା ରେ ପକ୍ଷୀ)। ପରମୁହୂର୍ତ୍ତରେ କବି ଭାବେ, ସେ ତ ଆତ୍ମସ୍ଥ ଯୋଗୀଟିଏ; ଯେତେ ନିନ୍ଦା ବାଜଣା ବାଜିଲେ ବି ସେ ଅନାସକ୍ତ। କାରଣ ଏସବୁ ଅଭିଯୋଗ ଶୁଣିବାକୁ ଆତ୍ମ ସମାହିତ କବିର ବେଳ କାହିଁ ?

ଏ ହେଉଛି ପ୍ରକୃତ ଯୋଗୀର ଲକ୍ଷଣ। କବି ଭୋଗୀ ହେଲାବେଳେ ଯେପରି ତନ୍ମୟ, ଯୋଗୀ ହେଲାବେଳେ ସେହିପରି ସମ୍ମୋହିତ। ତେଣୁ ଯୋଗ ଓ ଭୋଗ—ଜୀବନ ନାମକ ପୃଥିବୀର ଦୁଇଟି ମେରୁ। କବି ସୁମେରୁରୁ କୁମେରୁକୁ, କୁମେରୁରୁ ସୁମେରୁକୁ ଯା' ଆସ କରୁଥିବା ଜୀବଟିଏ। କବି ଶ୍ରୀ ଲେଙ୍କା ତା'ର ଏକ ସୁନ୍ଦର ବିଶ୍ଳେଷଣ କରିଛନ୍ତି —"ମୋ ବିଚାରରେ ବାହାରକୁ ଯେତିକି ଦିଶେ ବା ବୁଝାଯାଏ ଲୋକେ କହନ୍ତି ତାହାହିଁ ଜୀବନ ବା ଜୀବନର ସ୍ପଷ୍ଟତା, ନିଶ୍ଚିତତା। ଯେତେକ ଦିଶେ ନାହିଁ, ବୁଝି ବୁଝିହୁଏ ନାହିଁ, ଜଣା ଅଜଣା ଭଳି ଜଣାପଡ଼େ ସେତିକି ଅସ୍ପଷ୍ଟତା, ଅନିଶ୍ଚିତତା। ଜୀବନଟା ଉଭୟ ଯେତିକି ପୋତା ତା'ଠୁଁ ଶତୋଽଧିକ। ଉପର ଶୋଭା ଜାଣିବ ପୋତାରୁ। ଯାହାର ଯେତେ ପୋତା-ମାଲ ଥାଏ ସେ ସେତେ ଧନୀ। ଭଲ ଫସଲ। ଯେଉଁ ପୋଖରୀର ଯେତେ ପଙ୍କ ତା'ର ପାଣି ସେତେ ସ୍ୱଚ୍ଛ ଓ ଶୀତଳ। ସାତକୋଶିଆ ଗଣ୍ଡ ଦେଖିଛ ? ଯେତେ ଗମ୍ଭୀରିଆ ସେତେ କାଚଧାରିଆ, କୁଆ ଆଖିଆ ତା' ପାଣି। ଅସ୍ପଷ୍ଟତା ଓ ଅନିଶ୍ଚିତତା ଯେମିତି ପୋଖରୀ ମଝି ଅକାତ କାତ ପାଣିରେ ପୋତା ହେଇଥିବା

ବାଉଁଶଟେ । ଉପରକୁ ଯେତିକି ଦିଶେ ଆମେ ସହାସ୍ୱ କହୁ ସେତିକି ଜୀବନ । ପାଣିଠୁ ପଙ୍କଯାଏ ଛୁଇଁଥିବା ଅଂଶକୁ କବିଏ କହନ୍ତି ଗୁମ୍ଫାଚ୍ଛନ୍ନତା, ବିଶେଷତା । ପଙ୍କ ଭିତରେ ଲୁଚିଥିବା ଅଂଶକୁ ଯୋଗୀଏ କହନ୍ତି ରହସ୍ୟ । କବିକୁ ଏଇ ତିନୋଟି ସତ୍ତା ସହ ଏକୀଭୂତ ହେବାକୁ ପଡ଼େ । ସେଇଟି ହେଲା ଭୋଗୀ, କବି ଓ ଯୋଗୀର ସତ୍ତା । ତିନୋଟି ଅଂଶକୁ ମିଶାଇ ଦେଲେ ବାଉଁଶର ଲମ୍ବ ବାହାରେ । ତିନୋଟି ସତ୍ତାକୁ ଏକାଠି କଲେ ଜୀବନର ବାସ୍ନା ମହକେ । ସବୁ ଅସ୍ପଷ୍ଟ ଓ ଅନିର୍ଦ୍ଦିଷ୍ଟ ମୁହୂର୍ତ୍ତର ଧୋକାବାଜିପଣ ପଦାଫାଶ ହୋଇଯାଏ । ବାସ୍ତବତାଠାରୁ ଦୂରେଇ ଯିବାକୁ ପ୍ରତିଟି ସଚେତନ, ବିଚାରଶୀଳ ମଣିଷ ସର୍ବାନ୍ତଃକରଣରେ ଘୃଣେ ବୋଲି ମୁଁ ବୁଝିଛି । କିନ୍ତୁ ଯାଇ ହୁଏ ନାହିଁ ।" (୬)

କମଳାକାନ୍ତଙ୍କ କାବ୍ୟଧାରଣା ଓ ଜୀବନ ପ୍ରତି ଦୃଷ୍ଟିଭଙ୍ଗୀ ମଧ୍ୟରେ ଘନିଷ୍ଠ ସମ୍ବନ୍ଧ ରହିଛି । କିନ୍ତୁ ସାହିତ୍ୟିକ ଜୀବନର ପ୍ରାରମ୍ଭରେ ଏହି ନୂତନ କାବ୍ୟଦୃଷ୍ଟି ସେ ପାଇପାରି ନାହାନ୍ତି । ଏହା ତାଙ୍କର 'ସୁନାଫସଲ' (୧୯୫୮) ଓ 'ପ୍ରୀତି ଓ ପ୍ରତୀତି' (୧୯୬୩)ର କବିତାଗୁଡ଼ିକରୁ ପ୍ରମାଣ ମିଳେ । ପଞ୍ଚମ ଦଶକରୁ ଓଡ଼ିଆ ସାହିତ୍ୟରେ ନୂତନ କାବ୍ୟଧାରା ଆରମ୍ଭ ହୋଇ ଯାଇଥିଲେ ବି କବି କମଳାକାନ୍ତ ଏଇ ନବଚେତନା ସଙ୍ଗେ ଖାପ ଖୁଆଇ ପାରି ନାହାନ୍ତି । ତାରୁଣ୍ୟର ସ୍ୱପ୍ନ ଓ ଆଶା ଭିତରେ ସେ କେବଳ ଘୂରି ବୁଲିଛନ୍ତି କିଛିଟା ପ୍ରତିଶ୍ରୁତିର ଆଶା ରଖି । ଫୁଲର ସୌରଭରେ ମୁଗ୍ଧ ହୋଇଛନ୍ତି କବି, ତନ୍ଦ୍ରାମଗ୍ନ ଅଳସ ସ୍ୱପ୍ନ ଭିତରେ ଖୋଜିଛନ୍ତି ଜୀବନର ସ୍ୱାଦୁ । ଏ ଦୃଷ୍ଟିରେ ଥାଇପାରେ ତାରୁଣ୍ୟର ସତତା, କିନ୍ତୁ ନାହିଁ ଜୀବନବୋଧର ଗଭୀରତା । ପାରମ୍ପରିକତାର ଆକର୍ଷଣ ଏଠାରେ ଖୁବ୍ ବେଶି । 'ପାଣ୍ଡୁଲିପି'ରେ ପରୀକ୍ଷିତ ନୂତନ କାବ୍ୟରୂପ ଓ ବିଷୟର ଅଗ୍ରଗତି ଖୁବ୍ ଦ୍ରୁତଗତିରେ ଚାଲିଥିବାବେଳେ କମଳାକାନ୍ତ ଏଇ କାବ୍ୟିକ ପରିବର୍ତ୍ତନ ପ୍ରତି ଦୃଷ୍ଟି ଦେଇପାରିନାହାନ୍ତି । ସେ ସଚ୍ଚିଦାନନ୍ଦଙ୍କ ପ୍ରବର୍ତ୍ତିତ ନୂତନ କାବ୍ୟଶୈଳୀ ଗ୍ରହଣ ପରିବର୍ତ୍ତେ ତାଙ୍କର 'ପଲ୍ଲିଶ୍ରୀ'ର ସୌନ୍ଦର୍ଯ୍ୟ ମଧୁପାନ କରୁ କରୁ ବାଟବଣା ହୋଇଛନ୍ତି (୭) । 'ସ୍ୱଗତ' ପ୍ରକାଶ ପାଇଛି ୧୯୬୮ ରେ ।

---

୬ । କବି କମଳକାନ୍ତଙ୍କ ସହ ସାକ୍ଷାତକାର ଶ୍ରୀ ନରବାର ସାହୁ, 'ନବଲିପି' — ଫେବୃୟାରୀ—୧୯୭୬

୭ । 'ସୁନାଫସଲ'ର 'ଶିଳ୍ପୀ' କବିତା ଦ୍ରଷ୍ଟବ୍ୟ କାକର ପଖାଳା ସବୁଜ ଘାସୁଆ କନକ କିରଣ ସୂରୁଜ ଦେଲେ ଗୋ ବୁଣି ।/ସଙ୍ଗେ "ପଲ୍ଲିଶ୍ରୀ" 'କାକର ଖେତେ/ହଳଦୀ ବଣବୁଦାଣିରେ କପୋତ ବାହୁନ ଗାଇଲା' ପଦଟିକୁ ମିଳେଇ ଦେଖାଯାଇ ପାରେ ।



କୁଞ୍ଜବିହାରୀ, ନିତ୍ୟାନନ୍ଦ, ବିନୋଦ, ଗୁରୁପ୍ରସାଦ' ଜାନକୀବଲ୍ଲଭ, ଭାନୁଜୀ, ବେଣୁଧର,
ଚିନ୍ତାମଣି, ରମାକାନ୍ତ ପ୍ରମୁଖ ଆଧୁନିକ ଶୈଳୀରେ କବିତା ଲେଖା ଆରମ୍ଭ କରି
ଦେଇଛନ୍ତି । କମଲାକାନ୍ତ ଏସବୁ ପରିବର୍ତ୍ତନ ପ୍ରତି ସେତେବେଳେ ମୁଦ୍ରିତ ଚକ୍ଷୁ ।
ତେଣୁ ସ୍ୱାଭାବିକ ଭାବରେ ନୀଳ ଆକାଶ । ସବୁଜ ଧାନକ୍ଷେତ, କୁହୁ କୁହୁ ବହି-
ଯାଉଥିବା ଝରଣା ପ୍ରତି ସେ ସମ୍ମୋହିତ ଦୃଷ୍ଟିରେ ଅନେଇଛନ୍ତି । ସେତେବେଳକୁ
ତାଙ୍କ ଜୀବନ ବୀଣାର ତାରରୁ ଶୁଭୁଛି ସୁମଧୁର ସଙ୍ଗୀତର ଝଙ୍କାର । ବିମୁଗ୍ଧ
କବି ସେତେବେଳେ କହିଛନ୍ତି—''ଜୀବନ ! ତମେ ବୁଝିଛ କେବଳ ରସସ୍ୱାଦ/
ମରମ ଆକାଶେ ଉଠିଛୁ ବାଦଲ ଯେବେ ପଥେ/ନୟନେ ତୁମରି ଲଟିକି ତୂଳୀର
ଅଞ୍ଜନ/ତୁଟିନ ସ୍ରଷ୍ଟା ଲୁବ୍ଧ ପରାଣ ମନ ମତେ ।" (ଆଶାୟୀ— ସୁନାଫସଲ) ।
ମାନସିଂହ ଓ ଗଡ଼ନାୟକଙ୍କଠାରୁ ଏହି କବିତା ବେଶି ଦୂର ନୁହେଁ ।

'ପ୍ରୀତି ଓ ପ୍ରତୀତି'ରେ କବିଙ୍କର ପରିବର୍ତ୍ତନ ଅବଶ୍ୟ ଘଟିଛି; କିନ୍ତୁ ପ୍ରେମ
ଚିନ୍ତାର ରୂପାନ୍ତର ଘଟି ନାହିଁ । ଜୀବନ ପ୍ରତି ଦୃଷ୍ଟିଭଙ୍ଗୀ ବଦଳି ନାହିଁ । ବାଚନ
ଭଙ୍ଗୀର କିଞ୍ଚିତ୍ ପରିବର୍ତ୍ତନ ଫଳରେ ତାଙ୍କର ବର୍ଣ୍ଣିତ ବିଷୟବସ୍ତୁ କ୍ରମଶଃ
ଅର୍ଥବହ ହେବାକୁ ଲାଗିଛି । ଗଡ଼ନାୟକ ଓ ମାନସିଂହଙ୍କ ମୋହ ଛାଡ଼ିବାର
ପ୍ରୟାସ ଏଥିରେ ଅନାୟାସ ଲକ୍ଷ୍ୟ । ମାନବିକତା ପ୍ରତି ତାଙ୍କର ଦୃଷ୍ଟି ଉନ୍ମୀଳିତ
ହୋଇଛି—''ତୁମେ ତାଙ୍କର ଜୀବନର ବେଦ ପାଠକର ।/ ଯେଉଁମାନେ
ଜୀବନର ପ୍ରତିଟି ପୃଷ୍ଠାରେ/ମାନବିକତାର ଲିପି ଲେଖିଛନ୍ତି ।" (ତାଙ୍କର ସଙ୍ଗୀତ
ଗାଥା) ଆଗକୁ ଚାଲିବା ପାଇଁ କବି ସଞ୍ଚୟ କରିଛନ୍ତି ସାହସ । ଚରୈବେତି ମନ୍ତ୍ରରେ
ସେ ଉଦ୍‌ବୁଦ୍ଧ ହୋଇଛନ୍ତି । ଗୋଟାଏ ହାତରେ ସଂଗ୍ରାମ ପାଇଁ ଅସ୍ତ୍ର ଓ ଅନ୍ୟ
ହାତରେ ପ୍ରେମିକାକୁ ଆଶ୍ଳେଷି ଧରିବାର ବଳବତୀ ଇଚ୍ଛା ଭିତରେ ତାଙ୍କ କବି
ଜୀବନର ନିର୍ଦ୍ଦିଷ୍ଟ ରୂପ ସ୍ପଷ୍ଟ ଧାରଣା କରି ହୁଏ ନାହିଁ । 'ଅଭିଯୋଗ' କବିତାରେ
ଜୟ ପରାଜୟକୁ ଜୀବନର ସଫଳ ସ୍ୱୀକୃତି ଭାବରେ ଗ୍ରହଣ କରି ନେଇଥିବା କବି
'କ୍ଷୁଧା' କବିତାରେ କାତରତାରେ ଆକ୍ରାନ୍ତ । ସଭ୍ୟତାର ଅଳନ୍ଧୁ ଭିତରେ ନିର୍ବେଦ
ହୋଇ ପଡ଼ିଥିବା ଏହି କବି ସତ୍ତା ପରବର୍ତ୍ତୀ କାଳରେ ଅନେକ ଭଲ କବିତାର
ସ୍ରଷ୍ଟା ହେବେ ବୋଲି ଅନେକ ହୁଏତ ଚିନ୍ତା କରି ପାରି ନ ଥିବେ । ଜୀବନ ନଦୀ
କୂଳରେ ଉପହସ୍ତ ଦ୍ୱନ୍ଦ୍ୱରେ ଥାଇ ସେଠାରୁ ପଳାୟନ ଏକ ରୋମାଣ୍ଟିକ୍ ପ୍ରବେଶ
ମାନସିକତା ଭିନ୍ନ ଅନ୍ୟ କିଛି ହୋଇ ନ ପାରେ । କବିର ବିଷାଦକ୍ଲିଷ୍ଟ ଅଭିବ୍ୟକ୍ତି
ଏହି ଭାବନାର ପ୍ରତିଫଳନ ମାତ୍ର । ମାତ୍ର 'ଉତ୍ତରଣ' କବି ଓ ପାଠକ ପାଇଁ
ଏକ ନୂତନ ସର୍ଜନ, ଯେଉଁଠି କବିର କଥା ଓ ଭଙ୍ଗୀ ଏକାନ୍ତ ଭାବେ ପରୋକ୍ଷ ।
ସ୍ପଷ୍ଟ ଆଲୋକରୁ ଏକ ଅସ୍ପଷ୍ଟ ଛାୟାଲୋକ ଭିତରକୁ ଏ କବିତାର ପ୍ରବେଶ ଘଟିଛି ।
ଜୀବନାନୁଭୂତି କି ପ୍ରେମରେ ଗମ୍ଭୀର ହେବାକୁ ଲାଗିଛି । ଜୀବନର କ୍ଲିଷ୍ଟତା

ପ୍ରାନ୍ତର ଭିତରର ପକ୍ଷୀ ସେ କେଉଁ ଅଂଶଟିକୁ ନଜର କରିବେ, ଏଇ ଦ୍ୱନ୍ଦ୍ୱ 'ଉତ୍ତରଣ' (୧୯୭୬) ର ଛତ୍ରେ ଛତ୍ରେ ଅଙ୍କିତ । ତାଙ୍କର ଭାବପ୍ରବଣତା ଏଇଠାରେ ପ୍ରଥମେ ବସ୍ତୁର ସମ୍ମୁଖୀନ ଓ କବିତାଗୁଡ଼ିକ ବୌଦ୍ଧିକତାର ପ୍ରଭାବରେ ଉଦ୍ଦେଳିତ । ନଜର ଅନୁଭୂତି ଭିତରେ ଚୂର୍ଣ୍ଣ ସମାଜର ଚିତ୍ର ତାଙ୍କର ଏଇ ଶ୍ରେଣୀର କବିତାଗୁଡ଼ିକରେ ଫୁଟି ଉଠିଛି । ଆଧୁନିକ ମନର ବିଶ୍ଳେଷଣ ପରିପ୍ରେକ୍ଷି-ତରେ କବି କମଳାକାନ୍ତଙ୍କ କବିତା ତାଙ୍କ ଭାବନାର ବଳିଷ୍ଠତାକୁ ବହନ କରିଛି । କାବ୍ୟିକ ବିକାଶର ସ୍ତରେ ସ୍ତରେ ଶ୍ରୀ ଲେଙ୍କାଙ୍କ ମନରେ ସୃଷ୍ଟି ହୋଇଛି ପ୍ରଶ୍ନବାଚୀ । ମଣିଷ ତାର ଭସ୍ମଙ୍କର ସ୍ଥିତିକୁ କିଭଳି ଗହଣ କରୁଛି, ଶ୍ରୀ ଲେଙ୍କା ସତର୍କତାର ସହ ଲକ୍ଷ୍ୟ କରିଛନ୍ତି ।

କବି ଶ୍ରୀ ଲେଙ୍କା ଆଧୁନିକ ଜୀବନର ଘାତ ପ୍ରତିଘାତ ମଧ୍ୟରେ ବଢ଼ିଛନ୍ତି । ତେଣୁ ଏକ ବିଶେଷ ଭାବାବେଗ ଓ ଜୀବନାନୁଭୂତି ତାଙ୍କ କବିତାର ଉପଜୀବ୍ୟ ହୋଇଛି । ଫଳତଃ କବି ମାନସର ପ୍ରତିକ୍ରିୟା ଏକ ଉତ୍ତରିତ ଅବସ୍ଥାରେ ପହଞ୍ଚିଛି । 'ସୁନା ଫସଲ' ଓ 'ପ୍ରୀତି ପ୍ରଭାତ'ରେ ଶ୍ରୀ ଲେଙ୍କା ଖୋଜିଥିଲେ ଏକ ପରିବର୍ତ୍ତିତ ସମାଜର ଚିତ୍ର । ମାତ୍ର 'ଉତ୍ତରଣ'ରେ ତାଙ୍କର ଅଭିଯୋଗ ପର୍ଯ୍ୟବେକ୍ଷଧର୍ମୀ । ମଣିଷର ସୁଖ ସମୃଦ୍ଧି ବିରୁଦ୍ଧରେ ମାନବଜାତିର ସୃଷ୍ଟି ହୋଇଥିବା ପ୍ରବଣତା ସମ୍ପର୍କରେ କବି ବେଶ ସଚେତନ ହୋଇଛନ୍ତି—''ଆଜି ଗେଡ଼ା ଓ ପୁତ୍ତଳିକାସ୍ଥ ନେତାଙ୍କର ଗହଳି/ ପର୍ଯ୍ୟାପ୍ତ କଳା ମାର୍ଜାରମାନଙ୍କର ଛକା ପଂଝାର କୌଶଳ ଓ ଉଚ୍ଛିଷ୍ଟ ମଦ୍ୟ ପାତ୍ରରେ ଶତ ଶତ ଛୁଞ୍ଚିର ପ୍ରତିଷ୍ଠା । ମାମୁଲି ସଂସ୍ଥାନର ବନ୍ୟାସରେ ମୁଁ ଏକ ପ୍ରହେଳିକାର ବାହ୍ୟ ଓ ପ୍ରସାଧନର ସହଜାତ ଇନ୍ଦ୍ରିୟ ! ! ମୋର ପିତୃ ସର୍ବସ୍ୱ ପ୍ରାଣରେ କାହାର ପୋର୍ଟିକୋ ମୁଖରିତ ?'' (ଉତ୍ତରଣ—ପୃ· ୧୩-୧୪) ।

ଉତ୍ତର ଷାଠିଏରେ ସାମାଜିକ ବ୍ୟବସ୍ଥା ବିରୁଦ୍ଧରେ କବିଙ୍କର ଏଇ ଅସନ୍ତୋଷରୁ ଶୁଭୁଛି ମାୟାକୋଭସ୍କି, ହୁଇଟ୍‌ମ୍ୟାନ୍ ଓ ସଚ୍ଚିଦାନନ୍ଦଙ୍କ ସ୍ୱର, ଯାହା ସହିତ ପରବର୍ତ୍ତୀ କାଳରେ ଶ୍ରୀ ଲେଙ୍କା ନିଜର ସମ୍ପର୍କ ଛିନ୍ନ କରି ଦେଇଥିବାର ମନେ ହୁଏ । ତେବେ ଯେଉଁମାନେ ଏହି ପରିସ୍ଥିତି ଭିତରେ ବଞ୍ଚିବାକୁ ଇଚ୍ଛୁକ, ସେମାନଙ୍କ ରକ୍ତରେ ମିଶିଯାଇଥିବା ବିଦ୍ରୋହଧର୍ମୀ ପ୍ରକୃତି ବିରୁଦ୍ଧରେ ଲଢ଼ିବାର ପ୍ରୟୋଜନୀୟତା ରହିଛି । ଟି.ଏସ୍. ଇଲିଅଟ୍, ଡବ୍ଲ୍ୟୁ. ଏଚ୍. ଅଡ଼େନ୍‌ଙ୍କ କବିତା ଭଳି ଶ୍ରୀ ଲେଙ୍କାଙ୍କ କବିତା ଆମକୁ ସଚେତନ କରାଇ ଦେଇଛି ଯେ ଆମକୁ ଆତ୍ମଘାତୀ ସଭ୍ୟତା ବିରୁଦ୍ଧରେ ଲଢ଼ିବାକୁ ହେବ । ସମସ୍ତେ ସ୍ୱୀକାର କରିବେ ଯେ ଶ୍ରୀ ଲେଙ୍କାଙ୍କ ଏଇ ଲଢ଼ିବାର ଦୃଷ୍ଟିଭଙ୍ଗୀ । 'ଉତ୍ତରଣ' ପରବର୍ତ୍ତୀ କାଳରେ ଭିନ୍ନ ଭାବେ ରୂପାନ୍ତରିତ ହୋଇଛି ।

ତାଙ୍କର ପ୍ରାଥମିକ ରଚନା ଓ ପରବର୍ତ୍ତୀକାଳର ରଚନାରେ ଆମେ ଦୁଇଜଣ ସ୍ୱତନ୍ତ୍ର ସ୍ରଷ୍ଟାଙ୍କୁ ଭେଟୁ । ଯେଉଁମାନଙ୍କ କବିତାରେ ଜୀବନାନୁସନ୍ଧାନ ଓ ଜୀବନର ଉଦ୍ଦେଶ୍ୟ ସମ୍ବନ୍ଧରେ ଭିନ୍ନ ମତ ରହିଛି । ଏ ଦୃଷ୍ଟିରୁ 'ଉତ୍ତରଣ'ରେ ଜୀବନ ଏକ ବର୍ତ୍ତୁଳଶୀଳ ଭୂମିକାରେ ଦଣ୍ଡାୟମାନ । ଏଥିରେ କବି ମାନସର ସ୍ୱତଃକ୍ରିୟା ଜୀବନ ଓ ସମାଜର ଦୋଷ ତ୍ରୁଟି ପ୍ରତି ସଚେତନ ନିଷ୍ଠସ୍ୱ । ଏହା ସତ୍ତ୍ୱେ ଜୀବନକୁ ଘୃଣା ପରିବର୍ତ୍ତେ ଭଲ ପାଇବାକୁ କବି ଚାହିଁଛନ୍ତି । (୮) କବିଙ୍କ ଭାଷାରେ —"ବ୍ୟସ୍ତତାର ନାଗଫାଶରୁ ଆମେ ମୁକ୍ତ ? ମୁକ୍ତ ଦୁଷ୍ଟିନ୍ତାର ଆଲିଙ୍ଗନରୁ ? ବର୍ତ୍ତମାନ ଜଗନ୍ତବ୍ୟାପୀ ଭ୍ରାନ୍ତିର ଜୁଅଣ୍ଡ ଓ ପାଣିର ଟପ ଟପ ଶବ୍ଦ । ଆମର ପୂର୍ବେଭାଗରେ ଅନ୍ଧାର ଓ ଆଲୋକର ପ୍ରହେଳିକା ! ହେ ନିର୍ଜନ ଓ ଉତ୍ତପ୍ତ ଗ୍ରହିର ଯୌବନ ! ତୁମରି ଫୁଲ ଫଳରେ ସ୍ୱର୍ଗ ପଡ଼ୁ ଯନ୍ତ୍ରଣାର ଆକାଶ !!" (ଉତ୍ତରଣ—ପୃ. ୨୦) ।

ଶ୍ରୀ ଲେଙ୍କା ଉପଲବ୍ଧି କରିଛନ୍ତି ଯେ ମଣିଷର ପାପ ପ୍ରବଣତାରୁ ମୁକ୍ତି ନାହିଁ । ତେଣୁ ସନାତନ ଦୃଷ୍ଟିଭଙ୍ଗୀ ଅନୁଯାୟୀ ସେ ପାପୀକୁ ନିଜ କବିତାରେ ସମ୍ମାନ ଦେଇଛନ୍ତି । ଦେଇଛନ୍ତି ଆଶ୍ରୟ । କାରଣ ଜୀବନକୁ ଯେ କୌଣସି ପରିସ୍ଥିତିରେ ଗ୍ରହଣୀୟ କରି ତୋଳିବା ଶ୍ରୀ ଲେଙ୍କାଙ୍କର ଉଦ୍ଦେଶ୍ୟ । "କି ସ୍ଥାନ କି କାଳପାତ୍ର ଅବା ଅପାତ୍ର ବିଚାର । /କି ପାପ କି ପୁଣ୍ୟ ଲାଭାଲାଭ କ୍ଷୟକ୍ଷତି ଶେଷ ବସୁଧାର । ଧନ ଧାନ୍ୟ ଗୋପଲକ୍ଷ୍ମୀ/ଅଧିଷ୍ଠ ସିନ୍ଦୂର । ନିଜେ ଅଛୁ ନିଜ ଛଡ଼ା/କିଏ ଅଛି ରକ୍ତ ପର/ଏତେ ଆପଣାର ।" (ସନ୍ନ୍ୟାସ—'କବିତାର ମୁହିଁ') । କବିଙ୍କର ଏହି କାବ୍ୟ ଦର୍ଶନ ନିଃସଙ୍ଗତା ପୀଡ଼ିତ ମଣିଷର ହତାଶାକୁ ଆପାତତଃ ଭୁଲିଯିବା ପାଇଁ ଯଥେଷ୍ଟ । ଆମ ଘରପାଖର ପରିବେଶ ଯେତେ କଦର୍ଯ୍ୟ ହେଲେ ବି ଆମେ ବଞ୍ଚିବାକୁ ଶିଖୁ । ସହସ୍ର ପ୍ରତିବାଦ ଓ ଅସନ୍ତୋଷ ଭିତରେ ଚତୁର ମଣିଷ ବଞ୍ଚିଯାଏ । କାରଣ କବି ନିଜେ କହିଛନ୍ତି ଯେ - "ସବୁ ଯାହାର ଆରମ୍ଭିତ ବାଲିର/ ସମୁଦ୍ରରୁ । ସବୁ ଯାହାର ପୂର୍ଣ୍ଣାହୁତି ତ ସମୁଦ୍ରର/କ୍ଷମାକର ତାଳବୃନ୍ତରୁ ।" (ନିତ୍ୟ ନିୟମିତ - ପୃ ୪୦); "ସମୁଦ୍ରହିଁ ଜୀବନ; ବାଲି ହିଁ ଜୀବନର ଯନ୍ତ୍ରଣା, ପୁଞ୍ଜିଭୂତ ବ୍ୟଥା ବେଦନାର କୋରସ୍ । ବାସ୍ତବତାର ଏହା ଏକ ସତ୍ୟଶୀଳ ଦୃଷ୍ଟି ନୁହେଁ କି ? ସମୁଦ୍ରର ଗଭୀରକୁ, ସତ୍ୟର ଶରୀରକୁ ଯିବା ପାଇଁ ପହଁରି ଜାଣିଥିବା ଦରକାର ।" ସର୍ତ୍ତ ଦେଇଥିଲି : ସମୁଦ୍ରକୁ ଦେଖିଲେ ମୂର୍ଚ୍ଛନା ଫାଟିଯିବ । (ସର୍ତ୍ତ— ଖସିବାର ବେଳ) । ଏହାକାଣି ମଧ୍ୟ ସମୁଦ୍ର ଓ ଜୀବନର ଆକର୍ଷଣ

---

୮ । ଦାସ, ଅକ୍ଷୟକୁମାର—"ଅଧୁନିକ ଓଡ଼ିଆ ଦୀର୍ଘକବିତାର ପରିପ୍ରେକ୍ଷିତରେ 'ଉତ୍ତରଣ' —ପୃ. ୮ । ('ଉତ୍ତରଣ' ଦ୍ରଷ୍ଟବ୍ୟ)

ଏଡ଼ାଇଦେବା କବି ପକ୍ଷରେ ସମ୍ଭବ ହେଉ ନାହିଁ । ସେଥିପାଇଁ ନିଜ ଜୀବନକୁ ବାଜି ଲଗାଇବା ପାଇଁ ସେ ପଶ୍ଚାତ୍‌ମୁଖ ନୁହନ୍ତି । ଆସୁ ନିନ୍ଦା, ଆସୁ ବାଧା, ତଥାପି ସେ ଲକ୍ଷ୍ୟଭ୍ରଷ୍ଟ ହେବେ ନାହିଁ । ନିର୍ଲିପ୍ତର ଭାବ ତାଙ୍କ ବଚୁଙ୍କାଚରଣର ପ୍ରକୃତ ଉତ୍ତର । କବି ଯାହାକୁ ଆନ୍ତରିକତାର ଦୃଷ୍ଟି ଦେଇ ଦେଖେ, ଯାହା ପାଇଁ ସତତ ବ୍ୟାକୁଳ ଅନ୍ୱେଷଣ କରେ — ତାହାର ନାମ ଜୀବନ । କିନ୍ତୁ ପାଏ କେବଳ ଗୁମୁରିଲା ଅସନ୍ତୋଷ । ତାର ଚେତନାର ଜଟିଳତାରେ ପାଠକ ପହଞ୍ଚି ପାରେ ନାହିଁ । ତା' ଜୀବନର ନିଷ୍ଠୁରତାକୁ ପାଠକ ଅନୁଭୂତିରେ ଆଣି ପାରେ ନାହିଁ । ତେଣୁ କେବଳ ବୃଥା ଅଭିଯୋଗ ଆରମ୍ଭ ହୁଏ । ନିଜସ୍ୱ ପ୍ରତିକ୍ରିୟା ଜଣାଇ ଶ୍ରୀ ଲେଙ୍କା ଲେଖନ୍ତି — "ଶୁଭୁଚି, ଭଣ୍ଡ କବି ମୁର୍ଦ୍ଦାବାଦ /ଶୁଭୁଚି, ଭଣ୍ଡ କବି ଜିନ୍ଦାବାଦ୍ ।/ମୁର୍ଦ୍ଦାବାଦ ଜିନ୍ଦାବାଦ୍ ଜିନ୍ଦାବାଦ୍ ମୁର୍ଦ୍ଦାବାଦ/ବାଦ ବ୍ୟାନାରେ କବି, ବିବାଦ ଉପୁଜିଲେ/ ହସିବ ଶଂଖମଲମଲ ତାଙ୍କ/ନିରୁତ୍ତରର ଭ୍ରୂଭଙ୍ଗୀରେ ଚୁପ୍ ହୋଇଯିବ/ପବନ, ବେହେଡ଼ା ସ୍ୱଭାବର କୌତୁକ ।" (ଏକାକାର —'ଖସିବାର ବେଳ') ଇତିହାସହିଁ କାଳର ମୂକ ସାକ୍ଷୀ । ଆଜି ଯାହା ଅସାର ବୋଲି ପ୍ରତିପାଦିତ ହୁଏ, କାଲି ହୁଏତ ତାହାକୁ ମୂଲ୍ୟବାନ୍ ବୋଲି ଗ୍ରହଣ କରିବାରେ ଦ୍ୱିଧା ରଖେ ନାହିଁ । ଇତିହାସରେ ଏହାର ଦୃଷ୍ଟାନ୍ତ ଅପ୍ରତୁଳ ନୁହେଁ ।

କବିର ବାସ୍ତବତା କେବେ ସ୍ଥୂଳ ଅନୁଭବରୁ କବିତା ଭିତରକୁ ପ୍ରବେଶ ଯାଏ ନାହିଁ । କବିର ଚେତନା ଏକ ଆଶ୍ଚର୍ଯ୍ୟ ଯାଦୁକରୀ ଶକ୍ତି, ଯାହାଦ୍ୱାରା ବହୁ ବିଖଣ୍ଡିତ କାଳ ଓ ଘଟଣା ସେଗୁଡ଼ିକର ଅମିଳତା ଭୁଲି ଏକ ହୋଇଯାଏ । ହସ କାନ୍ଦର ମଣିଷ ଭିତରେ ଯେଉଁ ପରିବର୍ତ୍ତନ ଘଟି ଚାଲେ କବି ତାହାକୁ ଆବିଷ୍କାର କରେ ନିଜ ଭିତରେ । ତେଣୁ ତାହା ସ୍ମୃତି ବା ଗତାନୁଗତିକ ଜୀବନ ଧାରାରୁ ଅନୁଭୂତିର ତୀବ୍ରତା ବ୍ୟକ୍ତିଜୀବନ ବା କବି ଜୀବନକୁ ସଂଯମିତ ହୁଏ । କବି କମଳାକାନ୍ତଙ୍କ ଅଧିକାଂଶ କବିତା ଏହି ବିଶ୍ୱସ୍ତ ଭାବର ନିରୁପଦ୍ରବ ଅଭିବ୍ୟକ୍ତି । ଯେଉଁଠି, ଯେଉଁପରି ସେ ଜୀବନକୁ ଭେଟିଛନ୍ତି, ଜୀବନଠୁଁ ଯେପରି ଶିଖିଛନ୍ତି, ତାହାହିଁ ତାଙ୍କ କବିତାରେ ଫୁଟି ଉଠିଛି । ଜୀବନରେ ଜୟ ଆସିଛି, ପରାଜୟ ଆସିଛି; ହସ ଆସିଛି, କାନ୍ଦ ଆସିଛି—ସେ ସବୁର ସନ୍ନିବେଶ ଘଟିଛି କମଳାକାନ୍ତଙ୍କ କବିତାରେ । "ଯେଉଁଠି ଥାଅ, କବି" ଶୀର୍ଷକ କବିତା ଏହାର ସାକ୍ଷ୍ୟ ଦିଏ ।

"ଯେଉଁଠି ଥାଅ : କବି ! / କ୍ଷେତରେ ବା ଖାତରେ/ ସହରରେ ବା ସଲପରେ/ ଆସନରେ ବା ଶାସନରେ/ ଭୋଗରେ ବା ଯୋଗରେ/ ହାଡ଼ରେ ବା ଦାଢ଼ରେ / ହରକାଠରେ ବା ହରଲୁଟ୍‌ରେ/ ସିଂହଦ୍ୱାରେ ବା ସ୍ୱର୍ଗଦ୍ୱାରେ/

ଅବାଲନ୍ତରେ, ବା ଯେଉଁଠି ଥାଅ : ଅସ୍ଥିବରେ, ଷ୍ଟୁଡିଓରେ/ ଲଭରେ, ଶୋଭାରେ, ଭିକ ମୁଦ୍ରାରେ —/ ତୁମେ କବି ।" (ଉନ୍ମୋଚନ) । ଏପରି ଅନୁଭୂତି ଭିତର ଦେଇ ଆସିଥିବା କବିଟି ନିଜ ବିପକ୍ଷରେହିଁ ଠିଆ ହୋଇଯାଏ । ଆପଣା ସ୍ୱାର୍ଥ ତା ଦୃଷ୍ଟିରେ ଘୃଣ୍ୟ ହୋଇ ଉଠେ । ସେଥିରୁ ନିସ୍ତାର ପାଇବା ପାଇଁ କହି ପକାଏ—"ଯେତେ ପାଇଚ/ ତାଠୁଁ ଅଧିକ ଯେତେ ପାରି ଦେଇ ଯାଅ : ଯେମିତି ଜଣେ ହେଲେ/ କହିବ ନାହିଁ—ଦାୟଗ୍ରସ୍ତ/ କୃତଘ୍ନ !" (ସଂସାର—'ଉନ୍ମୋଚନ') । ରବୀନ୍ଦ୍ରନାଥ ତ କହିଥିଲେ—"ନିଃଶେଷେ ପ୍ରାଣ୍ ଯେ କରିବେ ଦାନ୍ କ୍ଷୟ୍ ନାହିଁ ତାର କ୍ଷୟ ନାହିଁ ।" କବି ଶ୍ରୀ ଲେଙ୍କା ଉଭୟପୁରୁଷଙ୍କ ଦୃଷ୍ଟିରେ କୃତଘ୍ନ ବେଶରେ ଠିଆ ହେବାକୁ ସମ୍ପୂର୍ଣ୍ଣ ଅନିଚ୍ଛୁକ; ତେଣୁ ଜୀବନ ପାଇଁ ଜୀବନକୁ ଦାନ କରିବା ତାଙ୍କ ଦୃଷ୍ଟିରେ ଏକ ପରମ କର୍ତ୍ତବ୍ୟ । ଏଥିପାଇଁ ଦୁଃଖକୁ ଯଥାସାଧ୍ୟ ସହିବାକୁ ସେ ତିଆରି । କାରଣ ଦୁଃଖରେ ଥାଏ ଜୀବନ ପ୍ରତି ବିଶ୍ୱସ୍ତତା । 'କୁକୁର' ପରି ଯେ ଜୀବନ ପ୍ରତି ଅତି ବିଶ୍ୱସ୍ତ । ଦୁଃଖରୁ ରସ ନିଗାଡ଼ି ବାହାର କରିବା ହିଁ ଶ୍ରୀ ଲେଙ୍କାଙ୍କ ଦୃଷ୍ଟିରେ ଜୀବନ (ଉପହାର—'ଉନ୍ମୋଚନ') । ଦୁଃଖର ଦର୍‌ବଳସ୍ତରୁ ଦୂରେଇ ଯାଇ ସୁଖର ଗଜଦନ୍ତୀ ମିନାରରେ ଅବସ୍ଥାନ କରିବାକୁ କବି ଚାହିଁ ନାହାନ୍ତି । କବିତା ନଲେଖିବା ପାଇଁ, ପ୍ରେମ ନ କରିବା ପାଇଁ, ମଦ ନ ପିଇବା ପାଇଁ ଶହେବାର ଶପଥ କଲେ ବି ତାହା କବି ଦୃଷ୍ଟିରେ ଗୋଟାଏ ଅବାନ୍ତର ସତ୍ୟବଦ୍ଧତା । ତେଣୁ ବଞ୍ଚିବା ପାଇଁ, ସମାଜର ଆବଶ୍ୟକତା ପାଇଁ କବି ସଙ୍କଳ୍ପଚ୍ୟୁତ ହେବାକୁ ବାଧ୍ୟ ହୁଏ । ଗୋଟାଏ ବାସ୍ତବତାର ବେକ ମୋଡ଼ି ନିଃଶେଷ କରି ଦେବାକୁ ଚେଷ୍ଟା କଲେ, ବାସ୍ତବତାର ସେଇଠି ପୂର୍ଣ୍ଣଚ୍ଛେଦ ପଡ଼େ ନାହିଁ । ବରଂ ତାହା ବହୁବର୍ଣ୍ଣୀ ହୋଇ ଆତ୍ମପ୍ରକାଶ କରେ ।

କବିଚେତନା ସବୁବେଳେ ନୂତନତ୍ୱର ସନ୍ଧାନୀ । ଆଧୁନିକ କବିତା ତେଣୁ ପାଠକର ଚେତନାକୁ ଆହ୍ୱାନ କରୁଛି ମଣିଷର ଅନ୍ତଃସ୍ଥଳକୁ । ଆଜିର କବିତା କେବଳ ଘଟଣାର ଅନୁରୂପ ସମାବେଶ ନୁହେଁ । ଘଟଣା ତ ପ୍ରତିମୁହୂର୍ତ୍ତରେ ଘଟୁଛି । କିନ୍ତୁ ସେଇ ଘଟଣାକୁ ନେଇ କବି ମନରେ ଯେଉଁ ପାରସ୍ପରିକ, ବିରୋଧୀ ପ୍ରତିକ୍ରିୟା ସୃଷ୍ଟି ହେଉଛି, ତାହାହିଁ ଗୁରୁତ୍ୱପୂର୍ଣ୍ଣ । କବି ଲକ୍ଷ୍ୟ କରିଛନ୍ତି—ଜୀବନ ଆୟତ୍ତରେ, ଶୃଙ୍ଖଳାରେ ଥିବା ପର୍ଯ୍ୟନ୍ତ 'ତାଲବନ୍ଦ କୋଠରୀ'ଟିଏ ମାତ୍ର । କିନ୍ତୁ ଅନାୟତ୍ତ, ବିଶୃଙ୍ଖଳ ହେଲେ ଜୀବନରେ ଆସେ ନୂଆ ଅନୁଭୂତି, ନୂଆ ଉତ୍କ୍ଷେପ । ମଣିଷର ଏଇ ଅଭୀପ୍ସା କବିର ନୈସର୍ଗିକ ସ୍ଥିତି । ସୃଷ୍ଟି ଛଡ଼ା ମଣିଷହିଁ ସୃଷ୍ଟିର ରହସ୍ୟ ଉନ୍ମୋଚନ କରେ । ଜୀବନର ଅସଂଲଗ୍ନତାହିଁ କବି ଦୃଷ୍ଟିରେ ଅର୍ଥପୂର୍ଣ୍ଣ । କବି ଶ୍ରୀ ଲେଙ୍କା ଏଇ ଅସଂଲଗ୍ନତା ଭିତରେ ଦେଖିଛନ୍ତି ଜୀବନର ଭଗ୍ନ ରୂପ ! ରୋଗଶଯ୍ୟାରେ ଶୋଇଥିବାବେଳେ ଉଦ୍‌ଭ୍ରାନ୍ତ ଖାତିରରେ ଅନେକ ବନ୍ଧୁ

ସୌଜନ୍ୟମୂଳକ ସାକ୍ଷାତ କରିବାକୁ ଆସନ୍ତି; ମିଠା ଓ ମିଥ୍ୟା କଥା କହି ଉଭାନ୍ ହୋଇ ଯାଆନ୍ତି । ଯନ୍ତ୍ରଣାକାତର ରୁଗ୍ଣ ଦେହଟିକୁ କେହି ଆଉସି ଦିଅନ୍ତି ନାହିଁ । ସବୁ କିଛି ଖାଁ ଖାଁ ଲାଗେ । ଘନିଷ୍ଠତା ଭୁଆଡ଼େ ହଜିଯାଏ । ଅଥଚ ବିତୃଷ୍ଣ ନର୍ସଟି ଦେବୀ ପ୍ରତିମା ଭଳି ଆସେ, ଆନ୍ତରିକତାପୂର୍ଣ୍ଣ ସାମାନ୍ୟ ସ୍ୱରରେ 'ଭଲ ଲାଗୁଛି କି ?' ବୋଲି ପଚାରେ । କବିଙ୍କ ପ୍ରାଣରେ ଆସେ ଆରାମ, ଆତ୍ମାରେ ଶାନ୍ତି, ହୃଦୟରେ ଆନନ୍ଦ । କିନ୍ତୁ ତାହା କ୍ଷଣିକ ପାଇଁ । କବି ଭଲ ଭାବେ ଜାଣନ୍ତି— ବୁଦ୍ଧିଜୀବୀ ନର୍ସ ବେଶି କ୍ଷଣ ତାଙ୍କୁ ଆହ୍ଲାଦିତ କରି ରଖି ପାରିବ ନାହିଁ ।—"ତା' ସୁନା ଖଡ଼ିକା ଭଳି ରେଖାଏ ହାତକୁ/ଧରି ପକାଇ କହେ ସିସ୍ଟର୍,—'ସମୟ ହୋଇଗଲା' । (ଶେଷ ଇଚ୍ଛା— ଉନ୍ମୋଚନ) । କବି ଅନୁଭବ କରୁଛନ୍ତି, କାହାରିକୁ ନିଜର ବୋଲି କହି ହେଉନି । କାହା ପ୍ରତି ଆତ୍ମବିଶ୍ୱାସ ଆସୁ ନାହିଁ । ଗୋଟାଏ ଫାଙ୍କା, ଶୂନ୍ୟ ଭାବ ସବୁଆଡ଼େ ଯେପରି ଘେରି ରହିଛି । ପ୍ରଚଣ୍ଡ ମାନସିକ ଯୁଗ ଯନ୍ତ୍ରଣା କବିଙ୍କର ପ୍ରତ୍ୟୟଶୀଳ ଜୀବନକୁ ମୂକ କରି ଦେଇଛି । ବର୍ତ୍ତମାନର ଦୁଃଖ ଭିତରେ ଏବର ବିସ୍ମରଣଶୀଳ ମଣିଷ ଭଳି ସେ ଏକୁଟିଆ, ଦିଗ୍‌ଭ୍ରାନ୍ତ ଭାବେ ଡାକୁଛି । କବି ବୁଝନ୍ତି— ସତେ ଯେମିତି ମଣିଷର ଦୁଃଖ ପାଇଁ କୌଣସି ସନ୍ତୋଷଜନକ ଆଶ୍ୱାସନା ସୃଷ୍ଟି ହୋଇ ନାହିଁ । ତେଣୁ ଅନ୍ଧାର ସାଥିରେ ସେ ମିତ ବସନ୍ତି । ମା'ର ଆଦେଶରେ ଯୋଗୀ ବେଶ ହୁଅନ୍ତି । "ଆ' । ମୁଁ ସଜେଇ ଦଉଚି ଥାଳ ।/ ଲମ୍ବାଇ ଦଉଚି ମୋ ରକ୍ତପିଆ ଟୁନ୍‌ଟୁନ୍ ଖେଦର ମଲ୍ଲୀମାଳ ।/ ସଫାସୁତର କରି ବିଛେଇ ଦଉଚି/ପରସ୍ତ ପରସ୍ତ କଣ୍ଠାର ଚଦର ।/ ହାତ ଛନ୍ଦିଲେ ଗୀତରେ/ଚେତା ବୁଡ଼ିଯାଏ ଗୋବିନ୍ଦଚନ୍ଦ୍ରର ।" (ଯୋଗୀରେ ଯୋଗୀ— ଦୁଃଖ ସହି କଆବାର୍ତ୍ତା) । ଅନେକଶତ ରାଣୀ ପରିବେଷ୍ଟିତ ଗୋବିନ୍ଦଚନ୍ଦ୍ର ଜୀବନ ଓ ଯୌବନକୁ ଢାଳି ଢାଳି ଉପଭୋଗ କରି ଚାଲିଥିବାବେଳେ ନିଷ୍ଠୁର ଅଥଚ ଅଲଙ୍ଘନୀୟ ମାତୃ ଆଦେଶ ମିଳିଲା ଯେ ତାଙ୍କୁ ଯୋଗୀଟିଏ ହେବାକୁ ପଡ଼ିବ । ଚିରଯୁଗରେ ଅମର ହେବା ପାଇଁ ଏହା ଏକାନ୍ତ ଜରୁରୀ; କିନ୍ତୁ ଯୋଗୀର ପଥତ ଋଜୁ ନୁହେଁ । ଅମରାବତୀର ସ୍ୱପ୍ନ ଭିତରେ ବି ଥାଏ ଯନ୍ତ୍ରଣାର କଠୋର ଆଶ୍ଳେଷ । ଭୋଗୀ ଜୀବନ ଛାଡ଼ିବାକୁ ଦୋ ଦୋ ପାଞ୍ଚ ମଣିଷଟି କେତେଦୂର ସଫଳ ଯୋଗୀଟିଏ ହୋଇ ପାରିବ, ଏଇ ଆଶଙ୍କାରେ ବ୍ୟତିବ୍ୟସ୍ତ ହେବା ସ୍ୱାଭାବିକ । ଶ୍ରୀ ଲେଙ୍କାଙ୍କ କାବ୍ୟପୁରୁଷ ଯେଉଁପରି ଭୋଗୀ ଓ ଯୋଗୀ ହେବାର ଦ୍ୱନ୍ଦ୍ୱର ମୁହାଁମୁହିଁ ହୋଇଛନ୍ତି । କବିଙ୍କର ଏଇ କାବ୍ୟ ଦର୍ଶନ ସମ୍ପର୍କରେ ଡକ୍ଟର ପ୍ରସନ୍ନ କୁମାର ମିଶ୍ରଙ୍କ ମତାମତ ଗୁରୁତ୍ୱପୂର୍ଣ୍ଣ ମନେ ହୁଏ । ତାଙ୍କ ଭାଷାରେ—"ତାଙ୍କର (କମଳାକାନ୍ତଙ୍କ) ସ୍ୱରରେ ଓ ସ୍ଫୁରଣରେ କୌଣସି ନିର୍ଦ୍ଦିଷ୍ଟ କାବ୍ୟ ଦର୍ଶନ ବା ସମାଜ ଦର୍ଶନର ସୂତ୍ର ଖୋଜିଲେ ମିଳେ ନା;

କିନ୍ତୁ ଜୀବନ ପାଇଁ ଗୋଟିଏ ଦର୍ଶନର ଅନୁସନ୍ଧାନରେ ସେ ଯେ ସଚେତନ ଓ ଧୀମନ୍ତ—ଏହା ସ୍ପଷ୍ଟ ବୁଝି ହୁଏ ।" (୯) ।

କବି ଦୃଷ୍ଟିରେ ଜୀବନ ବଡ଼ ବିଚିତ୍ର ଓ ବ୍ୟାପକ । ଏହାର ନିର୍ଦ୍ଦିଷ୍ଟ ସୀମା ପରିଚ୍ଛେଦ ନିରୂପଣ କଷ୍ଟସାଧ୍ୟ ବ୍ୟାପାର । ତେବେ ଶ୍ରୀ ଲେଙ୍କା ନିଜର ସୀମିତ ପରିସର ଭିତରେ ଜୀବନକୁ ଖୋଜିଛନ୍ତି; ଖୋଜିଛନ୍ତି ପ୍ରେମ ଭିତରେ, ମୃତ୍ୟୁ ଭିତରେ, ରୂପ ଭିତରେ ଓ ରୂପାନ୍ତରରେ । ପରବର୍ତ୍ତୀ ଅଧ୍ୟାୟରେ ଏସବୁ ବିଷୟ ଉପରେ ଆଲୋକପାତ କରାଯିବ । ତେବେ ଶ୍ରୀ ଲେଙ୍କା ଯେଉଁଭଳି ଜୀବନକୁ ଦେଖିଛନ୍ତି, ପାଠକର ସାଧାରଣ ଦୃଷ୍ଟିରେ ତାହାର ସ୍ୱରୂପ ତିନି ଭାଗରେ ବିଭକ୍ତ—(୧) ଜୀବନ ଜିଜ୍ଞାସା, (୨) ଜୀବନବୋଧ (୩) ଜୀବନାଙ୍ଗୀକାର । (୧୦) । ଏ ତିନୋଟି ବିଭାଗ ମଧ୍ୟରେ ପାରସ୍ପରିକ ସମ୍ପର୍କ ରହିଛି ନିଶ୍ଚୟ । ତଥାପି ଜୀବନାଙ୍ଗୀକାର ପର୍ଯ୍ୟାୟରେ କବି ପହଞ୍ଚିଲାବେଳେ ସେ ନିଜ କବିତାର ଆବେଦନ ବିଷୟରେ ସ୍ପଷ୍ଟ ଧାରଣା ଦେବାକୁ ଉନ୍ମୁଖ । 'ନିତ୍ୟନୈମିତ୍ତି'ର ଆଠ ନମ୍ବର କବିତାକୁ ଦେଖାଯାଉ—"ମେଣ୍ଢାମୁଣ୍ଡିଆ କବିର/ କି ଜିଦ୍ ! ମେଣ୍ଢାଡ ମେଣ୍ଢା/ ପତିତ ଇଚ୍ଛାଟି ବି ବାନ୍ଧ ଗୁଣ୍ଡ ଦବ/ ସେ ଜିଦ୍‌କୁ । ଘାଣ୍ଟି ଚକଟି ହବାର/ ନିର୍ଦ୍ଦୋଷ ସତର ନର୍କ କୁଣ୍ଡକୁ/ ଯେ କବି ପତିତପାବନର ବାନାକୁ/ ସଞ୍ଜୀବିତ କରି ଦବ ସହସ୍ର ଯୋନିରେ/ ଓ ସେଥିରେ ରମି ଗ୍ରମୀଙ୍କୁ କହିବ/ ଦେଖ୍, କବି ସ୍ୱୟଂଭୂ ନୁହଁ/ ରକ୍ତ ମାଂସର ଜାନୁଆର ।" (ପୃ-୪) ରକ୍ତ ମାଂସର କବିଟି ଯେଉଁ ସବୁ ପରିସ୍ଥିତି ଭିତର ଦେଇ ଗତି କରେ, ତାହାର ପ୍ରତିଫଳନ ଘଟେ କବିତାରେ । କବିର ବ୍ୟକ୍ତିତ୍ୱ କବିତାକୁ ତେଣୁ ନିଶ୍ଚୟ ପ୍ରଭାବିତ କରିବ, ଏଥିରେ ସନ୍ଦେହ ନାହିଁ । ପାଠକ ଜଣେ କବିର କବିତାଟିଏ ପଢ଼ିଲାବେଳେ କବିର ସୂକ୍ଷ୍ମ ମୂର୍ତ୍ତିଟିଏ ପାଠକ ନିକଟରେ ତା'ର ଅଜ୍ଞାତସାରରେ ଠିଆ ହୋଇଥାଏ । କିନ୍ତୁ ଏହା କବିତା ବିଚାରର ଏକମାତ୍ର ମାନଦଣ୍ଡ ବା ଦୃଷ୍ଟିଭଙ୍ଗୀ ନୁହେଁ । ସମସାମୟିକ ପରିବେଶ ଓ ପରିସ୍ଥିତି କବିତା ଭିତରକୁ ଆସିବାକୁ ବାଧ୍ୟ । ଶ୍ରୀ ଲେଙ୍କାଙ୍କ 'ନିଜ ସପକ୍ଷରେ' କବିତାଟି ଏହି ଦୃଷ୍ଟିରୁ ବିଚାର କରାଯାଇପାରେ । "ମୁଁ ଏକାନ୍ତ ଭଲପାଏ ଆପଣାର/ ନୂତନ ପୃଥିବୀକୁ ଆପଣାର/ ପ୍ରବୃତ୍ତି ଓ ସ୍ଖଳନର ରମ୍ୟ କୋଣାର୍କକୁ/ ଭଲପାଏ ଭଙ୍ଗା ଖେଳନାକୁ/ ଭଲପାଏ ଦୁଃଖ ମଣିଷକୁ/ ଭଲପାଏ, ବର୍ଷବାର ନୂଆ ନୂଆ ଶସ୍ୟକ୍ଷେତ୍ର/ ସ୍ପନ୍ଦିତ

---

୯ । ମିଶ୍ର, ପ୍ରସନ୍ନକୁମାର 'ସ୍ମରଣ କି ସ୍ମରଣ' ସମୀକ୍ଷା 'ଝଙ୍କାର'—୨୭ଶ ବର୍ଷ, ୪ର୍ଥ ସଂଖ୍ୟା ।

୧୦ । ମିଶ୍ର, ତ୍ରିଲୋଚନ—'ସ୍ରୋତର ନାମ ରିତ'ର ମୁଖବନ୍ଧ "ମୋ ଦୃଷ୍ଟିରେ ସ୍ରୋତର ନାମ", ପୃ. ୬ ।

ଇଚ୍ଛାକୁ" (ସ୍ରୋତର ନାମ ସ୍ମୃତି) । କବି ଯେଉଁ ପରିବେଶ ଭିତରେ ରହୁଛନ୍ତି, ତାହା ତାଙ୍କୁ ହୁଏତ ସମ୍ପର୍କବିହୀନ ମରୁଭୂମି ଭଳି ମନେ ହୋଇଛି । ଜୀବନ ତାଙ୍କର ଜୀବନ୍ତ ମରଣ ତୁଲ୍ୟ—"ଜନ୍ମାନ୍ତରା ନିଆଁର ଦୁଃଖ, ଭସ୍ମୀଭୂତ ହୃଦୟର ପାହାନ୍ତ (ସ୍ରୋତର ନାମ ରୀତି) । ତଥାପି ସୃଷ୍ଟିଧର୍ମୀର ଦୁଃସାହସିକ ଅଭିମାନ ସ୍ପଷ୍ଟ । କବି ସଚେତନ ଯେ ଲଢ଼ିବା ଦ୍ୱାରା ବଞ୍ଚିବାର ଇଚ୍ଛା ଦୁର୍ବାର ହୁଏ । ପରାଜୟ ଆସୁ, ଭୟ ନାହିଁ । କାରଣ ତାଙ୍କର କବି ସତ୍ତା ଜାଣେ ଯେ 'ମୋ କବିତା ଦୁଃଖ ସୁଖ/ ପ୍ରୀତିମୟ ମୁହୂର୍ତ୍ତର କଲ୍ୟାଣୀର କ୍ଷୀର ।" ( ନିଜ ସପକ୍ଷରେ—'ସ୍ରୋତର ନାମ ରୀତି" ) ଜୀବନର ଅନୁକୂଳ ବା ପ୍ରତିକୂଳ ଅନୁଭୂତିକୁ ଗ୍ରହଣ କରି ନେବାର ତିକ୍ତ ମଧୁର ପ୍ରତିଶ୍ରୁତି ହିଁ ତାଙ୍କର କାବ୍ୟିକ ସତ୍ତା ।

ଷାଠିଏ ଦଶନ୍ଧି ଧରି ଓଡ଼ିଆ କବିତାରେ ଯେଉଁ ନିରୀକ୍ଷା ହୋଇଯାଇଛି, ତା'ର ଉଦ୍ଦେଶ୍ୟ ହେଲା କବିତାକୁ ଆଧୁନିକ ଜୀବନବୋଧର ଅଙ୍ଗୀଭୂତ କରି ଆଧୁନିକ କାବ୍ୟଧାରାରେ ପ୍ରକାଶ କରିବା । ଜୀବନର ପ୍ରଶସ୍ତ ରାଜପଥରେ ଚାଲୁଥିବା ମଣିଷ ଲହୁଲୁହାଣ ହେଲାବେଳେ ଆପଣାର ପରିଚିତଙ୍କଠାରୁ ବେଦନା ବିଧୁର କଥାଟିଏ ଶୁଣିଲେ କ'ଣ ଉତ୍କର୍ଣ୍ଣ ହୋଇ ଶୁଣେ ନାହିଁ ସେ କଥା ? କିନ୍ତୁ ନିଜର ସମସ୍ୟା ବିଷୟରେ ଗଭୀର ଅଭିନିବେଶ ନ ଥିଲେ ସମ୍ବେଦନା ହୁଏତ ଅନ୍ତର୍ମୁଖୀ ହୋଇ ପାରେ ନାହିଁ । ସାମାଜିକ, ରାଜନୀତିକ, ଆର୍ଥନୀତିକ, ଗାର୍ହସ୍ଥ୍ୟ—ଏସବୁ ଭିତରେ ବନ୍ଧା ହୋଇଥିବା ମଣିଷ ପ୍ରତି ମୁହୂର୍ତ୍ତରେ କ'ଣ ସମ୍ମୁଖୀନ ନ ହେଉଛି ? ଆତ୍ମପକ୍ଷ ସମର୍ଥନ ପାଇଁ ପ୍ରଚଳିତ ମୂଲ୍ୟବୋଧର ବିରୋଧ କରିବାଦ୍ୱାରା ମଧ୍ୟ ସେ ଏକ ଯନ୍ତ୍ରଣାକୁ ସାମ୍ନା କରୁଛି; ଯାହାକୁ ହୁଏତ ସେ ଉପଲବ୍ଧି ସ୍ତରରେ ରଖି ଦେଇଛି । କବି ଶ୍ରୀ ଲେଙ୍କାଙ୍କ କବିତା ଏହି ଅନ୍ତସ୍ରାଣ ଅନୁଭୂତିର ପ୍ରତିଚ୍ଛାୟା ମାତ୍ର । ଆଜିର କବିମାନେ ଏ ସମସ୍ୟାକୁ ନିଜ ଦୃଷ୍ଟିକୋଣରୁ ଭିନ୍ନ ଭିନ୍ନ ଭାବରେ ଉପସ୍ଥାପନ କରୁଛନ୍ତି । ଆମେ କହି ପାରୁ ନ ଥିବା କଥାଟିକୁ ଯେତେବେଳେ କବିତାରେ ଶୁଣୁ, ସେତେବେଳେ ଆମେ ଅସହିଷ୍ଣୁ ହୋଇ ଉଠିବା ସ୍ୱାଭାବିକ । କାରଣ ଆମର ମନ ସେ ଚେତନାକୁ ଧରି ରଖିବା ପାଇଁ ପୂର୍ବରୁ ପ୍ରସ୍ତୁତ ହୋଇ ନ ଥାଏ । କବି କିନ୍ତୁ ନିଆଁ ସାଙ୍ଗରେ ଖେଳ ଖେଳିବାକୁ ତିଆର । ପଦ୍ମମଧୁର ଦର୍ଶନ ଅପେକ୍ଷା ଅଗ୍ନିବର୍ଷଣକୁ ସେ ଅନ୍ତରଙ୍ଗ ଭାବେ ଦେଖେ । କବିଙ୍କ ଭାଷାରେ—"ନିଆଁକୁ ଗେହ୍ଲା କରିବା ଆ'/ ରେ ସାଙ୍ଗ; ନେଇ ଚମକି ଯିବ ନାହିଁ ଅତର୍କରେ/ ବିମୂଢ଼ ସ୍ୱଚ୍ଛନ୍ଦତାରେ ।" (ନିତ୍ୟ ନିସ୍ମିତ—ପୃ. ୪୭) । କବିଙ୍କର ସରାପର ସ୍ୱାଦ ଏହି ସଙ୍କଟମୁଖୀ ଅନୁଭବକୁ ନିବିଡ଼ ବନ୍ଧନରେ ବାନ୍ଧିବା ପାଇଁ ଉପଯୋଗୀ ମନେ ହୋଇଛି । ତେଣୁ ଶ୍ରୀ ଲେଙ୍କାଙ୍କ ସତୀର୍ଥ କବି ରାଜେନ୍ଦ୍ର କିଶୋର ପଣ୍ଡା କୋଟାଏ

ତାଗାରେ କହି ଦେଇଛନ୍ତି—"କମଳାକାନ୍ତଙ୍କ ସରାପ ଗନ୍ଧ କସ୍ତୁରୀ ପରି ମନ୍ଦ ମନ୍ଦ ବାସେ ।" (୧୧) କବି ସବୁ ମନ୍ଦିର 'ମନ୍ଦର ପର୍ବତ' (୧୨) ହୁଅନ୍ତି । ସେଥିରେ ପାଠକର କିଛି କ୍ଷତି ହାସିଲ ହେବ ନାହିଁ । ମଦ ପିଇ ପିଇ ସେ ଯଦି ମନ୍ଦାକିନୀର ସନ୍ଧାନ ଦେଇ ପାରନ୍ତି, ତେବେ ତାହା ପାଠକର ଶ୍ରଦ୍ଧାଲାଭ କରିବାକୁ ସମର୍ଥ ହେବ । ମୋର ମନେ ହୁଏ, ଶ୍ରୀ ଲେଙ୍କା ଏ ଦୃଷ୍ଟିରୁ ବହୁମାତ୍ରାରେ ସଫଳତାର ହକ୍‌ଦାର । ଆଲୋଚକ ଶ୍ରୀ ବସନ୍ତ କୁମାର ପଣ୍ଡା ତାଙ୍କର ଏକ ସୁନ୍ଦର ବର୍ଣ୍ଣନା ଦେଇଛନ୍ତି ।" ସରାପ ପିଇବା ଓ ପୁଣି ସଚେତନ ଭାବେ ସରାପର ଅବଗୁଣତା ସ୍ମରଣ କରିବା, ଅନୁତାପର ନିଆଁରେ ଜଳି ଜଳି ପୁଣି ସରାପର ଅନ୍ତରଙ୍ଗତା ଲୋଡ଼ିବା ସତରେ କ'ଣ ଜୀବନର ସତ୍ୟତା ପ୍ରମାଣ କରେ ନାହିଁ ।" (୧୩) । କାରଣ କମଳାକାନ୍ତ ଜାଣନ୍ତି ଯେ ଗଙ୍ଗା, ଗୋଦାବରୀ, ବୈତରଣୀ ହିଁ ପାପର ପବିତ୍ର ନାମ ।—"ପାପର ଯଦି କିଛି ପବିତ୍ର ନାମ ଥାଏ/ତାହାପାଇଁ ତ ଗଙ୍ଗା, ଗୋଦାବରୀ ବା/ ବୈତରଣୀ !" (ନିତ୍ୟ ନୈମିତ୍ତିକ—୫୯ ।) ଏହି ଲକ୍ଷ୍ୟରୁହିଁ କମଳାକାନ୍ତଙ୍କ କବିତା ନିଜର ସତ୍ତାକୁ ଆବିଷ୍କାର କରି ଚାଲିଛି ।

କିନ୍ତୁ ବେଳେବେଳେ କବିର ଅନୁଭବ ସଂକ୍ରମଣଶୀଳ ନହେଲେ ପାଠକର ମସ୍ତିଷ୍କ ଭାରାକ୍ରାନ୍ତ ହୋଇଉଠେ । ପ୍ରାୟ ସବୁ ଆଧୁନିକ କବିଙ୍କ ଭଳି ଶ୍ରୀ ଲେଙ୍କାଙ୍କ କବିତା ଏହି ଦୋଷଦୁଷ୍ଟ । 'ଅବତରଣ'ରୁ ସେମିତି କେତୋଟି ଦୃଷ୍ଟାନ୍ତ ଗ୍ରହଣ କରାଯାଇପାରେ ।

(କ) "ତୁମମାନଙ୍କର ଅର୍ଜିତ ଓ ଦୁର୍ଦ୍ଦମ ସଂଘର୍ଷରେ ମୁଁ ଏକ ସ୍ଖଳିତ ଖିଆଲର ଶ୍ରୁତିମଧୁର ରୁକ୍ଷତା ।"

(ଖ) "ବର୍ତ୍ତମାନ ଅଙ୍କିତ ନିଷ୍ଫଳ ଓ ଦିଗନ୍ତର ବିବୃତ ଆସ୍ପୃହାରେ ବାଦଶାହୀ ଟିଙ୍କୁର ଅବିଶ୍ରାନ୍ତ ଗତି ।"

(ଗ) "ତୁମମାନଙ୍କର ସଂଗଠିତ ଅସଂଗତ ଓ ସାଙ୍କେତିକତାରେ ସ୍ୱର୍ଣ୍ଣକେନ୍ଦ୍ରିକ ସତ୍ତାର ମୁଁ ଏକ ଦୁର୍ବିପାକର ଅନର୍ଗଳ ଆଶୀର୍ବାଦର ପ୍ରମାଣ ।"

---

୧୧ । ପଣ୍ଡା, ବ୍ରଜେନ୍ଦ୍ର କିଶୋର -'ନୌକାଠରେ ଚିରକାଳ' କବିତା ବହିର ପୃଷ୍ଠବନ୍ଧ ଦ୍ରଷ୍ଟବ୍ୟ ।

୧୨ । ସାହୁ, ନିରାକାର -କମଳାକାନ୍ତଙ୍କ ସହ ସାକ୍ଷାତକାର—'ନବଲିପି'— ଫେବୃୟାରୀ, ୧୯୮୨ ।

୧୩ । ପଣ୍ଡା, ବସନ୍ତକୁମାର—କମଳାକାନ୍ତଙ୍କ କାବ୍ୟଚେତନାର ଅନ୍ତଃସ୍ୱର'— 'ନବଲିପି—ମାର୍ଚ୍ଚ, ୧୯୮୨ ।

କବିତାର ଏଇ ଅଂଶଗୁଡ଼ିକ ଅତ୍ୟନ୍ତ କଷ୍ଟ କଳ୍ପିତ । ତେଣୁ କବିଙ୍କ ସାବଧାନ୍ ଏଠାରେ ଧରିବା ପାଇଁ ସାଧମତ କସରତ୍ କରିବାକୁ ପଡ଼େ । ସେହିପରି 'ସେ'ବନ୍ତିର ନାମ ରତ୍ନ'ର ଅଙ୍କିତବାସ, ଗୀତ ଗା'ନାରେ ପକ୍ଷୀ'ର 'ନିତ୍ୟ ବୃନ୍ଦାବନ' କବିତାରେ ଜୀବନର ବାଞ୍ଛା ଠିକ୍ ଭାବରେ ବୁଝିହୁଏ ନାହିଁ । ଅବଶ୍ୟ ଏପରି କବିତାର ସଂଖ୍ୟା କମ୍ । ଅନ୍ତତଃ । 'ଉତ୍ତରଣ' ପରେ କବି ନିଜକୁ ଏହି ଅଭିଯୋଗରୁ ମୁକ୍ତ କରିବାକୁ ସଫଳ ଉଦ୍ୟମ କରିଛନ୍ତି । ଦୃଶ୍ୟମାନ ଜଗତ ଭିତରେ ଲୁଚି ରହିଥିବା ଅମୂର୍ତ୍ତ ଭାବନାକୁ ରୂପ ଦେଲାବେଳେ କବିତାରେ ଯେଉଁ ଅସ୍ପଷ୍ଟତା ଦେଖାଦିଏ, ତାହାକୁ ଗ୍ରହଣ କରିବାରେ, ତା'ର ରସ ଆସ୍ୱାଦନ କରିବାରେ କୌଣସି ଅସୁବିଧା ହୁଏନି; କାରଣ ବ୍ୟଞ୍ଜନାହିଁ ସେଠାରେ କବିତାର ବୋଧଗମ୍ୟତା ପାଇଁ ବାଟ ପରିଷ୍କାର କରି ଦେଇଥାଏ ।

କେତେକ କବି ଓ ସମାଲୋଚକ ଦାବୀ କରନ୍ତି ଯେ ମଣିଷର ଜୀବନ ଯେପରି ବହୁଧା ବିଭକ୍ତ, ସେହିପରି ଜ୍ଞାନ ବିଜ୍ଞାନର ବି ବହୁ ପ୍ରଶସ୍ତ କ୍ଷେତ୍ର ରହିଛି; ନୂଆ ନୂଆ କଥା ମଧ୍ୟ ଆବିଷ୍କୃତ ହେଉଛି । ଏହି ପରିପ୍ରେକ୍ଷିତରେ କବି ପ୍ରାଣୀ ବିଜ୍ଞାନ, ଭୂ ବିଜ୍ଞାନ, ପଦାର୍ଥ ବିଜ୍ଞାନ, ମନୋବିଜ୍ଞାନ ପ୍ରଭୃତି ବିଷୟରେ ଜ୍ଞାନ ଅର୍ଜନ କରିବା ଦରକାର ଏବଂ ପାଠକ ସେ ସାହିତ୍ୟକୁ ଠିକ୍ ଭାବରେ ବୁଝିବା ପାଇଁ ଏ ସବୁ ବିଦ୍ୟା ଆୟତ୍ତ କରିବା ଆବଶ୍ୟକ । କିନ୍ତୁ ପାଠକ ସାହିତ୍ୟ ପଢ଼ିଲାବେଳେ ହୃଦୟକୁ ନେଇ ସାହିତ୍ୟ ସଙ୍ଗେ ଆତ୍ମୀୟତାର ବନ୍ଧନରେ ବାନ୍ଧି ଦେବ ନା ଜ୍ଞାନର ବିସ୍ତାରିତ ଦିଗନ୍ତରେ ନିଜକୁ ହଜାଇ ଦେବ ! ସାହିତ୍ୟର ରସଭୋକ୍ତା ନିକଟରେ ଏ ସବୁର ବା କ'ଣ ମୂଲ୍ୟ ଅଛି ? ତେଣୁ ଆଜିର କବିମାନେ ବିଶ୍ୱାସ କଲେଣି ଯେ ବହି ଗ୍ରନ୍ଥ ଚର୍ଚ୍ଚାରେ ଉନ୍ନତ କଳାତ୍ମକ ସୃଷ୍ଟି କରିବା ଏକାବେଳକେ ଅସମ୍ଭବ । ତେଣୁ ପୁସ୍ତକ ଅଧ୍ୟୟନ ଅପେକ୍ଷା ଜୀବନର ଅଧ୍ୟୟନ ରସୋତ୍ତୀର୍ଣ୍ଣ ସୃଷ୍ଟି ପାଇଁ ଏକାନ୍ତ ଆବଶ୍ୟକ । ଶ୍ରୀ ଲେଙ୍କାଙ୍କ କବିତାରେ ଆମେ ଏଇ ଜୀବନ ବହିର ଅନ୍ତରଙ୍ଗତା ପାଉ । ତେବେ ତାଙ୍କ କବିତାରେ ଗ୍ରନ୍ଥଜ୍ଞାନ ଯେ ସମ୍ପୂର୍ଣ୍ଣ ଅବହେଳିତ, ଏ କଥା କହି ହେବନାହିଁ । ବରଂ ଜୀବନର ସମସ୍ୟାବଳୀର ସ୍ୱରୂପ ଓ ଜଟିଳତାକୁ ତାଙ୍କର ସମସାମୟିକ ବା ସମକାଳୀନ ବିଦେଶୀ ସ୍ରଷ୍ଟାଙ୍କ ରଚନାରୁ ସେ ଗ୍ରହଣ କରିବାରେ କୁଣ୍ଠା ପ୍ରକାଶ କରି ନାହାନ୍ତି । ବୋଦ୍‌ଲେୟାର, ର୍ୟାମ୍ବୋ, ସାର୍ତ୍ରେ, ରିଲ୍‌କେ, ଇଲିଅଟ୍, ଫ୍ରଏଡ୍, କିଅରକେଗାର୍ଡ଼, ରବର୍ଟ ଲୋଏଲ୍ ପ୍ରଭୃତି ବିଦେଶୀ କବି ଓ ଦାର୍ଶନିକ ବଙ୍ଗଳାର ଜୀବନାନନ୍ଦ ଦାଶ, ବୁଦ୍ଧଦେବ ବସୁ, ପ୍ରେମେନ୍ଦ୍ର ମିତ୍ର, ବିଷ୍ଣୁ ଦେ ଓ ଓଡ଼ିଆର ସମକାଳୀନ କବିଙ୍କୁ ସେ ପଢ଼ିଛନ୍ତି; ଯେଉଁମାନଙ୍କ ସାହିତ୍ୟ କବି ଶ୍ରୀ ଲେଙ୍କାଙ୍କ ବିସ୍ତାରଶୀଳ ଦୃଷ୍ଟିଭଙ୍ଗୀ ଓ କାବ୍ୟସ୍ୱରକୁ ବିକଶିତ କରିବାରେ ସାହାଯ୍ୟ କରିଛି ।

ମୋଟାମୋଟି କମଳାକାନ୍ତଙ୍କ କବିତାରେ ଜୀବନ ହେଉଛି ଅପରସୀମ ତୃଷ୍ଣା-ବିତୃଷ୍ଣା, ଚରିତାର୍ଥତା ଓ ଅଚରିତାର୍ଥତା, ଅର୍ଥହୀନତା ଓ ଅର୍ଥପ୍ରଦତାର ସଫଳ ସମନ୍ୱୟ—ଜଣେ ସଂଗ୍ରାମୀ ଜୀବନଯାତ୍ରୀର ନିଜସ୍ୱ ସଙ୍ଗୀତ—ଯେଉଁ ସଙ୍ଗୀତ ମଣିଷପଣିଆ ସପକ୍ଷରେ ଯୁଦ୍ଧ ଘୋଷଣା କରେ ।



# ତୃତୀୟ ଅଧ୍ୟାୟ

## ନିଃସଙ୍ଗତାର ସ୍ୱରୂପ ଓ କମଳାକାନ୍ତଙ୍କ କବିତାରେ ତା'ର ସ୍ୱର

କମଳାକାନ୍ତଙ୍କ ଦୃଷ୍ଟିରେ ପୃଥିବୀ ନିର୍ଜନ ଦ୍ୱୀପଟିଏ । କୋଳାହଳମୟ ପୃଥିବୀର ଶବ୍ଦଠାରୁ ଏକ ନିଃଶବ୍ଦ ଦୂରତାରେ ତାଙ୍କର ଅବସ୍ଥିତି । ଏଇ ନିଃଶବ୍ଦତାର ଅନୁଭବ ତାଙ୍କର ଅଧିକାଂଶ କବିତାରେ ମୂର୍ତ୍ତି । ପରିଚିତ ପୃଥିବୀ ଭିତରେ ସେ ଏକାନ୍ତ, ପୁଣି ବାସ କରୁଥିବା ଜଗତ ଭିତରେ ସେ ନିର୍ବାସିତ । ପରମ୍ପରାର ପ୍ରତ୍ୟାଖ୍ୟାନ ଏଠାରେ ସ୍ପଷ୍ଟ । ମାତ୍ର ତା' ଭିତରେ ଶ୍ରୀ ଲେଙ୍କାଙ୍କ କାବ୍ୟସ୍ୱର ଏକାକୀ ମଣିଷର ଆତ୍ମୀୟତାରେ ପୂର୍ଣ୍ଣ । ନିଜ ବିରୁଦ୍ଧରେ ନିଜେ ସାକ୍ଷ୍ୟ ଦେଉଥିବା କବି ଏକ ଅସହାୟତାର କେନ୍ଦ୍ରବିନ୍ଦୁ । "କବି ଅଚିହ୍ନା ଭଳି ଘୂରୁଛି ଓ ଘୂରୁଛି / କବି ଅନ୍ଧ ଭଳି ଦଉଡ଼ୁଛି ଅନ୍ଧାରକୁ,/କବି ବଧ ହେବାର ଦିନ ଏବେ ଆଖିର ଯେ/ ବଧ୍ୟର ପଣ୍ଡା ମିଳୁ ନାହିଁ ଗୋଲକରେ,/ମୁଁ, ଓରଫ୍ କମଳାକାନ୍ତ ଏକଥା କହୁଛି /ପକ୍ଷୀଟିଏ କଦମ୍ବ ଡାଳର ଶୁଖିଲା ପତ୍ରରେ !" (ନିଜ ସହ ଗୋଟେ ସାକ୍ଷାତକାର ପୃ-୧୩) । କଦମ୍ବ ଡାଳର ପତ୍ର ଆଜି କବି ଦୃଷ୍ଟିରେ ଶୁଖିଲା । କଦମ୍ବ ପ୍ରୀତି ସ୍ନିଗ୍ଧ ଗଛଟିଏ । ଜୀବନକୁ ଉପଭୋଗ କରିବାର ପ୍ରେରଣାଟିଏ । ଦିନେ ହୁଏତ କଦମ୍ବ ବନରେ ବଂଶୀ ବାଜୁଥିଲା ଗୋପାଙ୍ଗନାଙ୍କ ମନରେ ପ୍ରାଣ ସ୍ପନ୍ଦନ ସୃଷ୍ଟି କରିବା ପାଇଁ । ମାତ୍ର ଆଜିର କବି ଦେଖୁଛି—ଜୀବନ କଦମ୍ବର ପତ୍ରେ ପତ୍ରେ ଶୁଷ୍କତା, ପ୍ରାଣହୀନତା । ଜୀବନ ତାର ଆଜି ଏକ ଊଷର ଭୂମି । ସେଥିରେ ଘାସଟିଏ କଅଁଳିବାର ବି ସମ୍ଭାବନା ନାହିଁ । ଏବର ଜୀବନକୁ ଆଧୁନିକ ସଭ୍ୟତାର ଏ ପ୍ରକାର ଅନୁର୍ବରତା ଯେମିତି ଏକ ଶ୍ରେଷ୍ଠ ଉପହାର !

ଏଇ ପରିସ୍ଥିତିରେ ଭସ୍ମାବସ୍ଥତାକୁ ଲକ୍ଷ୍ୟ କରୁଥିବା କବି ପ୍ରଚଳିତ ସମାଜ ଜୀବନକୁ କେବେ ଶ୍ରଦ୍ଧାଶୀଳ ଦୃଷ୍ଟିରେ ଅନେଇବା ସମ୍ଭବ ନୁହେଁ । ତେଣୁ କବିର କବିତା ଏବର ବିଧ୍ୱସ୍ତ ତଥା ବିପର୍ଯ୍ୟସ୍ତ ଜୀବନର ପ୍ରତିଲିପି ହେବାକୁ ବାଧ୍ୟ । 'କବିର ଫୁଲଟୁଙ୍ଗୁଡ଼ାରେ ଆଜି କବିର କଟା ମୁଣ୍ଡ' ତାଙ୍କ ବ୍ୟକ୍ତିସତ୍ତାର ବିପନ୍ନତା କଥା ସୂଚାଇ ଦିଏ । (୧) ବିରୂପ ବିଶ୍ୱରେ ଆଜିର କବି ଜୀବନର ନିଷ୍ଠୁରତମ

---

୧ । ଦାସ, ଦାଶରଥି—ଶୂନ୍ୟ ସଗୃଧ୍ର ଦୃଷ୍ଟି (ନିଜ ସହ ଗୋଟେ ସାକ୍ଷାତକାର—ମୁଖବନ୍ଧ,) ୧୯୭୮ ।

ସତ୍ୟକୁ ଉପଲବ୍ଧ କରିବାର ଯେଉଁ ଦୃଷ୍ଟାନ୍ତ ଦେଖାଇଛନ୍ତି, ତାହା ଓଡ଼ିଆ ସାହିତ୍ୟରେ ଅଭିନବ।। ମଣିଷ ଯାହା ସହିତ ଏକାତ୍ମ ଥାଏ, ତାହାଠାରୁ ବିଲୁପ୍ତ ଅବସ୍ଥାକୁ ହିଗେଲ 'ଏଲିଏନେସନ' ବୋଲି କହନ୍ତି । ନିଃସଙ୍ଗ ମଣିଷ ଆପଣାକୁ ସେମିତି ଅନୁଭବ କରେ । ରୋମାଣ୍ଟିକ୍ ମୋହରୁ ବିଚ୍ୟୁତ ହୋଇଥିବା କବି ନିକଟରେ ଜାଇ, ଯୁଇ, ଟଗର ଫୁଲର ଉଲ୍ଲାସ କୌଣସି ଭାବାବେଗ ସୃଷ୍ଟି କରି ପାରେ ନାହିଁ, କାରଣ କବି ଆଜି ସେଥିରୁ ବିଚ୍ଛିନ୍ନ । ପରିବେଶ, ପ୍ରକୃତି ସବୁ କିଛି କବିର ବିଚ୍ଛିନ୍ନ ଅବବୋଧର କର୍କଶତା । "ଏ ଥାନ ନାଲିଠାସନ୍ଧି ।/ଜାଇ ଯୁଇ ଟଗରର ପ୍ରୀତି/ସନ୍ଧ୍ୟା ପଶିଗଲେ/ମଉନରେ । ଗୃହଆଡ଼େ ଫିକା ଫିକା ଆଖି/ ରଙ୍ଗ ନାଆଁ ପରି ଜଳେ ବଣ ବୁଦା/ପେଟ ତଳେ କହିଁତ ପଡ଼ିଲ ଶୋଇ,/ଘାସ ଲଟା ଜଳିଯାଏ ।" (ଏ ଥାନ ନାଲିଠା ସନ୍ଧି—'କବିତାର ମୂର୍ଚ୍ଛା' । ) ଆଶା ବିଶ୍ୱାସହୀନ ଅସହାୟତାର ହାହାକାରରେ ବିଦୀର୍ଣ୍ଣ ହୋଇଯାଇଛି ସ୍ପନ୍ଦିତ ଆବେଗ ରାଶି । ଏହାକୁ କବିଙ୍କର ଜୀବନ ପ୍ରତି ଉତ୍କଟ ଅବିଶ୍ୱାସ କୁହାଯାଇପାରେ ; ଜୀବନରେ ହାତେ ମାପି ଗୃହକୋଣେ ଚାଲିବା ନୀତି ପ୍ରତି କବି ବେଶି ଅସନ୍ତୁଷ୍ଟ । କ୍ଷୁରଧାରରେ ଚାଲିବାକୁ ସେ ବେଶି ପସନ୍ଦ କରନ୍ତି ତେଣୁ 'ବୈଶାଖର ଝାଞ୍ଜି ପବନ" 'ବଳେଇ ଗୁହ,' 'ଭଣ ଭଣ ମୂଷାମାଟି,' 'ଜେନ୍ମଗର କଣ୍ଟକିତ ଗୁଳ' ପ୍ରତି ତାଙ୍କର ଆକର୍ଷଣ ଦୁର୍ନିବାର । ନିଜେ ନିଜ କଣ୍ଠରେ କାନ୍ଦିଲାବେଳେ ବା ହସିଲାବେଳେ କବି ଶ୍ରୀ ଲେଙ୍କା ଭେଟିଛନ୍ତି ଅନ୍ଧାରର ଉଜ୍ଜ୍ୱଳତାକୁ, ଦେଖିଛନ୍ତି ଅବାକ୍ ପୃଥିବୀକୁ । ଜୀବନ ପ୍ରତି ଏହା ତାଙ୍କର ପ୍ରତାରଣା ବୋଲି କେହି ଯଦି ଭୁଲ୍ ବୁଝନ୍ତି, ତେବେ କବି କହିବେ : "ମୁଁ କାନ୍ଦୁଚି, ହସୁଚି, ବକୁଚି ଯଥେଚ୍ଛା/ମୋ ସ୍ୱପ୍ନକୁ, ରତୁମତୀ ଅନ୍ଧାରର ଔଜ୍ଜ୍ୱଲ୍ୟକୁ/ ଓ ବିଲ୍ କୁଲ୍ ଜଣେ ବିସ୍ମରଣଶୀଳ ଫେରାର ଭଳି/ମୋ ଦୁଃଖରେ ମୁଁ ଅଛି । ମୋ ରାସ୍ତାରେ ମୁଁ ଚାଲିଚି,/ଖୋଜୁଚି ଲେଢ଼ୁଚି —ମୁକ୍ତ ପବନ, ଖୋଲା ଆକାଶ,/ ରୁକ୍ଷ ଆଲୁଅ ବା କାଦୁଅ ପଙ୍କର ମଧୁଗନ୍ଧ,/ପୃଥକ୍ ପୃଥିବୀ, ଚୋର କି ଯାଏ ? ମୁଣ୍ଡ ବଥାଏ ?" ('କି ଯାଏ : ବଞ୍ଚେ ଅବା ମରେ'—ଗୀତ ଗା' ନାରେ ପକ୍ଷୀ) ।

ମଣିଷର ଦୁଃଖ ଅବଭକ୍ତ । ନିଜେଇଁ ଦୁଃଖକୁ ଭୋଗ କରିବା ବ୍ୟତୀତ ଅନ୍ୟ କୌଣସି ପନ୍ଥା ନାହିଁ । ସବୁ କାଳରେ, ସବୁ ଦେଶରେ ଏଇ ସତ୍ୟ ପ୍ରମାଣିତ । ମାତ୍ର ପ୍ରତିଟି ମଣିଷର ଦୁଃଖ ସହିବାର ଏକ ସୀମା ଅଛି । ସୀମାତିରିକ୍ତ ହୋଇଗଲେ ଦୁଃଖ ମଣିଷର ସବୁ କିଛି ମୂଲ୍ୟବୋଧ, ବିଶ୍ୱାସ, ସ୍ଥୈର୍ଯ୍ୟକୁ ଓଲଟ ପାଲଟ କରିଦିଏ । ଦୁଃଖକୁ ଦୁଃସ୍ୱପ୍ନ ବୋଲି ଯେଉଁମାନେ ଭାବି ନିଅନ୍ତି, ସେମାନେ ହୁଏତ ଯନ୍ତ୍ରଣାରୁ ସାମୟିକ ଅବ୍ୟାହତି ପାଇଥାଆନ୍ତି । କିନ୍ତୁ ସବୁ ସମୟରେ

ଦୁଃଖକୁ, ଦୁଃସ୍ୱପ୍ନ କହିବା ଅସମ୍ଭବ । କାରଣ ବାସ୍ତବତାର ଆକର୍ଷଣ ବଡ଼ ଅମୋଘ । ତେଣୁ ବର୍ତ୍ତମାନର ବାସ୍ତବତାଠାରୁ ନିରାପଦ ଦୂରତ୍ୱରେ ରହିବା କଠିନ, ଅର୍ଥହୀନ ମଧ୍ୟ । କବି ଯେତେବେଳେ ତା'ର ନିଜସ୍ୱ ବେଦନାର ଅଠାକାଠିରେ ପଡ଼େ, ସେଥିରୁ ସେ ମୁକ୍ତିର ସ୍ୱପ୍ନ ଦେଖି ପାରେ ନା । ଯନ୍ତ୍ରଣାରେ ଛଟପଟ ହେଲେ ବି ଯନ୍ତ୍ରଣା ତା' ନିକଟରେ ସତ୍ୟ । ସେଇ ଅସହ୍ୟ ଯନ୍ତ୍ରଣାରୁ ଜନ୍ମ ନିଏ ନିଃସଙ୍ଗତା, ଯାହାକୁ ଅତିକ୍ରମି ଯିବା କଷ୍ଟ । ତେଣୁ କାବ୍ୟ ପୁରୁଷଟି ସେଥିରେ ଆହୁଟି ପାହୁଟି ହୋଇ ଅନେକ ସମୟରେ ନିସ୍ତୁପ ହୋଇଯାଏ—

"ଏଇଠାରେ ଚୁପ୍ ହୋଇ ବସିବାରେ କ୍ଷତି କ'ଣ ? ଅନ୍ତତଃ ନିଜକୁ ନିଜେ ପ୍ରବୋଧିବା ନିଃସଙ୍ଗତା ଦେଶରେ ଶୁଆଇ/ ଅନ୍ତତଃ ନିଜକୁ ନିଜେ ଆଶ୍ୱାସିବା ଚନ୍ଦ୍ରାକୁ ଲେଉଟାଇ/ ଆପଣାର ସଞ୍ଚିତ ପୁଣ୍ୟରେ ।" (କ୍ରମଶଃ ବର୍ଷା, ବିବିକ୍ତ ମନ, ଓ ଈଶ୍ୱର'—ସ୍ରୋତର ନାମ ରତ୍ତ) । ଅସ୍ତିତ୍ୱର ବୋଝକୁ ନେଇ ଶୂନ୍ୟତାର ଶଙ୍କାହୀନ ମଣିଷଟି ନିସ୍ତବ୍ଧତାର ମୁଖରେ କିଛି ସମୟ କଟାଇ ଦେବାକୁ ଉଚିତ ମନେ କରେ । ବର୍ଷଣ ମୁଖର ରାତ୍ରି ତାଙ୍କ ମନରେ ରୋମାଞ୍ଚ ଆଣିପାରେ ନା । ଜୀବନକୁ ପୁଷ୍ପିତ ଓ ଫଳବନ୍ତ କରିବାର ଲୋକପ୍ରିୟ ଋତୁ 'ବର୍ଷା' ତାଙ୍କର ସାଇତା ଦୁଃଖକୁ ଭୁଲେଇ ଦେବା ପରିବର୍ତ୍ତେ ବଢ଼େଇ ଦିଏ । କବି ଜୀବନର ବିରୋଧାଭ୍ୟାସ ଏଇଠି ସ୍ପଷ୍ଟ ହୋଇଯାଏ । ପ୍ରାଚୀନ ଓ ଆଧୁନିକ କବିର ପୃଥିବୀ ଏଠି ସାମ୍ନାସାମ୍ନି ହେବାକୁ ବାଧ୍ୟ । ବର୍ଷାମୁଖର ସନ୍ଧ୍ୟା ଜଳଭାରା ନତ ଉତ୍ସୁକ ରୂପ, ଆଷାଢ଼ ବାଦଲର ଘନକୃଷ୍ଣ ଉଚ୍ଛ୍ୱାସ ଭିତରେ କବି ଆତ୍ମସ୍ଥ ହେବା ଅସମ୍ଭବ ହୋଇ ପଡ଼େ । କାଳିଦାସଙ୍କ ଯକ୍ଷ ଧୂମ, ଜ୍ୟୋତି, ସଲିଳ, ମରୁତର ସମଷ୍ଟିରେ ଗଠିତ ମେଘକୁ ଦୂତ କରି ପ୍ରିୟାର ସମ୍ବାଦ ଆଣିବା ପାଇଁ ଦିନେ ହୁଏତ ବ୍ୟସ୍ତ ହୋଇ ପଠାଇଥିଲା । ଆଜିର କବି କିନ୍ତୁ ଏପରି ଚିନ୍ତାର ପକ୍ଷପାତୀ ନୁହନ୍ତି । ତାଙ୍କ କବିତାରେ କେବଳ 'ଲିବିଡୋ'ର ଚିତ୍କାର, ଯାହା ଏକାନ୍ତ ଯାନ୍ତ୍ରିକ ଓ ନିରୁତ୍ତାପ । କବି କହନ୍ତି—"ଏ ବର୍ଷା ନାଚୁଚି ଆଜି କାହିଁ ବନ୍ଧ ବିଳାସିନୀ, କାମ ଜ୍ୱଳା ଭରା ।" (କ୍ରମଶଃ ବର୍ଷା, ବିବିକ୍ତ ମନ ଓ ଈଶ୍ୱର) । ଏ ଭାବନା କବିଙ୍କର ଦୀର୍ଘସ୍ଥାୟୀ ହୋଇପାରେ ନାହିଁ । ନ ହେବାର କାରଣ ହୁଏତ ନିଃସଙ୍ଗତା । କବି ଜାଣନ୍ତି, ମାନସିକ ତୃପ୍ତି ପାଇଁ ଏ ପ୍ରେମ ଯଥେଷ୍ଟ । ତେଣୁ କୃତ୍ରିମତା, ଅସ୍ୱାଭାବିକତା ଭିତରେ ସେ ତାଙ୍କର ନିଜସ୍ୱ ଜୀବନ ଦର୍ଶନ ଗଢ଼ିବାକୁ ବାଧ୍ୟ ହୁଅନ୍ତି । ସେଥିପାଇଁ ଭାବନାର ନିରବଚ୍ଛିନ୍ନତା କବିଙ୍କଠାରୁ ଆଶା କରିବା ନିଷ୍ପ୍ରୟୋଜନ, ଅନ୍ୟାନ୍ୟ ସୁକୃତିର ପୂର୍ବତନ ଶାଶ୍ୱତିକ ସାନ୍ନିଧ୍ୟରୁ, ମାନସିକ ଓ ଭୌତିକ ଦୃଷ୍ଟିକୋଣରୁ ଆଜିର କବି ବିଚ୍ୟୁତ । ଔଦ୍ୟୋଗିକ ବିପ୍ଳବଠାରୁ ଏଇ ପ୍ରକ୍ରିୟାର ଆରମ୍ଭ ହୋଇଯାଇଛି । ଧୂଳି ଧୂଆଁ, ପଥର ସିମେଣ୍ଟ, ଲୁହା ଇସ୍ପାତର ଜଗତ ମଣିଷକୁ ତା'ର ପୂର୍ବପରିଚିତ

ଜଗତଠାରୁ ବାଧ୍ୟ କରି ଛଡ଼ାଇ ଆଣିଛି । ଏଇ ଧୂସର ଜଗତର ବର୍ଷା ବସନ୍ତ ତେଣୁ ଗୋଟାଏ ଗୋଟାଏ ଉଦାସିଆ ପାଗ, ଲଙ୍ଗଳା ନିଷ୍ଠୁରଣତା । ତେଣୁ ଏ ସବୁ ସ୍ଥଳରେ କବି ଦେଖନ୍ତି—'ଅଧାପେଟା ଶିଶୁର କରୁଣ ଆଖି,' 'ବିଧବାର ଲଙ୍ଗଳା ହାତ', 'ଅଧା ଜଳା ଚୂଲି ପାଖରେ ମୁଣ୍ଡ ଗୁଞ୍ଜି ବସିଥିବା ବିବାହିତା ନାରୀଟିଏ', 'କେଉଁ ଏକ ତରୁଣୀର ଖୋଲା ଦେହ ।' "ଖାଲି ଏକ ଶୂନ୍ୟ ଦୀର୍ଘଶ୍ୱାସ/ ଉତ୍ତପ୍ତ ସଂଚରଯାଏ ତୁମ ଗୁଢ଼ ତଳ ଏକ ନଈ ମୁହାଣରେ/ଯେଉଁଠି ମୁଁ ବସିଅଛି କଦଳୀ ଭେଳାକୁ ଭିଡ଼ି ତୁମ ଅପେକ୍ଷାରେ।" (କ୍ରମଶଃ ବର୍ଷା' ବିବିକ୍ତ ମନ ଓ ଈଶ୍ୱର) । ମଣିଷର ବେଦନା ବିଧୁର ଅବସ୍ଥା ପ୍ରତି କବି ସମ୍ବେଦନଶୀଳ । କିନ୍ତୁ ସେ ସମ୍ବେଦନାରେ ନାହିଁ ସମସ୍ୟା ସମାଧାନର ଉପାୟ, ବରଂ ଏସବୁ ସମସ୍ୟା ସମାଧାନ ପ୍ରତି ନିଜର ସତର୍କ ଅସାମର୍ଥ୍ୟ ତାଙ୍କର ନୂତନ ଜୀବନ ଦର୍ଶନର ସ୍ୱରୂପ ଉନ୍ମୋଚନ କରେ । ଅନ୍ୟ ପକ୍ଷରେ ଏହା ମାନବ ଚରିତ୍ରର ଏକ ବିପରୀତଧର୍ମୀ ପ୍ରବୃତ୍ତି । କାରଣ ସେ ଜଣେ ସ୍ୱାର୍ଥପର ମଣିଷ । କବି ବୁଝିଛନ୍ତି—ନିଜେ ମରୁ ମରୁ ଅନ୍ୟ ପାଇଁ ଲୁହ ଢାଳିବାର କିଛି ମାନେ ନାହିଁ । ନିଜେ ଯଦି ଭଲ ଅଛି ତେବେ ସବୁ ଠିକ୍ ଅଛି । କବି ଅନୁଭବୀ ମଣିଷଟିଏ । ସେ ଦେଖିଛନ୍ତି ସଂସାରରେ ଯେଉଁ-ମାନେ ନିଜ ସ୍ୱାର୍ଥତ୍ୟାଗର କଥା କହନ୍ତି, ସେମାନେ ସବୁଠୁ ବେଶି ସ୍ୱାର୍ଥପର । ଏପରିକି କାମନାର ବିନାଶରେ ଦୁଃଖର ବିନାଶ କଥା କହିଥିବା ତଥାଗତ ବୁଦ୍ଧ ଶେଷ ପର୍ଯ୍ୟନ୍ତ ନିଷ୍କାମ ହୋଇ ପାରି ନାହାନ୍ତି । ତେଣୁ ଯେଉଁମାନେ ମଣିଷର ଦୁଃଖ ସୁଖ ସହ ଏକାତ୍ମ ହୋଇ ଆନ୍ତରିକତା ଦେଖାଇବାର ଛଳନା କରନ୍ତି, ତାହା କବି ଶ୍ରୀ ଲେଙ୍କାଙ୍କ ଦୃଷ୍ଟିରେ ଆତ୍ମ ପ୍ରତାରଣା । ଏହି ହାସ୍ୟାସ୍ପଦ ପ୍ରଚଳିତ ପ୍ରଥାଠାରୁ ଶ୍ରୀ ଲେଙ୍କା ଦୂରେଇ ଯିବାକୁ ଆଶା ପୋଷଣ କରିଛନ୍ତି । ନିଜକୁ 'ଛନ୍ନପଥ' ଘୋଷଣାର ଅନ୍ତରାଳରେ ଏଇ ସତ୍ ଉଦ୍ଦେଶ୍ୟ ନିହିତ । (୧) "ନିଜପାଇଁ ଚିନ୍ତା କରୁଥିବା ଏଇ ମଣିଷଟି ତେଣୁ ଅନ୍ୟ ଦୃଷ୍ଟିରେ ସୃଷ୍ଟିଛଡ଼ା, ଲଙ୍ଗଳା ଅଦ୍ଭୁତ ମଣିଷଟିଏ । ବୋଦ୍‌ଲେୟାରଙ୍କ ଭଳି ତାଙ୍କର କାମ ହେଲା "To live and die before a mirror ।" ସକାଳୁ ଉଠି ରାତି ପର୍ଯ୍ୟନ୍ତ ଦର୍ପଣ ସାମ୍ନାରେ ବସିବା ଓ ଶୋଇବା ଆଜିର ଆଧୁନିକ କବିଙ୍କ ଦର୍ଶନ । ଦର୍ପଣରେ ନିଜ ପ୍ରତିବିମ୍ବ ଦେଖିବା ଅର୍ଥ ନିଜକୁ ଦେଖିବା । ବୋଦ୍‌ଲେୟାରଙ୍କ ଭାଷାରେ ଆଜିର କବି ଏଭଳି ଡ୍ୟାଣ୍ଡି (ଫୁଲବାବୁ) ହେବା ବ୍ୟତୀତ ଅନ୍ୟ ଉପାୟ ନାହିଁ । କାରଣ ଆଜିର କବି ସମାଜ ଗଠନର ସ୍ଥପତି ହେବାକୁ ଅନିଚ୍ଛୁକ । ଶ୍ରୀ ଲେଙ୍କାଙ୍କ କବିତାରେ ଆମେ ଏଇ ଦୃଷ୍ଟିଭଙ୍ଗୀର ସମାନ୍ତରାଳ ଚିନ୍ତା ଲକ୍ଷ୍ୟ କରିଥାଉଁ । ଆତ୍ମପରୀକ୍ଷା ଓ ଆତ୍ମଦର୍ଶନ ଶ୍ରୀ ଲେଙ୍କାଙ୍କ ଜୀବନର ଏକ ସୁଚିନ୍ତିତ ଉଦ୍ଦେଶ୍ୟ । ସମାଜ ଓ ଶାସନ

---

୧ । 'ସନ୍ନ୍ୟାସ' (କବିତାର ମୂହୁଁ) ଦ୍ରଷ୍ଟବ୍ୟ ।

ବିରୁଦ୍ଧରେ ବିଦ୍ରୋହ କରିବା ତାଙ୍କର କାମ ନୁହେଁ । ଅଥଚ ତଥାକଥିତ ସାମାଜିକତା ବିରୁଦ୍ଧରେ ତାଙ୍କ କାବ୍ୟସ୍ୱର ତୀକ୍ଷ୍ଣ ଓ ଶାଣିତ ।

କବି ସବୁ ମଣିଷଙ୍କ କେନ୍ଦ୍ରବିନ୍ଦୁ । ବିଶେଷ କରି ବେହିସାବୀ ମଣିଷଙ୍କ ଭିତରେ ତାଙ୍କୁ ଖୋଜିଲେ ପାଇବା ସହଜ । ଏ ଦୃଷ୍ଟିରୁ ତାଙ୍କ କବିତା ସାମାଜିକ ଆଳାପ ନୁହେଁ, ସ୍ୱଗତୋକ୍ତି । ଆତ୍ମସ୍ୱୀକାରୋକ୍ତିର ନାମାନ୍ତର । କବିଙ୍କ ଭାଷାରେ —"ସମସ୍ତିଙ୍କ୍ର ଚମକାଇ ହିଁଡ଼ଭଳି ଅଶ୍ୱାନକ ଆସି/ଆଉ ଜଣେ ପ୍ରବେଶିଲା/ଏବଂ କହିଲା : ହଜୁର୍, ତୁମେ ଯା'କୁ ଖୋଜୁଅଛ ଦେଖିଚ ତାହାକୁ/ଗତକାଲି ଦିନ ବାରଟାରେ – ଏକ ହିଁଙ୍କା ବରଗଛ ଡାଳେ/ବସି ସିଏ ବଂଶୀ ଫୁଙ୍କୁଥିଲା, ଓ/କିଏ ବା କେମିତି କେଜାଣି ସେଇବାଟେ ଗଲେ/କହୁଥିଲା—ଭାଇ ହୋ, ମୁଁ କ'ଣ ପାଗଳ ଭଳି ବଂଶୀ ବଜାଉଚି ?" (ନିରୁଦ୍ଦିଷ୍ଟ ବ୍ୟକ୍ତି ସମ୍ପର୍କରେ) (୩) । ହିଁଙ୍କା ବରଗଛ ଡାଳରେ ବସି ବଂଶୀ ବଜାଉଥିବା ଲୋକଟି ଈଶ୍ୱର କବିଙ୍କ ଭିନ୍ନ ଆଉ କେହି ନୁହନ୍ତି । ଭାବନାକୁ ଅବିକଳ ଭାବେ ପ୍ରକାଶ କଲାବେଳେ ମଣିଷମାନେ ହୁଏତ ତାଙ୍କୁ ପାଗଳ କହନ୍ତି । କିନ୍ତୁ କବି ଜାଣନ୍ତି ସେ ଅତି ସାଧାରଣ ମଣିଷଟିଏ । ସେଇ ତଥାକଥିତ ପାଗଳାମି ହେଉଛି ତାର ଅସାଧାରଣତା । 'ବର୍ତ୍ତମାନ' ତାଙ୍କ ନିକଟରେ ସବୁ କିଛି । 'ଉତ୍ତରଣ'ରେ 'ବର୍ତ୍ତମାନ' ଶବ୍ଦର ଶତାଧିକ ପ୍ରୟୋଗ ଏହାର ଗୁରୁତ୍ୱ ସୂଚେଇ ଦିଏ । ତେଣୁ ହାତପାଆନ୍ତାର ଦୁନିଆକୁ ଚିହ୍ନିବା କବିର ପ୍ରଥମ ଆବଶ୍ୟକତା । ଜୀବନକୁ ତାର ସହସ୍ର ତ୍ରୁଟି ସତ୍ତ୍ୱେ ଗ୍ରହଣ କରିନେବାର ଶିଳ୍ପୀ ସୁଲଭ ପ୍ରବଣତା ଶ୍ରୀ ଲେଙ୍କାଙ୍କ କବିତାରେ ବାରି ହୋଇ ପଡ଼େ ।

କବି ଶ୍ରୀ ଲେଙ୍କାଙ୍କ ସୃଷ୍ଟିଶୀଳ କାବ୍ୟଜଗତ ଏକ ମିଥ୍ୟାର ଛଦ୍ମପ୍ରତିମା ନୁହେଁ । ଏହା ଯେମିତି ସତ୍ୟର ନିବିଡ଼ ଅନୁଭବ । କବିତାର ସତ୍ୟ ଏକ ଭିନ୍ନ ଭାବରେ ବଞ୍ଚିବାର ସତ୍ୟ କଥା ଉପସ୍ଥାପନ କରିଥାଏ । ନିଃସଙ୍ଗ ବେଦନା ତେଣୁ କବି ପ୍ରାଣରୁ କବିତାକୁ ସଞ୍ଚରିଯାଏ । ଏହାହିଁ କବିର ସ୍ୱକୀୟତା, ଯାହାକୁ ବାସ୍ତବତାର ବାସ୍ତବ ରୂପ କହିବା ଅଧିକ ଯଥାର୍ଥ । ନିଜସ୍ୱ ଚେତନାର ପରିଧି କହିବା ସମୀଚୀନ । କବି ଘରପାଖରେ ଈର୍ଷା, ହିଂସା, ଦ୍ୱେଷ, ଓ ଅବିଶ୍ୱାସର ପୃଥିବୀ । (୪) ଶତ ଅନିଚ୍ଛା ସତ୍ତ୍ୱେ ଏହି ପୃଥିବୀରେ ସେ ରହିବାକୁ, ନିଜ ଭାବରେ ସେ ତା' ଘରପାଖର ପୃଥିବୀକୁ ଦେଖିବାକୁ ଓ ଦେଖିବା ଭିତରେ ତାକୁ ଆପଣେଇ ନବାକୁ ମଧ୍ୟ ବାଧ୍ୟ । ଅଥଚ ପରେ ପରେ କାରୁଣ୍ୟତାର ଘର୍ମାକ୍ତ ଅବସ୍ଥାରେ ନିଜକୁ ଆବିଷ୍କାର କରି ଦେଖେ ତ ଈର୍ଷା, ହିଂସାର ଚକ୍ରବ୍ୟୂହ ଭିତରେ ଭୟ, ଆଶଙ୍କା, ଯନ୍ତ୍ରଣା ଓ

---

୩ । ନିରୁଦ୍ଦିଷ୍ଟ ବ୍ୟକ୍ତି ସମ୍ପର୍କରେ (କବିତାର ମୁହାଁ) ।

୪ । 'ବଞ୍ଚିଥିବା ଶବ୍ଦମାନଙ୍କ ମଝିରେ କବି'—ଗାଁଜ ଗା' ନାଚରେ ପକ୍ଷୀ ।

ଅସହାୟତା । କବିର ସୂକ୍ଷ୍ମସତ୍ତ୍ୱକୁ ଆବୋର ବସିଥାଏ କବିତା । "କବି ବନ୍ଦିଥିବା ଶବ୍ଦମାନଙ୍କୁ ନେଇ ବିଶୃଙ୍ଖଳତାର ବକଟେ ସମସ୍ତଙ୍କୁ ହାଣିକାଟି ବକଳା ଛଡ଼େଇ ବାଞ୍ଛିତ ସ୍ୱପ୍ନର ଅପ୍ରତ୍ୟାଶିତ ସତ୍ତ୍ୱିକୁ ଅପେକ୍ଷା କରେ ଓ ଉତ୍କଣ୍ଠାର ଉଦ୍ଧଳ ବକଳ ତମାଳ ମୂଳରେ ଠିଆହୋଇ ଅନୁଭବ କରେ କବିତାଟିଏ ପାଇଁ ଏକୁଡ଼ିଶାଳର ପ୍ରସବ ବେଦନା ! ଯେବେ ସବୁ ଛନ୍ଦ ହୋଇଯାନ୍ତି ତା' ନିଜଠେଁ ଏବଂ ଲୁହର ଅଠାକାଠିରେ ମରି ଯାଉଥିବା ଶବ୍ଦଙ୍କ ପାଇଁ ତାର ଅସୀମ କରୁଣତା ଚେଇଁ ଉଠେ । (*) 'ଲୁହର ଅଠାକାଠି' ଓ 'ଉତ୍କଣ୍ଠାର ଉଦ୍ଧଳ ବକଳ ତମାଳ ମୂଳ' ଚିତ୍ରକଳ୍ପ ଦୁଇଟିରେ ବିଚ୍ଛିନ୍ନତାର ସ୍ୱର ବୁଝାଯାଏ । ଶବ୍ଦମାନଙ୍କ ଓଷ୍ଠ ଶରରେ କବି ରକ୍ତାକ୍ତ ହେଲେ ବି ତା'ର କବିତାକୁ ରକ୍ତଚନ୍ଦନର ଟୋପା ଲଗାଇବାକୁ ଆଗଭର ହୁଅନ୍ତି । ଏଇ ଅନୁଭବ ଆସେ ବଞ୍ଚିବାର ପୂର୍ଣ୍ଣତାରୁ, ଜୀବନକୁ ଝପିଯିବାର ସମ୍ଭାବନାରୁ ।

ଏପରି ଅସହାୟତାର ଶୂନ୍ୟତାବୋଧ କେବଳ କବି କାହିଁକି ପ୍ରତି ଚେତନଶୀଳ ମଣିଷ ଜୀବନରେ ଆସେ । ଅତୀତରେ ଏହା ଥିଲା, ଏବେ ମଧ୍ୟ ଅଛି । ଏପରିକି ଆଧ୍ୟାତ୍ମିକ ଚେତନାସମ୍ପନ୍ନ ବ୍ୟକ୍ତି ଜୀବନରେ ମଧ୍ୟ ଏହା ଅନିବାର୍ଯ୍ୟ ଭାବେ ଦେଖାଦିଏ । କେତେବେଳେ ମନେହୁଏ, ଏହାକୁ ଅତିକ୍ରମି ଯିବା କଷ୍ଟ; କିନ୍ତୁ ସେ ସମସ୍ତଟି ଅତିବାହିତ ହୋଇଗଲେ ଦେଖାଯାଏ ଯେ ଅତୀତର ଶୂନ୍ୟତା ଭିତରୁ ଜନ୍ମ ନେଇଛି ଏକ ଅନୁଭୂତିସମ୍ପନ୍ନ ଜୀବନ । ଯାହାକୁ ସମସ୍ତେ ଅବହେଳା କରି ଗୁଡ଼ି ଚାଲିଯାଆନ୍ତି, କବିର ତା' ପ୍ରତି ଦୁର୍ବାର ଆକର୍ଷଣ ଚେତାଇ ଦିଏ ଯେ ତାହାହିଁ କବିର ନିଜସ୍ୱ । ରାସ୍ତାର ମୋଡ଼ ଭାଙ୍ଗିଲାବେଳେ ମଣିଷର ଏଇ ନିଜସ୍ୱତା/ ପାରିଲାପଣିଆ ବୁଝାଯାଏ । କବି ତେଣୁ ଭିନ୍ନ ରାସ୍ତାକୁ ଏକ ମୋଡ଼ ଦେଇଯିବା ଉଚିତ । ଅବସ୍ଥାରେ ସହଜ ନ୍ୟାୟ ହଠାତ୍ ବଦଳି ଗଲେ ଆମକୁ ତାହା ଜଣାଯାଏ ସମ୍ପୂର୍ଣ୍ଣ ଅଦ୍ଭୁତ୍ "ହଜାର ହଜାର କାଚ ଆଖିକୁ/ ଯାହା ଦିଶେ, ତାହା ରେଳ ପଥ ।" (ଏକା ଏକା—ଖସିବାର ବେଳ) । ମାତ୍ର ମୁଗୁଣ୍ଡି-ମାନଙ୍କ ଘର ହେଁସ ନ ଧୋଇବା ଯାଏ ଫିକର କବି କରନ୍ତି ନାହିଁ । ଏହା କବିଙ୍କ ପକ୍ଷରେ କମ୍ ସାଧନା ନୁହେଁ । ଅଧ୍ୟାପିକା ରେଖା ମହାନ୍ତିଙ୍କ ଭାଷାରେ—"ଆଜିର ମଣିଷ ନିଜକୁ, ନିଜର ସ୍ଥିତିକୁ ଆବିଷ୍କାର କରିବାକୁ ଚାହେଁ । ସେ ଚିର୍ଚିରିତ ଜୀବନଧର୍ମର ଯେ ବିବେଧ କରୁଚି, ତା' ନୁହେଁ । କିନ୍ତୁ ନିର୍ବିଚାରରେ ତାକୁ ସ୍ୱୀକାର କରି ନେବା ସମ୍ଭବ ନୁହେଁ ।" ତେଣୁ କବିର ଆହ୍ୱାନ—"ନଆଁକୁ ଗୋହଲା ଜଳିବା

* । ରମେଶ ପ୍ରତାପ—'ବନ୍ଦିଥିବା ଶବ୍ଦମାନଙ୍କ ମଝିରେ କବି' ଓ କମଳାକାନ୍ତ ଲେଙ୍କା—'ସଙ୍ଗମଯାଗ' –ଏପ୍ରିଲ,—୧୯୮୦ ।

ଆ'ଦ୍ୱେ ଯାଙ୍ଗ, କେଇ ଚମକ ପିବ ନାହିଁ ଅଚଳୁ ରେ । ଏ କନ୍ତୁ ଅସମ୍ଭବ କଥା ନୁହେଁ । ଖାଲି ଜୀବନ ସ୍ୱରର ପରିବର୍ତ୍ତନ ।'' (୬) ଅନ୍ୟ ପକ୍ଷରେ ନିଆଁକୁ ଗେହ୍ନ କରିବାର ପ୍ରବୃତ୍ତି ଏକ ଆତ୍ମଘାତୀ ମନ୍ତ୍ରା, ଯାହାକୁ ଧରିବାର ଆବେଗରେ ବହୁ ମଣିଷ ପରିବ୍ୟାଳିତ ହୁଏ । ଲିଓନାର୍ଡ଼ ଫିଉର୍ ଆମ ସହ ଏଇଠି ଏକମତ ହେବେ । ତାଙ୍କ ମତରେ '' 'The word alienation is used to describe the subective tone of self-destructive experience. ''ମଣିଷ ଗୋଟାଏ ଶୂନ୍ୟତାକୁ ଢାଙ୍କିଲା ବେଳକୁ ଆଉ ଏକ ଶୂନ୍ୟତାରେ ବୁଡ଼ିଯାଏ । ଗୋଟାଏ ଆଶା ପୂର୍ଣ୍ଣ ହେଲାବେଳକୁ ଅନ୍ୟଟି ତା' ପାଖେ ପାଖେ ସନ୍ତର୍ପଣରେ ଖୁଲିଆଏ । ଯେପରି ନିଜର ଚାକିରିକୁ ବିଶେଷ ଗୁରୁତ୍ୱ ଦେଉଥିବା ମଣିଷଟି ଅବସର ନେବାପରେ ଭାବେ ଯେ ତା' ଜୀବନ ସ୍ଥିରଖାର ହୋଇଗଲା । ମାତ୍ର ଏପରି ମଣିଷ ଚାକିରି କାଳରେ ସୁଖୀ ଥାଏ ବୋଲି କୁହାଯାଇ ନ ପାରେ । ସେ କେବଳ ଗୋଟାଏ ଶୂନ୍ୟତାକୁ ଛାଡ଼ି ଅନ୍ୟଟିକୁ ଗ୍ରହଣ କରେ । ମାତ୍ର ଏହି ମାନସିକ ପରିବର୍ତ୍ତନକୁ ସେ ଅନ୍ତରରେ ସ୍ୱୀକୃତ ଦେଇପାରେ ନାହିଁ ବୋଲି ଏତେ ଯନ୍ତ୍ରଣା ଭୋଗିବାକୁ ବାଧ୍ୟ ହୁଏ । ଶ୍ରୀ ଲେଙ୍କାଙ୍କ ଗୋଟିଏ କବିତାରେ ଏହି ଭାବର ଏକ ଚମତ୍କାର ପ୍ରତିଫଳନ ଦେଖାଯାଏ—''ମୋ ମୁହଁ ଫେରାଇ ଦିଏ/ ଯେଉଁ ଦୃଶ୍ୟ, ତା' ଭଙ୍ଗା ଦର୍ପଣ । /ମୋ ପଞ୍ଜରର ଉଷ୍ମଳତା /ଗୋଟାଇ ଆଣେ ଯେଉଁ ନେତ୍ରଦ୍ୱୀପର ପ୍ରବାଳ/ ତା' ଝରି ପଡ଼ୁଥିବା ଅଶ୍ୱାସନାର ପୁରୁଣା ବକଳ ।'' (ଦୁଃଖ କରିବାର କିଛି ନାହିଁ—'ଦୁଃଖ ସହ କଥାବାର୍ତ୍ତା') । ଭଙ୍ଗା ଦର୍ପଣରେ ମୁଖର ପ୍ରତିବିମ୍ବ ନିଖୁଣ ନୁହେଁ । ମଣିଷର ସ୍ୱପ୍ନ ମଧ୍ୟ ସେହିପରି ନିଖୁଣ ନୁହେଁ । ଖାଲି ପରାଜୟ, ଓହ୍ରୀଙ୍କ୍ୟ ଭିତରେ ସେ ବଞ୍ଚେ । ମାତ୍ର ସବୁ ମଣିଷ ଏ କଥାଟି ଗ୍ରହଣ କରିବାକୁ ପ୍ରସ୍ତୁତ ନୁହନ୍ତି । କାରଣ ମଣିଷର ସ୍ୱାର୍ଥପରତା ହେଉଛି, ନିଜର ବାସ୍ତବ ସତ୍ତା ପ୍ରତି ଧ୍ୟାନ ଦେଇ ପାରୁ ନ ଥିବାର ବିଫଳତାକୁ ଘୋଡ଼ାଇବାର ଅସଫଳ ଉଦ୍ୟମ । କିନ୍ତୁ ମଣିଷର ଅସଲ ସ୍ୱାର୍ଥ କ'ଣ ? କ'ଣ ଯଶଃପଦ, ଖ୍ୟାତି, ପ୍ରତିପତ୍ତି ତାର ପ୍ରବୃତ୍ତିକୁ ସ୍ୱାର୍ଥାନୁକୂଳ କରେ ? ସବୁ ଦେଶର, ସବୁ ଧର୍ମର ଶାସ୍ତ୍ରକାରମାନେ ଏଥିରେ ଏକମତ ହୋଇ ପାରିବେ ନାହିଁ । ତେବେ କ'ଣ ଆତ୍ମା ବା ଅନ୍ତଃଚେତନାର ଉନ୍ନତିରେ ତାର ସ୍ୱାର୍ଥ ନିହିତ ଥାଏ ? କହିବା ମୁସ୍କିଲ । ଏ କଥା କୁହାଯାଇପାରେ ଯେ ଯେଉଁମାନେ କେବଳ ଧନ ସମ୍ପତ୍ତି ବା ନିଜର ସୁଖ ସୁବିଧା ପାଇଁ ଧାଇଁଥାନ୍ତି, ସେମାନେ କେବେ ନିଜକୁ ଭଲପାଆନ୍ତି ନାହିଁ । ପ୍ରତ୍ୟେକ ତାଙ୍କ ଭିତରେ ନିଃସଙ୍ଗ । ସ୍ନେହପ୍ରୀତି ଏକ ଏକ

୬ । ମହାନ୍ତି, ରେଖା —'ଝଙ୍କାର'— ୫୧ ବର୍ଷ, ୫ମ ସଂଖ୍ୟା ( ନିତ୍ୟ ନିସ୍ପୃହିତ —ସମୀକ୍ଷା ) ।

ପ୍ରତାରିତ ସତ୍ୟର କ୍ରନ୍ଦନ । ଶ୍ରୀ ଲେଙ୍କା କହନ୍ତି—"ନା ରକ୍ତ ନା ମୁକ୍ତି/ ନା ଏକ ଛନ୍ଦହୀନ ସମର୍ପିତ ଓଠ/ ନା ଏକ ଘୃଣ୍ୟ ଆତ୍ମହତ୍ୟା/ ନା ସ୍ନେହ ନା ପ୍ରେମ ନା କ୍ଷୋଭର ନିଷ୍ଫଳ ମୁହୂର୍ତ୍ତ/ ନା ଆସନ୍ନ ସକାଳ ପରି ଶୂନ୍ୟ ଏକ ରଙ୍ଗିନ୍ କୋଠରି !" ( ଶୂନ୍ୟବାଣୀ—'ଅନ୍ତତଃ ନିଷ୍ଟୁପ' ) । ଏପରି ହେବାର ଏକ ଦୃଷ୍ଟାନ୍ତ ଦେଇଛନ୍ତି ଶ୍ରୀ ଶରତକୁମାର ମହାନ୍ତି, "କଣେ କଣେ ମାଆ ପିଲାର ସାମାନ୍ୟ ଅସୁବିଧା ବା ଦେହ ଖରାପ ପାଇଁ ବିଚଳିତ ହୋଇ ପଡ଼ନ୍ତି । ଏପରି ମାଆ ପିଲାକୁ ଖୁବ୍ ଭଲପାଏ ବୋଲି ଧରିନେବା ଠିକ୍ ନୁହେଁ । ବରଂ ପିଲାକୁ ପ୍ରକୃତରେ ଭଲ ପାଉ ନ ଥିବା କଥାଟିକୁ ଢାଙ୍କି ଦେବା ପାଇଁ (ଅନେକ ସମୟରେ ଅଚେତନ ଭାବେ ) ସେ ଏପରି ବ୍ୟବହାର କରେ ।" (୭) ତେଣୁ ନିଜକୁ ଭଲ ପାଉ ନ ଥିବା ମଣିଷ, ନିଜକୁ ଅସ୍ୱୀକାର କରୁଥିବା ମଣିଷ ତାହାର ସ୍ୱାର୍ଥ ପ୍ରତି ବେଶି ସଚେତନ, ଯାହା ଫଳରେ ସେ ଏକ ବିଚ୍ଛିନ୍ନତାର ଶିକାର ହୋଇ ପଡ଼େ । ମଣିଷର ଖଣ୍ଡିତ ଜୀବନରେ ତେଣୁ ଏ ସମସ୍ୟା ଅତି ଉତ୍କଟ । ମଣିଷ ଆପଣାର ଖର୍ବତାର ସ୍ୱରୂପ ଜାଣେ ଏବଂ ଜାଣେ ବୋଲି ସେ ତା'ର ଧନ ବା ପଦ ପଦବୀକୁ ନିଜଠାରୁ ବଡ଼ କରି ଅନ୍ୟମାନଙ୍କ ଆଗରେ ଭେଉ ଦେଖାଏ । ସ୍ପିନୋଜା କିନ୍ତୁ କହୁଥିଲେ—ଆଗ ନିଜ ସ୍ୱାର୍ଥକୁ ଜଗିବା ଦରକାର, ନଚେତ୍ ନିଜର ସତ୍ତାକୁ ବଞ୍ଚାଇ ରଖିବା ଅସମ୍ଭବ । ସ୍ପିନୋଜାଙ୍କ ଦୃଷ୍ଟିରେ ଥିବା ସ୍ୱାର୍ଥ ଆଜି ତାର ଅର୍ଥ ହରାଇଛି । ସ୍ଥିତିବାଦୀ ମଣିଷ କହୁଛି, ସ୍ୱାର୍ଥପର ହୁଅ । ଯୁଗର ସ୍ୱଚ୍ଛନ୍ଦ ଅନୁସାରେ ନିଜକୁ ଗଢ଼ । ସ୍ୱାର୍ଥ ସାଧନ ଯେଉଁଠି ଆଦର୍ଶ ହୋଇଯାଏ, ସେଠାରେ ଛଳନାର ଘଟେ ଅବାଧ ଅନୁପ୍ରବେଶ । କବି ଯେତେ ସ୍ୱଚ୍ଛ ହେଲେ ବି ଏ ଛଳନାର ବ୍ୟୂହଭେଦ ଅସମ୍ଭବ । "ଛଳନାର ଭିଡ଼ ଠେଲି ଆଗକୁ ଯିବାର ଇଚ୍ଛା /ବଳବତୀ ମୋର । ହେ ଛଳନା, ହେ ଆତ୍ମୀୟ ପ୍ରତାରଣା/ ତୁମେ କାହିଁ ଠିଆହୁଅ ରାସ୍ତାର ମଝିରେ ? /ମନେହୁଏ ଆପଣାକୁ ଦୁର୍ନିବାର ତୃଷାର ମୁଠାରୁ / ବଞ୍ଚାଇବା ଇଚ୍ଛା ନେଇ ଓଗାଳୁଚ ବାଟ ମୋର ନିର୍ବିକାର ମନେ ··· / ମୁଁ କିନ୍ତୁ ଜିଜୁଡ଼ା ଯେତେ ତୁମ ଦେହେ ଦେହ ଘଷି ଆଗକୁ ଯାଉଚ ଠେଲି ଆଶଙ୍କାର ନୁଲମାନ ଖରିକୁ ହକାରି ।" ( ନିଜକୁ, ନିର୍ଜନ ମୁହୂର୍ତ୍ତକୁ ଓ ······"କବିତାର ମୂର୍ହ") ଛଳନା ସାଙ୍ଗରେ ଦେହ ଘଷି ଯିବା ବ୍ୟତୀତ ଆଉ ଉପାୟ କାହିଁ ? ତେବେ କଏ ଠିଆ କଲା ମଣିଷର ଗୃହପାଖରେ ଛଳନାର ପାଚେରୀ ? ମଣିଷ ନିଜେହିଁ ତାର ସୃଷ୍ଟିକର୍ତ୍ତା । ସେଥିପାଇଁ ମଣିଷ ଆଜି ନିଜ ସୃଷ୍ଟିରେ ଭସ୍ମାସୁର । ତୀର୍ଥଙ୍କର, ସମ୍ରାଟ୍ ଓ ଅନ୍ୟମାନେ ସମସ୍ତେ ଯେପରି ଛଳନାର ମୂର୍ତ୍ତିମାନ ମଣିଷ । ଏହା ସବୁଠି ଅଛି, ପୁଣି କେଉଁଠି ନାହିଁ । ଏହାହିଁ ଆଜିର ସଂସାର । ରାମକୃଷ୍ଣ

୭ । ମହାନ୍ତି, ଶରତକୁମାର—ଅସ୍ତିତ୍ୱବାଦର ମର୍ମକଥା—ପୃ. ୩୮-୩୯ ।

ପରମହଂସ ଏହାର ଏକ ସୁନ୍ଦର ଉଦାହରଣ ପିଆଜ ମାଧ୍ୟମରେ ଦେଇଛନ୍ତି । ପିଆଜର ପରସ୍ତ ପରେ ପରସ୍ତ ଚୋପା ବାହାର କରିବା ପରେ ଆମେ ଶେଷରେ ଏପରି ଏକ ଅବସ୍ଥାରେ ପହଁଞ୍ଚୁ, ଯେଉଁଠି ଆଉ କିଛି ନ ଥାଏ । ସଂସାରଟା ଠିକ୍ ସେମିତି । ଆଉ ସଂସାର ସ୍ଥିତ ମଣିଷ ମଧ୍ୟ ସେହିପରି । ପାଶ୍ଚାତ୍ୟ ସାହିତ୍ୟରେ ଇବ୍‌ସେନ୍ ମଧ୍ୟ ପିଆଜର ଦୃଷ୍ଟାନ୍ତ ଦେଇଛନ୍ତି । 'ପିଅର ଗିଣ୍ଟ' ନାଟକରେ ପିଅରଗିଣ୍ଟ ନାମକ ଚରିତ୍ରଟିଏ ନିଜର ଅନ୍ତରର ସତ୍ତାକୁ ଖୋଜି ଦେଖିଛି; ଯେ ତାହା ପିଆଜ ପରି ଶୂନ୍ୟ । ଜଣେ ଯୋଗୀ ଓ ଅନ୍ୟ ଜଣେ ଭୋଗୀର ବିଶ୍ୱର-ଧାରାରେ କି ଅଦ୍‌ଭୁତ ସାମଞ୍ଜସ୍ୟ !

ଶ୍ରୀ ଲେଙ୍କାଙ୍କ ଦୃଷ୍ଟିରେ ମଣିଷର କୌଣସି ନିର୍ଦ୍ଦିଷ୍ଟ ଭାବମୂର୍ତ୍ତି ନାହିଁ । ଏହାର କାରଣ ଜଗତ ଓ ମଣିଷ ମଧ୍ୟରେ ଥିବା ଅଲଙ୍ଘନୀୟ ଦୂରତ୍ୱ । ଜୀବନ ଯୁଦ୍ଧର ପଶା ଖେଳରେ ସେ ହରାଇଛି ଯାବତୀୟ ସମ୍ପତ୍ତି । କବି ତେଣୁ ଦୁଃଖରେ ଗାଏ—"କାକୁସ୍ଥତା ଫେଉ ଭାଙ୍ଗି/ଜାଲି ପୋଡ଼ି ବର୍ଷର ମଧ୍ୟାହ୍ନ ଖରାକୁ/ମୁଁ ନିଜେ ଗାଉଚି ଗୀତ ।/ମୋ ଚକ୍ଷିତ କଲଙ୍କ ସାରଙ୍ଗୀ ଧରି/ବେପରୁଆ ହିପ୍‌ପୀ ଟୋକା ପରି/ନିଶୂନ ରାତିର ଓଠେ ଖିଲ୍‌ଖିଲ୍ ବସନ୍ତ ଉଖାରି ।" ( ପ୍ରାର୍ଥନା : କିଣ୍ଟିଭ୍ର ତୁମକୁ ଓ ସମ୍ପୂର୍ଣ୍ଣ ନିଜକୁ—'କବିତାର ମୁହଁ' ) । କାକୁସ୍ଥତାର ଝାଲ କଣ୍ଟେ ସେତିକବେଳେ, ଯେତେବେଳେ କବି ନିକଟରେ ଜଗତର ବସ୍ତୁମାନ ଅପରିଚିତ ମନେ ହୁଅନ୍ତି ଏବଂ ରଙ୍ଗବେରଙ୍ଗର ପ୍ରୀତି ଭାଙ୍ଗିରୁଜି ଚୁରମାର ହୋଇଥାଏ । ସାର୍ତ୍ତରଙ୍କ ଏ ପ୍ରସଙ୍ଗରେ କହନ୍ତି—"ଜ୍ଞାନର ବସ୍ତୁ ଭାବେ ଏ ଜଗତ ଅଜ୍ଞାତ । ମୁଁ ଏହାଠାରୁ ଦୂରରେ ଦଣ୍ଡାୟମାନ । ଜଗତ ପାଇଁ ଅନ୍ୟ··· । ମୁଁ ଏଠି ନିରାପଦ ଅନୁଭବ କରେ ନା । କାରଣ ମୋ ସହିତ ସମ୍ପର୍କ ଥିଲାପରି ଭାଷା ଜଗତ କହେ ନା । ଜ୍ଞାନ ସ୍ତରରେ ମୁଁ ଜଗତକୁ ଯେତେ ବେଶି ବୁଝେ, ସେତେ ଅଧିକ ଗୃହଶୂନ୍ୟ ମନେ କରେ ।" (୮) ଆଜି କବିର ଜଗତ ହେଉଛି 'ଓପଟକ୍ଷୀର ଜଗତ ।' (୯) ଯେଉଁଠୁ ସେ ଯାତ୍ରା ଆରମ୍ଭ କରୁଛି ସେଇଠି ହେଉଛି ତା' ଯାତ୍ରାର ସମାପ୍ତି । ବୃତ୍ତାକାରରେ ଦଉଡ଼ୁଥିବା ଓଟପକ୍ଷୀ ଶୂନ୍ୟତାକୁ ଭେଟି ଭେଟି ଶେଷରେ ସେହି ଶୂନ୍ୟରେହିଁ ତାର ଯାତ୍ରା ଶେଷ କରୁଛି । —"ହେ ଶୂନ୍ୟତାର ପଦଧ୍ୱନି ! ଓ/ ମୃତ୍ତିକାର ଓଟପକ୍ଷୀମାନେ ! ତୁମକୁ ମୁଁ ଭୁଲାଉଚି/ମିଠେଇ ଓ କୋଷର ଲୋଭରେ/ ତୁମକୁ ମୁଁ ବାଆଁରେଇ/ ଅକସ୍ମାତ୍ ସାର୍ଥୀହିରୁ ବଉଦ ସମାନ/ଗାଉଚି ସୂର୍ଯ୍ୟର ଗୀତ ଘନ ଘୋର ବର୍ଷାର ଅନ୍ଧାରେ ।" ( ପ୍ରାର୍ଥନା : କିଣ୍ଟିଭ୍ର ତୁମକୁ ଓ ସମ୍ପୂର୍ଣ୍ଣ ନିଜକୁ—'କବିତାର ମୁହଁ' ) ।

---

୮ । ତର୍କୈକ—ପୃ. ୪୩୪-୩୫ ।

୯ । ମିଶ୍ର, ଦୀପକ—କବି, କବିତା ଓ ତା'ର ପୃଷ୍ଠଭୂମି—୧୯୬୭, ପୃ. ୩୧ ।

ତେବେ ଏପରି ହେବାର କାରଣ ଡବ୍ଲ୍ୟୁ. ଏଚ୍. ଅଡ଼େନ୍‌ଙ୍କ 'The Age of Anxiety' (1948) ଗ୍ରନ୍ଥରୁ ମିଳେ । ବିଂଶ ଶତାବ୍ଦୀର ଏହା ଏକ ପ୍ରତିବନ୍ଧମୂଳକ କବିତା ଗ୍ରନ୍ଥ । ମଣିଷର ଉଦ୍‌ବେଗ ଓ ପାପବୋଧର ଏକ ବିଶେଷଣ ଏଥିରେ କରାଯାଇଛି । ପାଶ୍ଚାତ୍ୟ ଦେଶର ଆଧୁନିକ କବି ଇଲିଅଟ, ସ୍ପେଣ୍ଡର ମଧ୍ୟ ମାନବାତ୍ମାର ଧ୍ୱଂସ ଓ ଅବାସ୍ତବ ପ୍ରଗତିର ରହସ୍ୟ ଉଦ୍‌ଘାଟନ କରିବାରେ ବେଶ୍ ଯତ୍ନଶୀଳ । ବର୍ବର ସଭ୍ୟତାର ଜୀବାଣୁ ସେମାନଙ୍କ ବିଶ୍ୱର-ଧାରାକୁ କରିଛି ଆକ୍ରାନ୍ତ । ନିଃସଙ୍ଗତାର ଉଦ୍‌ଗମନ ଏହିଠାରୁ । ଏହାକୁ ତେଣୁ ଏକ ବିପର୍ଯ୍ୟସ୍ତ ମାନସିକ ସ୍ଥିତି କହିବା ଅନେକାଂଶରେ ଠିକ୍ । ତେବେ ଅଡେନ୍‌ଙ୍କ ମତରେ ଏହି ନିଃସଙ୍ଗତା ଶାରୀରିକ ଅପେକ୍ଷା ବରଂ ବେଶି ମାନସିକ । ମଣିଷର ସାମଗ୍ରିକ ଅବସ୍ଥାର ଗଭୀର ଅବବୋଧରୁ ଅଡ଼େନ୍‌ଙ୍କ ନିଃସଙ୍ଗତାର ସୃଷ୍ଟି । (୧୦) ମଣିଷର ଏଇ ଦୟନୀୟ ସ୍ଥିତି ଶ୍ରୀ ଲେଙ୍କାଙ୍କୁ କଣ୍ଠା ଭଳି ଆଘାତ ଦେଇଛି । ଅନ୍ୟଙ୍କୁ ଭୁଲ୍ ବୁଝିବା ପାଇଁ ମଣିଷର ଏଇ ସ୍ଥିତି ବାଟ ଦେଖାଏ ।—"ଦେଖ, ଭୁଲ୍ ବୁଝିବା ଛଡ଼ା/ଅନ୍ୟ ବାଟ, ନୀରବତାକୁ/ ଘାଣ୍ଟିବା ଛଡ଼ା ଅନ୍ୟ ଉପାୟ, ବିଦ୍ରୂପର/ ନିକୃଷ୍ଟ ତତ୍ପରତା ଛଡ଼ା/ ଅନ୍ୟ ବନସ୍ତର କାଗପତ୍ର/ ନାହିଁ ମୋର । ନାହିଁ ତୁମର ।" ( କଣ୍ଟା ଗଛରେ ଫୁଲ ) । ଚତୁରତା ଆମ ମୁକ୍ତି ଓ ତୃପ୍ତିର ବାଧକ । ଆମେ ସବୁ ଜଣେ ଜଣେ ଧନଶାଳୀ କୁବେର । ଚତୁରତା ଆମକୁ ଗ୍ରାସ କରି ଯାଇଛି । ଯେଉଁଥିରୁ ମୁକୁଳିବା କଷ୍ଟ । ଷ୍ଟ୍ରାଇକର ଷ୍ଟ୍ରକ୍ ମାଡ଼ରେ ଆମର ଶରୀର ମନ ଚକ୍ରାକ୍ତ; ଏଠାରୁ କିସ୍ତରିବା ସ୍ୱପ୍ନ । ସର୍ଚ୍ଚ ଲାଇଟରାସ୍ତାଙ୍କ ଭଳି କବିତା ନୂଆ ମଣିଷର ଗ୍ରୀବକୁ (୧୧) ଛୁଇଁ ଦେଲେ କବିର କାର୍ଯ୍ୟ ଶେଷ ହୋଇଯାଏ ନାହିଁ । ଯେଉଁ ପରିସ୍ଥିତିରେ ଆମେ ଅଛୁ, ତା' ଭିତରୁ ଆମକୁ ଖୋଜିବାହିଁ ଆଜିର କାବ୍ୟ ଧର୍ମ । ଶ୍ରୀ ଲେଙ୍କାଙ୍କ କବିତା ଏଇ ଭାବର ଏକ ବଳିଷ୍ଠ ଅନୁଶୀଳନ । କବି ରମାକାନ୍ତ ରଥଙ୍କଠାରୁ ଏଇ ଉଦ୍ୟମର ଛବି ପଡ଼ିଛି । 'ଅଭ୍ୟାସ' କବିତାରେ କାବ୍ୟନାୟକ କହିଛନ୍ତି—

> "ମୁଁ ଅସାଧାରଣ କିମ୍ବା ବଡ଼ ହେବା ଲାଗି
> ଇଚ୍ଛା କରି ନାହିଁ, ଖୋଜି ନାହିଁ କୌଣସି ରହସ୍ୟ,
> ଏହି ଗ୍ରେଟ ସହରର ରାସ୍ତାରେ ମୁଁ ହଜାର ହଜାର
> ଲୋକଙ୍କ ଭିତରେ ଚାଲେ, ଚାଲୁ ଚାଲୁ ଦିନେ ହାସ୍ପାତାଳ

୧୦ । Srivastava, Narasingh—W. H. Auden, 'A poet of Ideas', 1978, P 217.

୧୧ । 'ପାଣ୍ଡୁଲିପି'ର 'ରାଜକେମା' କବିତା—"ତୁମେ ମୋର ଛପାବହି ଯେତେବେଳେ ଛୁଅଁ, ଛୁଅଁ ନୂଆ ମଣିଷର ଗ୍ରୀବ"—ପଦଟି ଦ୍ରଷ୍ଟବ୍ୟ ।

ଖଟିଆରେ ଶୋଇପଡ଼ି ସକାଳ ପାହିଲେ
ଆଉ ନ ଗୃଳିବା ଏକ ମାତ୍ର ଅଭିଳାଷ ।”

(ରମାକାନ୍ତ ରଥ)

ଜୀବନଠାରୁ ବିଶ୍ୱାସ ହରାଇବାର ଏକ ବୈଜ୍ଞାନିକ କାରଣ ଦେଇଛନ୍ତି ଫ୍ରଏଡ଼ । 'ଲିବିଡ଼ୋ'ର ଅବଦମିତ ଅବସ୍ଥାରୁ ଏଇ ପରିସ୍ଥିତିର ସୃଷ୍ଟି । ମନୁଷ୍ୟର ପ୍ରଧାନ ଇଚ୍ଛା ଯୌନାକାଂକ୍ଷା କୌଣସି କାରଣରୁ ମନ ଭିତରେ ଲୁଚି ହୋଇଗଲେ ତାହା ବିଚ୍ଛିନ୍ନତାବୋଧକୁ ରୂପାନ୍ତରିତ ହୋଇଯାଏ । (୧) ପରବର୍ତ୍ତୀ କାଳରେ ଫ୍ରଏଡ଼୍ ଏହାର ଅନ୍ୟ ଏକ କାରଣ ଆବିଷ୍କାର କରି କହିଲେ ଇଗୋ (Ego) ମଣିଷର ବାହ୍ୟ ଅନ୍ତରସତ୍ତାକୁ ପ୍ରତିକ୍ରିୟାଶୀଳ କରେ । ଶେଷରେ ସେ ଦୁଇଟି ମତକୁ ମିଶାଇ ଉଭୟଙ୍କର ଗୁରୁତ୍ୱ ଅଛି ବୋଲି ପ୍ରତିପାଦନ କଲେ । ମଣିଷର ଅନ୍ତଃସ୍ଥିତି ଓ ବାହ୍ୟସ୍ଥିତିର ଖିପଣତା ଏହାର କାରଣ । ଏହା ଏକ ଭାବପ୍ରବଣ ଆଘାତ, ଯାହା ମଣିଷର ଅଭିଜ୍ଞତା ଓ ଅନୁଭୂତିକୁ କରେ ଖେଦପ୍ରଦ । ଯନ୍ତ୍ରଣାରେ କାତର ମଣିଷର ମନ ଅସ୍ଥିରତା ଭିତରେ ଗତିକରି ବା ପ୍ରବୃତ୍ତିଦ୍ୱାରା ପରିଚାଳିତ ହୋଇ ହତାଶାକୁ ପ୍ରଶ୍ରୟ ଦିଏ । କମଳାକାନ୍ତଙ୍କ ନିଃସଙ୍ଗତାର ସ୍ୱରୂପ ପଛରେ ଏଇ ମନସ୍ତାତ୍ତ୍ୱିକ କାରଣ ବିଦ୍ୟମାନ । ପ୍ରକୃତିଗତ ଭାବେ ଏହାକୁ ଚାରି ଭାଗରେ ବିଭକ୍ତ କରାଯାଇ ପାରେ । —(କ) ହତାଶା, (ଖ) ଅତୀତକୁ ଭାବପ୍ରବଣ ଦୃଷ୍ଟିରେ ଖୋଜିବା (Nostalgia), (ଗ) ଭୟ, (ଘ) ନିର୍ଦ୍ଦୋଷତ୍ୱ ପ୍ରତିପାଦନର ପ୍ରୟାସ (Craving for innocence) । କମଳାକାନ୍ତଙ୍କ ଅନେକ କବିତାରେ ନିଃସଙ୍ଗତାର ଏଇସବୁ ଉପାଦାନ ଗ୍ରଥିତ । ପାଶ୍ଚାତ୍ୟ ଦେଶରେ ଯେଉଁ ବିଚ୍ଛିନ୍ନତା ଆସିଥିଲା, ଯୁଦ୍ଧ କାଳରେ ଆପାତତଃ ସେଥିରୁ ନିଷ୍କୃତି ପାଇଁ ଏକତ୍ର ହେବାର ପ୍ରୟୋଜନୀୟତା ଉପଲବ୍ଧ ହେଲା । ବାସ୍ତବ ଜଗତର ଆକର୍ଷଣ ହୁଏତ ମଣିଷକୁ ନିଃସଙ୍ଗତାକୁ ଭାଙ୍ଗିଦେଇ ତାର ଚେତନାକୁ କରିଥିଲା ଜାତୀୟ ଚେତନା ଭିତ୍ତିକ । କିନ୍ତୁ ଏ କାଳର ବ୍ୟାପ୍ତି ଅତି ସୀମିତ । କବି କମଳାକାନ୍ତଙ୍କ ଜୀବନରେ ନିଃସଙ୍ଗତା ଏପରି ବିପର୍ଯ୍ୟସ୍ତ ହୋଇନାହିଁ । ଏକ ଅଖଣ୍ଡ ନିରବଚ୍ଛିନ୍ନତା ତାଙ୍କର ନିଃସଙ୍ଗତା-ବୋଧକୁ କରିଛି ଗଭୀରରୁ ଗଭୀରତର । ଷଷ୍ଠ ଦଶକ ବେଳକୁ ଭାରତର, ଏପରିକି ଓଡ଼ିଶାର ସାମୂହିକ ପରିବର୍ତ୍ତନ କବିଙ୍କୁ ଏ ଦିଗରେ ଅନୁପ୍ରେରିତ କରିବା ସ୍ୱାଭାବିକ ।

---

୧ । Freud's. New Introductory Lectures on Psychoanalysis, Trans. W.J.H. Sprott, London, 1949, PP. 107—143.

କିନ୍ତୁ ମୋର ମନେହୁଏ; ଫ୍ରଏଡ଼ଙ୍କ ମନସ୍ତାତ୍ତ୍ୱିକ ଦୁର୍ଦ୍ଦଶା କମଳାକାନ୍ତଙ୍କ କାବ୍ୟଧାରାକୁ ପୂର୍ଣ୍ଣତଃ ପ୍ରଭାବିତ କରିନାହିଁ । ବରଂ ଆଧ୍ୟାତ୍ମିକ ଶୂନ୍ୟତା ତାଙ୍କ କବିତାରେ ଅଧିକ ଗଭୀର । ନିଃସଙ୍ଗତାର ଲକ୍ଷଣ ସମାନ, କିନ୍ତୁ କାରଣ ଭିନ୍ନ । କବିର ଅନୁଭବ—ଏ ସୃଷ୍ଟି ଶକ୍ତିମୟ, ଅଥଚ ସେଇ ଅଜ୍ଞେୟ ମହାଶକ୍ତିଠାରୁ ତାର ସମ୍ପର୍କ ବିଚ୍ଛିନ୍ନ । ଈଶ୍ୱରଙ୍କୁ ଫାଶି ଖୁଣ୍ଟରେ ଚଢ଼ାଇବାର ପ୍ରତିକ୍ରିୟା ବା ପ୍ରୟାସର ଜନ୍ମ ଏହିଠାରୁ । "ହେ ମୁହୂର୍ତ୍ତର ଈଶ୍ୱର, ହେ ପ୍ରତ୍ୟେକ/ ଲତା ବଲ୍ଲରୀର ସର୍ବହାର/ ଆଜି ତୁମର ଫାଶି ପାଇବାର ଦିନ : ପ୍ରତ୍ୟେକଙ୍କ ଘଣ୍ଟାରେ ବିତୃଷ୍ଣା ଏବଂ କୌତୂହଳର ରଜପଥ/ ଘୋଡ଼ାନାଚର/ଧୂଳିଝଡ଼; ଏବଂ/ ଲୋକାରଣ୍ୟ ପ୍ରବଞ୍ଚିତ ପୃଥ୍ୱୀ ।" (ଈଶ୍ୱରଙ୍କ ଫାଶି ପାଇବାର ଦିନ—'ଅନ୍ତତଃ ନିଷ୍କୃପ') । ସେ ରାଜାଧିରାଜ ଆଜି କବି ନିକଟରେ ଅମୁହାଁ ଦେଉଳର ଦିଅଁ, ମଣିଷର ଦୁଃଖକୁ ସାଉଁଟି ନେବାକୁ ସେ ସିଂହାସନରୁ ତଳକୁ ଓହ୍ଲାଇ ଆସନ୍ତି ନାହିଁ । ସେ ଏକ ନିଃସଙ୍ଗ, ମହିମ୍ନ ଉଚ୍ଚାରଣ । ତାଙ୍କର ତଥାକଥିତ ଶ୍ରଦ୍ଧାର ନବ ଜଣେ ଅବିଶ୍ୱସ୍ତ ଗୁପ୍ତଚର । ତେଣୁ କବି କହେ—'ପ୍ରତିଟି ଅଙ୍ଗୁଳିର କଣ୍ଟାରେ/ ଲେପି ହୋଇଥିବା ରକ୍ତକୁ/ ତୁମ ସର୍ବାଙ୍ଗରେ ବୋଳି ଦେବି ।' ଛାନ୍ଦୋଗ୍ୟ ଉପନିଷଦରେ ଶ୍ୱେତକେତୁଙ୍କୁ ପିତା ପଚାରିଛନ୍ତି— "କ'ଣ ସେହି ଜ୍ଞାନ, ଯାହାକୁ ଜାଣିଲେ ଆମେ ସବୁ ଜାଣି ପାରିବା ।" ଶ୍ୱେତକେତୁ କହିଛନ୍ତି—"ସେଇ ଜ୍ଞାନ, ସେଇ ଧାରଣାହିଁ ବିରାଟ ପୁରୁଷ ।" ତେଣୁ ସେଇ ଅବୋଧ ରହସ୍ୟମୟଙ୍କୁ ଜାଣିବାପାଇଁ ମଣିଷର କୌତୂହଳ; ଭୟ ଓ ବିସ୍ମୟରୁ ଆସେ ଅସହାୟ ଅନୁଭବ । ଦୁଃଖୀ ମଣିଷ ଚାହେଁ ସାନ୍ତ୍ୱନା ଟିକିଏ । ସେତିକି ନ ପାଇଲେ ଏକ ଅପମୃତ୍ୟୁମାନ ଶୂନ୍ୟତା ଭିତରେ ନିଜକୁ ହଜାଇ ଦେବାକୁ ଚେଷ୍ଟା କରେ; ଆକାଶ ଓ ପୃଥିବୀ ମଝିରେ ସେ ଅନୁଭବେ ଏକ ଦୋଳାୟିତ ବ୍ୟାକୁଳତା । ସ୍ୱାଧୀନତା, ବ୍ୟକ୍ତିକୈନ୍ଦ୍ରିକତା ମାନବୀୟ ପ୍ରକୃତିର ଆକର୍ଷଣ ହୋଇପାରେ, ମାତ୍ର ଏହା ଫଳରେ ଆସୁଥିବା ଦାୟିତ୍ୱବୋଧ ମଣିଷକୁ କରେ ଅସହାୟ । ଶ୍ରୀ ସୀତାକାନ୍ତ ମହାପାତ୍ର ଦେଇଛନ୍ତି ତାହାର ଏକ ଯୁକ୍ତିନିଷ୍ଠ ବର୍ଣ୍ଣନା । "...କିନ୍ତୁ ସ୍ୱାଧୀନତାର ଭୟ ମଣିଷ ମନରେ ଯେତିକି ଅଛି (କାରଣ ଏହା ଲଦିଦିଏ ଅସମ୍ଭବ ଦାୟିତ୍ୱର ବୋଝ ତା' ଛୋଟିଆ ମୁଣ୍ଡରେ) ତା' ଅପେକ୍ଷା ହୁଏତ ଅଧିକ ପରିମାଣରେ ଅଛି ସ୍ୱାତନ୍ତ୍ର୍ୟର ପିପାସା, ନିଜକୁ ଅଲଗା, ସ୍ୱୟଂସମ୍ପୂର୍ଣ୍ଣ, ବ୍ୟଷ୍ଟି ଓ ଆତ୍ମସର୍ବସ୍ୱ ବିଶ୍ୱକେନ୍ଦ୍ର, ସ୍ଥିତିକେନ୍ଦ୍ର ରୂପେ ଅନୁଭବ କରିବାର ଆକାଂକ୍ଷା । ଯୋଗ, ଓ ବିୟୋଗ କେନ୍ଦ୍ରାଭିମୁଖୀତ୍ୱ ଓ ବ୍ୟାପ୍ତି, ସମଷ୍ଟି ପିପାସା ଓ ବ୍ୟଷ୍ଟି କାମନା ଏହାଭଳି ଦ୍ୱିବିଧ ପରସ୍ପର ବିରୋଧୀ ଭାବଧାରା ମଧ୍ୟରେ ସବୁବେଳେ ସଂଘର୍ଷ ଲାଗିଥାଏ ।" (୧୩) ଏଇ ବ୍ୟଷ୍ଟି-

---

୧୩ । ମହାପାତ୍ର, ସୀତାକାନ୍ତ—'ନିଃସଙ୍ଗ ମଣିଷ', ୧୯୮୦, ପୃ. ୧୨୨-୨୩ ।

ମନୋବୃତ୍ତିରୁ ଆତ୍ମରକ୍ଷା ପାଇଁ ମଣିଷ ତିଆରି କରିଛି ସମାଜ, ଧର୍ମ । ବେଦନାର୍ତ୍ତ ମଣିଷ ନିଜର ବ୍ୟାକୁଳ ସ୍ଥିତିପାଇଁ ଗଢ଼ିଛି ଈଶ୍ୱର, ନିଜର ନିଃସଙ୍ଗତାରୁ ରକ୍ଷା ପାଇଁ ଚାହିଁଛି ତାଙ୍କର ଆଶ୍ଳେଷ । ସେ ପ୍ରାର୍ଥନା କରେ ନିଜ ପାଇଁ, ତା' ଧର୍ମ-ଅର୍ଥ-କାମ-ମୋକ୍ଷ ଯାହା ବି ହେଉ । କହୁଛି—"ମୋତେ ମନ୍ଦର ଶକ୍ତିର ବିହ୍ୱଳତାରୁ ମୁକ୍ତ ଦିଅ ।" (ନିଜସ୍ୱ ପ୍ରାର୍ଥନା—କବିତାର ମୁହଁ) । ବନ୍ଧୁ, ପରିଜନ, ଜ୍ଞାତି କୁଟୁମ୍ବ ପରିବେଷ୍ଟିତ ମଣିଷ ନିଜକୁ ସନ୍ତୁଷ୍ଟ କରିପାରୁନି । ତା'ର ଅପୂର୍ଣ୍ଣତା ଅତି ଭୟଙ୍କର । ସେ ଅନୁନୟ କରୁଛି ଈଶ୍ୱରଙ୍କୁ—"ମୋତେ ମୁକ୍ତ ଦିଅ ତୁଷାର ଅନ୍ଧାରରୁ /ମୋତେ ପ୍ରୀତି ଦିଅ ଭିତର ନିର୍ମମତାରୁ ! ! ମୋତେ ଶାନ୍ତି ଦିଅ ନିଜସ୍ୱ ପ୍ରାର୍ଥନାରୁ ।" (ନିଜସ୍ୱ ପ୍ରାର୍ଥନା )

ଧର୍ମ ହୋଇପାରେ ଅଫିମିଅଙ୍କର ନିଶା, କିନ୍ତୁ କି ବିସ୍ତୃତ ସେ ନିଶାର ପରିମଣ୍ଡଳ । ନଚେତ୍ ନୃତାତ୍ତ୍ୱିକ, ସମାଜ ତାତ୍ତ୍ୱିକ, ବୈଜ୍ଞାନିକ, ସାହିତ୍ୟିକ, ଦାର୍ଶନିକମାନେ କାହିଁକି ତାକୁ ନେଇ ଏତେ ଚର୍ବିତ ଚର୍ବଣ କରୁଥାଆନ୍ତେ ? ତେବେ ସେ ଯାହାହେଉ, ଅସଲ କଥା ହେଉଛି ଈଶ୍ୱରଙ୍କଠାରୁ ଆଜି ମଣିଷ ବିଚ୍ଛିନ୍ନ ହୋଇ ପଡ଼ିଛି । ତାର ମୁଖ୍ୟ କାରଣ ରେନେ ସାଁ ଓ ବୈଜ୍ଞାନିକ ଚିନ୍ତାର ଅଭୂତପୂର୍ବ ବିସ୍ଫୋରଣ । ଗୋଟାଏ ଆଧ୍ୟାତ୍ମିକ ହତାଶା, ଯାହାକୁ କମଳାକାନ୍ତ ହୁଏତ ଆଣିଛନ୍ତି ସୋରେନ୍ କିଅରକେଗାର୍ଡ଼ଙ୍କ ଭୟଙ୍କର ଧାରଣାରୁ, ତାହା ପୁଣି ହୁଏତ ଆମ ଭଳି ସ୍ୱଳ୍ପଟି ମଣିଷ ନିକଟରେ ଦୃଷ୍ଟିଗୋଚର ହୁଏ । ଆମ ଜୀବନକୁ ଏକ ଉନ୍ନତ ପର୍ଯ୍ୟାୟରେ ପହଞ୍ଚାଇ ନ ପାରିବାର କାରଣ ଈଶ୍ୱର ବିଶ୍ୱାସର ଅଭାବ । କିଅରକେଗାର୍ଡ଼ ପରିଷ୍କାର ଭାବରେ ଏ କଥାଟିକୁ ବୁଝାଇଛନ୍ତି—"Every human existence which is not conscious of itself as spirit, or conscious of itself before God as spirit, every human existence which is not thus grounded transparently in God but obscurely (state, union etc.) or in obscurity about itself takes its faculties merely as creative powers, without in a deeper sense being conscious whence it has them, which regards itself as an inexplicable something, which is to be understood from without - every such existence, however intensely it enjoys

life aesthetically—every such existence is afterall despair." (୧୪)

କିଅରକେଗାର୍ଡ଼ ଜଣେ ଅସ୍ତିତ୍ୱବାଦୀ । ଅସ୍ତିତ୍ୱବାଦୀମାନଙ୍କ ସମ୍ପର୍କରେ ଏକ ଭୁଲ୍ ଧାରଣା ପ୍ରଚଳିତ ଅଛି ଯେ ସେମାନେ କେବଳ ନିଃସଙ୍ଗତାର ପଥପ୍ରବର୍ତ୍ତକ ହୋଇଥାଆନ୍ତି । ମାତ୍ର କଥାଟି ଠିକ୍ ନୁହେଁ । ଅସ୍ତିତ୍ୱବାଦୀ ଯଦି ସମସ୍ତଙ୍କଠାରୁ ବିଚ୍ଛିନ୍ନ, ତେବେ ମଣିଷ ପାଇଁ ସେ ଏତେ ଘାରି ହୁଏ କାହିଁକି ? କାରଣ ଅସ୍ତିତ୍ୱବାଦୀ ହେଉଛି ଦୋମୁଣ୍ଡିଆ ମଣିଷଟିଏ । କିଅରକେଗାର୍ଡ଼ ତାଙ୍କ ଜର୍ଣ୍ଣାଲରେ କହୁଛନ୍ତି—"ମୁଁ ଗୋଟିଏ ଜାନସ୍ (ଦୁଇଟି ମୁହଁ ଥିବା ରୋମୀୟ ଦେବତା) । ମୁଁ ଗୋଟିଏ ମୁହଁରେ ହସେ, ଅନ୍ୟଟିରେ କାନ୍ଦେ ।" (୧୫) କମଳାକାନ୍ତଙ୍କ କବିତାରେ କିଅରକେଗାର୍ଡ଼ଙ୍କ ଛାପ ଅତି ସ୍ପଷ୍ଟ । "ଦୋ ମୁଣ୍ଡିଆ ସାପ. କେଞ୍ଚୁଆ ପର/ମନ, ପେଚା ପରି ବିବେକ, ଛଞ୍ଚାଣ/ପରି ଇଚ୍ଛା ଓ କର୍କଟ ପରି ସ୍ୱପ୍ନ/ କୁମ୍ଭୀର ପରି ସ୍ଥିରତା/ କମିଟ ବଣା ବାନ୍ଧିବ ଦେଖ ।" ( ମଣିଷ— ସ୍ରୋତର ନାମ ରତି) । ଏ ହେଉଛି କବିର ଅଖଣ୍ଡ ସ୍ୱାଧୀନତା । ନିଜକୁ ବୁଝିବା ଓ ନିଜ ବୁଝାମଣାରୁ ସତ୍ୟକୁ ଠାବ କରିବା ପାଇଁ ଏହା ତାଙ୍କର ନିରପେକ୍ଷ ଦୃଷ୍ଟି । ନିଥିଙ୍ଗ୍‌ନେସ୍ ବା ଈଶ୍ୱରଙ୍କୁ ସାକ୍ଷାତ କରିବାକୁ ଯେଉଁ କଠୋର ନିଃସଙ୍ଗତା ଦରକାର, ତାକୁ ଅସ୍ୱୀକାର କରି କମଳାକାନ୍ତ ବରଣ କରିଛନ୍ତି ନିଦାରୁଣ ନିଃସଙ୍ଗତା । ଯେପରି—"ଏଇନେ ମୁଁ ଆଙ୍ଗୁଳି ପଡାଇ ଦଉଚି ବର୍ଷାକୁ / ଆଖିରେ ଶୋଷି ନଉଚି/ଶରତ ଋତୁର ନିର୍ଜନ ଏକାକୀ ସନ୍ଧ୍ୟାପକୁ/ ଯେ ମୁଁ କ୍ଷମା ଦେଇନାହେଁ ନିଜକୁ,/ଚିହ୍ନି ଜାଣେ ନା ନିଜ ଆତୁର, ଆଉଟୁ ପାଉଟୁ/ ଚଉଦ ବ୍ରହ୍ମାଣ୍ଡର ଛେଉଣ୍ଡ ବ୍ରହ୍ମକୁ ।" (ମୋ ଛଡ଼ା ପ୍ରତିଟି ମଣିଷ— ଗୀତ ଗା'ନା ରେ ପକ୍ଷୀ) । ଈଶ୍ୱରଙ୍କୁ ମଣିଷ ବୁଝି ପାରି ନାହିଁ, ତାଙ୍କର ଅବର୍ତ୍ତିର ବିରୁଦ୍ଧରେ ମଣିଷ ସ୍ୱର ଉଠାଇଛି, ମନ ଇଚ୍ଛା ଗାଳି ଦେଇଛି । ଶେଷକୁ ନିର୍ଗୁଣ ହୋଇ ସାଜିଛି ବିଦ୍ରୋହୀ । ଭଗବାନ ମୃତ ବୋଲି ଘୋଷଣା କରି ବିଦ୍ରୋହୀ ମଣିଷ ତାଙ୍କୁ କ୍ଷମା କରିଛି । ଷ୍ଟେଣ୍ଡାଲ କହୁଛନ୍ତି—"The only excuse of God is that he does not exist. ।"

ଜୀବନ ଓ ଦର୍ଶନ ମଧ୍ୟରେ ବ୍ୟବଧାନ ନ ରଖିବା କମଳାକାନ୍ତଙ୍କ ପ୍ରଧାନ ଉଦ୍ଦେଶ୍ୟ । ନିଜ ସମସ୍ତ ଓ ନିଜ ଜୀବନର ସମସ୍ୟା ସେଥିପାଇଁ ଏତେ ଦୁଃସ୍ପୃଷ୍ଣଣୀ

୧୪ । Edited, The Living Thoughts of Kierkegard, New York, David Mcaky, 1952, P. 154-55.

୧୫ । ମହାନ୍ତି, ଶରତ କୁମାର—ଅସ୍ତିତ୍ୱବାଦର ମର୍ମକଥା— ପୃ. ୬୪ ।

ଘଟେନ ତାଙ୍କ କବିତାରେ ପ୍ରକାଶିତ । ନିଜର ଆଦର୍ଶକୁ ପ୍ରମାଣିତ କରିବାକୁ ପ୍ରାଣମୂର୍ଚ୍ଛା ଲଢେଇ କରୁଥିବା କବି ସିଏ । ଏହାତ ଖାଣ୍ଟି କବିର ଲକ୍ଷଣ, ପ୍ରତିବାଦ ଓ ବିଦ୍ରୋହରେ ସ୍ୱର୍ଗ ଗଲେ ଆଦର୍ଶର ତାସ ଘର ଭୁଷୁଡ଼ି ଯାଏ । ମାତ୍ର ଆଦର୍ଶ ପାଇଁ ଆଦର୍ଶ ନୁହେଁ, ବରଂ ଅନୁଭୂତିକୁ ନେଇ ତାଙ୍କ ଆଦର୍ଶର ଇମାରତ୍ ଗଢ଼ା । ନିଜର ଏଇ ସ୍ୱାର୍ଥରକ୍ଷା ଲାଗି ଏଜାଗାଗୁଡ଼ିକୁ ସେ ବାଛି ନେଇଛନ୍ତି । ପ୍ରତିଟି ମଣିଷର ନିଜସ୍ୱ ଦେଖିବା ଭଙ୍ଗୀ ଅଛି । ତେଣୁ କମଳାକାନ୍ତଙ୍କ ଦେଖିବା ଭଙ୍ଗୀ ସହ ଅନ୍ୟମାନେ ଏକମତ ନ ହୋଇ ପାରନ୍ତି । କିନ୍ତୁ ଜୀବନକୁ ଦେଖିବାର/ବୁଝିବାର ଆନ୍ତରିକତା ତାଙ୍କ ପାଇଁ/ଆମ ପାଇଁ ନିଶ୍ଚିତଭାବେ ଏକ ବଡ଼ କଥା ।

କମଳାକାନ୍ତ ଜାଣନ୍ତି ସେ ଅନ୍ୟ ଏକ ଦେଶର ବାସିନ୍ଦା । ଏପରି ଭାବିବାର ପାଞ୍ଚଟି କାରଣ ଅଛି । ଯାହାକୁ ସମାଜ ବିଜ୍ଞାନୀ ସିମାନ୍ ସମର୍ଥନ କରନ୍ତି ! (୧) ମଣିଷ ନିଜ ଶକ୍ତି ବଳରେ କିଛି କରି ପାରିବ ନାହିଁ ବୋଲି ଯେତେବେଳେ ଧାରଣା ହୁଏ, (୨) ଜୀବନର ଅର୍ଥହୀନତାର ଅନୁଭବ, (୩) ନିଜ ଜୀବନର କୌଣସି ଆଚରଣ ବିଧି ନାହିଁ ବୋଲି ଅନୁଭବ କରିବା, (୪) ନିଃସଙ୍ଗତା, (୫) ଆତ୍ମବିଚ୍ଛେଦ । (୧୬) କମଳାକାନ୍ତଙ୍କ ରଚନାରେ ଏହି ପାଞ୍ଚୋଟିଯାକ ଆତ୍ମୀୟତାର ସୂତ୍ରରେ ବନ୍ଧା । ବେଳେବେଳେ କାରୁଣ୍ୟର ଅନୁଭୂତି କମଳାକାନ୍ତଙ୍କୁ କରି ଦେଇଛି ନିଶ୍ଚେଷ୍ଟ । "ମୋ ମା ପ୍ରତି" କବିତା ତାର ଜ୍ୱଳନ୍ତ ଦୃଷ୍ଟାନ୍ତ—"ମା' ଲୋ ! ତୁ ପଚା ଭଜାଇଲୁ ଗାଁ ଦାଣ୍ଡ ହସରେ ଉଡୁରି/ ମୋ ଜର ଜନମ ଦିନ ? କେଉଁ ଗଲ୍ପ ହଜିଲାର ପୁରୁଣା କାହାଣୀ / ଏବେ ମୁଁ କଉଡ଼ି ଗଣେ ଜୁଆ ଖେଳେ /ରୂପଜୀବୀ ଶୈଳେ/ ଭଙ୍ଗାଏ ତୋଅରି ପୁଣ୍ୟ ?" (ମୋ ମା'ପ୍ରତି - "କବିତାର ମୁହଁ") । ପରମ ଦୁଃଖର ସାନ୍ନିଧରେ କାବ୍ୟନାୟକ କହି ପକାଏ ଜୀବନଠାରୁ ନିଭୃତ ମରଣ ମହାସତ୍ୟ । ପୁଣି ଏ ମରଣଠାରୁ ଆହୁରି ଏକ ପରମ ସତ୍ୟ ହେଉଛି ଲୁହ ନିଗାଡ଼ିବା । ଦୁଃଖର ଚଦର ଘୋଡ଼ି ହୋଇ ବସିଲାବେଳେ କାବ୍ୟନାୟକର ସମସ୍ତ ପ୍ରଶ୍ନ ଫେରି ଆସୁଛି ତୀକ୍ଷ୍ଣ ବୁମେରାଂ ଭଳି ନିଜ ପାଖକୁ । ଅବୋଲକରା ସମୟ ଓ ମଣିଷ ଭିତରେ ନିଃସଙ୍ଗତା ନିବିଡ଼ ହେଉଥିବାର ଲକ୍ଷ୍ୟ କରନ୍ତି ସେ । ମନେହୁଏ, ଈଶ୍ୱରଙ୍କଠାରୁ ଖସି ଆସିବା ଦିନୁ ତା'ର ଆଚରଣରେ ନାହିଁ ନିୟନ୍ତ୍ରଣ, ନା'ହିଁ କିଛି ବିଧି ବିଧାନ ।

ହେଗେଲ, ମାର୍କସ, ଫ୍ରୋମ୍—ପ୍ରତ୍ୟେକେ ମଣିଷ ଜୀବନର ନିଃସଙ୍ଗତାକୁ ମାପିଛନ୍ତି । ହେଗେଲଙ୍କ ମତରେ, ଏଇ ପୃଥିବୀରେ ଥାଇ ମଣିଷ ଈଶ୍ୱରଙ୍କୁ ପାଇ ପାରେ; କିନ୍ତୁ ଧରି ରଖି ପାରେ ନାହିଁ ବୋଲି ମନରେ ତା'ର ବିଚ୍ଛିନ୍ନତା ଜାଗେ ।

---

୧୬ । ମହାନ୍ତି, ଶରତ କୁମାର—ଅସ୍ତିତ୍ୱବାଦର ମର୍ମକଥା, ପୃ-୪୧୫ ।

ଫ୍ଲେଟୋଙ୍କ ଚିନ୍ତାଧାରାର ଏହା ଆଉ ଟିକଏ ମାର୍ଜିତ ରୂପ ଦେଇଛନ୍ତି । ପ୍ଲେଟୋ କହୁଥିଲେ, ମଣିଷର ଆତ୍ମା ତାର ନିଜ ଗୃହରେ ନିର୍ବାସିତ । ହେଗେଲଙ୍କ ବିଚ୍ଛିନ୍ନ ମଣିଷ ନିଜକୁ ମନେକରେ ଜଣେ ଅଜଣା ବିଦେଶୀ । ତାଙ୍କ ବିଚାରରେ ସାମାଜିକ ଓ ସାଂସ୍କୃତିକ ଅନୁଷ୍ଠାନ ବିଷୟରେ ଚିନ୍ତା କରୁଥିବା ମଣିଷଟି ଜଣାଇଦିଏ ଯେ ସେ ତା' ଭିତରେ ନାହିଁ । କିନ୍ତୁ ମାର୍କସ୍, ହେଗେଲଙ୍କଠାରୁ ଟିକଏ ନୂଆ ଦିଗ୍‌ଦର୍ଶନ ଦେଇଛନ୍ତି । ତାଙ୍କ ମତରେ ମୁଖ୍ୟତଃ ନିଃସଙ୍ଗତାର ଚାରୋଟି କାରଣ ଅଛି । ତାହା ହେଉଛି—(୧) କାର୍ଯ୍ୟ ପ୍ରଣାଳୀଠାରୁ ବିଚ୍ଛିନ୍ନ ଅବବୋଧ (alienation from the process of work), (୨) ଶ୍ରମୋପଲବ୍ଧ ଉତ୍ପାଦନଠାରୁ ବିଚ୍ଛିନ୍ନ ଅବବୋଧ (alienation from the products of labour), (୩) ମନୁଷ୍ୟର ନିଜସ୍ୱ ସତ୍ତାଠାରୁ ବିଚ୍ଛିନ୍ନ ଅବବୋଧ, (alienation of the person from himself), (୪) ଅନ୍ୟମାନଙ୍କଠାରୁ ବିଚ୍ଛିନ୍ନ ଅବବୋଧ (alienation of the person from others) । ସେ କହନ୍ତି—ମଣିଷ ମଣିଷ ବିଚ୍ଛିନ୍ନ ହୁଏ ଯେତେବେଳେ, ଯେତେବେଳେ ସେ ଅସଲ ମାନବୀୟ ସ୍ୱରୂପକୁ ଅନୁସରଣ କରେ ନାହିଁ । ପରେ ଫ୍ରୋମ୍ ବିଚ୍ଛିନ୍ନତାକୁ ଗୋଟାଏ ବ୍ୟାଧି, ଗୋଟାଏ ବିଫଳତା, ଗୋଟାଏ ଅନୁଭୂତି କହି ତାର ବ୍ୟାପକତା ଦେଖାଇ ଦେଇଛନ୍ତି । ପ୍ରକୃତିଠାରୁ, ବସ୍ତୁଠାରୁ, ଅନ୍ୟ ମଣିଷଠାରୁ, ଏପରି କି ନିଜଠାରୁ ସେ ପୃଥକ୍ । ପ୍ରକୃତି କୋଳକୁ ଫେରିଗଲେ ହୁଏତ ତାର ଏ ବିଚ୍ଛିନ୍ନତାର ଜ୍ୱାଳା କମି ଯାଆନ୍ତା ! କିନ୍ତୁ ଆଉ ପ୍ରକୃତି ସହିତ ମିଶିଯିବା ତା ପକ୍ଷରେ ସମ୍ପୂର୍ଣ୍ଣ ଅସମ୍ଭବ । ସମଷ୍ଟି ଭିତରୁ ଖସି ଆସି ଯେତେବେଳେ ବ୍ୟକ୍ତିଟି ଏକକ ହୋଇଯାଏ ସେତେବେଳେ ତା'ର ବ୍ୟକ୍ତି ସ୍ୱାଧୀନତା ବଡ଼ ହୋଇ ଦେଖାଦିଏ ଓ ଏହାହିଁ ପରେ ପରେ ତା' ନିଃସଙ୍ଗତାକୁ ନିଗୂଢ଼ କରେ । ଜଣେ ଆଧୁନିକ ମଣିଷ ହିସାବରେ ଶ୍ରୀ ଲେଙ୍କାଙ୍କଠାରେ ଏ ସଚେତନତା ଘାରିଛି । ପୁଣି ମଣିଷ ନିଜକୁ ଭୁଲି ତାର ଆନ୍ତରସତ୍ତାକୁ ଅବଜ୍ଞା କରି ସମାଜ ଓ ଜଗତ ସହ ମିଶିବାକୁ ଚାହିଁଲେ ସେଥିରୁ ଅନ୍ୟ ଏକ ବିଚ୍ଛିନ୍ନତା ଜନ୍ମ ନେବାର ସମ୍ଭାବନାକୁ ଏଡ଼ାଇ ଦେଇ ହେବନି ବୋଲି ଫ୍ରୋମ୍ କହନ୍ତି । କିନ୍ତୁ କମଳାକାନ୍ତଙ୍କ କାବ୍ୟିକ ଜୀବନରେ ଏ ସମସ୍ୟାଟି ଦେଖା ଦେଇ ନାହିଁ । କୌଣସି ପରିସ୍ଥିତିରେ ସେ ନିଜ ସତ୍ତା ପ୍ରତି ବିମୁଖ ହୋଇ ପାରି ନାହାନ୍ତି; ଜୀବନ ପ୍ରତି କବିଙ୍କର ଏହା ଏକ ଅନମନୀୟ ବିଶ୍ୱସ୍ତତା । ସବୁ ପ୍ରକାର ଷଡ଼ଯନ୍ତ୍ର, ଦୁଃଖ, ଦମନଲୀଳା ଭିତରେ ସେ ନିଜର ସ୍ୱାଧୀନତାକୁ ତୀବ୍ର ଭାବେ ଜାହିର୍ କରନ୍ତି । ବିରୁଦ୍ଧ ଚିନ୍ତା ଭିତରେ, ଦ୍ୱନ୍ଦ୍ୱ ଭିତରେ ବଞ୍ଚିବା ଶ୍ରୀ ଲେଙ୍କାଙ୍କ କାବ୍ୟିକ ଜୀବନର ଏକ ସଫଳତା । ନିଜ ଭାଗ୍ୟକୁ ନିଜେ ଗଢ଼ିପାରିବାର ଦୁର୍ନିବାର

ସଂକଳ୍ପ ତାଙ୍କ ନିଃସଙ୍ଗତାର ଗମ୍ଭୀରଆ ସ୍ଥିତିକୁ ଉନ୍ମୋଚନ କରେ । ସେଥିପାଇଁ କେଉଁ ପ୍ରବୃତ୍ତି, କେଉଁ ଭାବନାକୁ ସେ ଦୀର୍ଘକାଳ ଧରି ରଖିବା ସପକ୍ଷରେ ନ ଥାନ୍ତି ।

ସନ୍ଦିଗ୍ଧତାର ଭୂମିକା ଜୀବନରେ ବଡ଼ ଗୁରୁତ୍ୱପୂର୍ଣ୍ଣ । କାରଣ ସତ୍ୟର ନିକଟତମ ଅବସ୍ଥା ପ୍ରାପ୍ତ ହବାକୁ ହେଲେ ସନ୍ଦିଗ୍ଧତା ଗୋଟେ ଗୋଟେ ତନ୍ଦ୍ର- କାଳିକତାକୁ ଅତିକ୍ରମ କରିବାର ସାହସ ଯୋଗାଏ । ଅଥଚ ଏହି ସନ୍ଦିଗ୍ଧତା ଅନେକ ସମୟରେ ଜୀବନକୁ କାବୁ କରି ଦିଏ । କାବ୍ୟନାୟକକୁ ଆସନ୍ନ ବିପଦ ଭିତରକୁ ଘେନିଯାଏ । "ଆଜି ତୁମମାନଙ୍କ ପଦେ କାଛୁ/ କହିଲବେଳେ ଶବ୍ଦଟିଏ ମିଳେ ନାହିଁ ।" (ତୁମେ ଯେଉଁମାନେ ଆସୁଚ—ଗୀତ ଗା' ନାରେ ପକ୍ଷୀ) କିନ୍ତୁ କବି ଏଇ ଶବ୍ଦ ଲୋଡ଼ାର ଅସହାୟତାକୁ କାଟି ଅବଲମ୍ବେ ଘୋଷଣା କରନ୍ତି—"ମୁଁ ବଞ୍ଚିଚ ?/ କିଏ କହିବ ମୁଁ ଭୁଲି ଯାଇଚ/ ମନ୍ଦର ଅର୍ଥ, ପୁଣ୍ୟର ନିଃସଙ୍କୋଚ ସରଳତା ?/ ବଞ୍ଚିବାର ମାନେଇ ଚୂଆ ଚନ୍ଦନ ବସ୍ତ୍ର ଗାଲିଚ୍ଚରେ/ ବାନ୍ତି ଉଚ୍ଛାଳ ହେଇ ଗଡ଼ିବା ଓ ଗଡ଼ାଇବା/ ଉବଡୀଖା ଫିକା ସ୍ୱପ୍ନର ଧୂର୍ତ୍ତତା ।" (କେମିତି ବଞ୍ଚିଚ ମୁଁ—ଗୀତ ଗା' ନା ରେ ପକ୍ଷୀ) କବିର ଏ ନିଃସଙ୍ଗତା ଜୀବନକୁ ଜାବୁଡ଼ି ଧରିବାର ପ୍ରମାଣ । ଚୂଆ ଚନ୍ଦନ ବସ୍ତ୍ର ଗାଲିଚ୍ଚରେ ବାନ୍ତି ଉଚ୍ଛାଳ ହୋଇ ଗଡ଼ିବା ଭିତରେ ଆମେ ଦେଖୁ ଚିନ୍ତାଧାରାର ବ୍ୟବଧାନ । କିନ୍ତୁ ବ୍ୟବଧାନ ଖରାପ କଥା ନୁହେଁ । ତାହାର ମଧ୍ୟ ଗୋଟାଏ ଭଲ ଦିଗ ଅଛି । ଜଣେ କବିଙ୍କୁ ଚିହ୍ନିବାକୁ ହେଲେ କବି ଓ ତାହାର ଗ୍ରାହକ ମଧ୍ୟରେ ବ୍ୟବଧାନ ଆବଶ୍ୟକ । ନଚେତ୍ ଦୈନନ୍ଦିନ ପରିଚୟ ଭିତରୁ ତାର ବ୍ୟକ୍ତି ସ୍ୱରୂପକୁ ଚିହ୍ନିବା କଷ୍ଟକର ।

ପ୍ରାତ୍ୟହିକ ଜୀବନର ବିଭିନ୍ନ ପର୍ଯ୍ୟାୟରେ ଭେଟୁଥିବା କବିଟିକୁ ତାହାକୁ ବିଚାର କରିବା ଅନେକ ସମୟରେ ସହଜ ନୁହେଁ । କାରଣ କବିଟିକୁ ଜାଣିଛୁ ବୋଲି ଧରି ନେବା ଦ୍ୱାରା ଆମର ପୂର୍ବ ମୂଲ୍ୟବୋଧ ଓ ବିଶ୍ୱାସଗୁଡ଼ିକ ସୈଦ୍ଧାନ୍ତିକ ରୂପ ପରିଗ୍ରହ କରିଥାଏ । କିନ୍ତୁ କବି ଭିତରେ ଥିବା ଭାବମୂର୍ତ୍ତିଟି ତାର ପ୍ରକୃତ ରୂପ ଏବଂ ସେହି ରୂପଟିକୁ ହଠାତ୍ କବିତା ଭିତରେ ଦେଖିବା ମାତ୍ରକେ ପାଠକ କବି-ବ୍ୟକ୍ତିତ୍ୱ ଓ ବହିଃ-ବ୍ୟକ୍ତିତ୍ୱ ମଧ୍ୟରେ ଅନୁଭବ କରେ ବ୍ୟବଧାନର ଦୂରତ୍ୱ । ଶ୍ରୀ ଲେଙ୍କାଙ୍କ ଭିତରେ ଥିବା ଏଇ ଦ୍ୱୈତ ବ୍ୟକ୍ତିତ୍ୱର ସ୍ପଷ୍ଟତା ତାଙ୍କ ନିଃସଙ୍ଗତା- ବୋଧକୁ ଖୁବ୍ ଶାଣିତ କରି ଦେଇଛି । ନିଃସଙ୍ଗତା ଦୂର କରିବା ପାଇଁ ହେଗେଲ ସାମାଜିକ ବାସ୍ତବତା ଆଡ଼କୁ ଟାଣି ହୋଇଯିବାକୁ ପସନ୍ଦ କଲାବେଳେ ମାର୍କସ ଓ ଫ୍ରୋମ୍ ସମାଜ ସହ ମଣିଷର ମିଳନକୁ ଗୁରୁତ୍ୱ ଦେଇ ନାହାନ୍ତି । ଫ୍ରୋମ୍ ସୂଚେଇ ଦିଅନ୍ତି ଯେ, ସମାଜ ଭିତରେ ଆପାତତଃ ମିଶି ଯାଉଥିବା ମଣିଷଟି ନିଃସଙ୍ଗ ମଣିଷ ଭିନ୍ନ ଆଉ କିଛି ନୁହେଁ । ସାର୍ତ୍ରେ ଏ କଥାଟିକୁ ମଧ୍ୟ ସମର୍ଥନ

କରନ୍ତି । ତାଙ୍କ ମତରେ—"My original fall is the existence of other. ।" ଅନ୍ୟମାନଙ୍କ ସ୍ଥିତି ଆଗରେ ଆମର ଅଧୋଗତି ଅନିବାର୍ଯ୍ୟ । ଅନ୍ୟର ସ୍ୱାଧୀନତା ଆଗରେ ଲବଣ୍ଟି/ ମଣିଷଟି ଗୋଟାଏ ଅସହାୟତାର / ଦଣ୍ଡନୀୟତାର ପ୍ରତିରୂପ ମାତ୍ର । ସମାଜରେ ଅନ୍ୟମାନଙ୍କ ପରି ହେବାର ଦୁରନ୍ତ ପ୍ରବଣତା ହେତୁ ଅସହାୟତା ତାର ବ୍ୟକ୍ତିତ୍ୱକୁ ବ୍ୟାକୁଳ ଅନୁତାପ ପର୍ଯ୍ୟନ୍ତ ଘେନିଯାଏ । ଅନ୍ୟମାନଙ୍କ ପରି ବଙ୍ଗ୍‌ଳୋ, ସମୁଦ୍ରର ପଠା, ଫଗୁଣ ବଂଶୀର ଆହ୍ୱାନ ଭିତରେ ସାମିଲ୍ ହୋଇଯିବାକୁ ଇଚ୍ଛା କରୁଥିବା କାବ୍ୟ ପୁରୁଷର ମନ ବାଧାକ୍ତ ହୋଇଉଠେ ।

> "ମୋତେ ସବୁ ଶୂନ୍‌ଶାନ୍ ଲାଗେ ଏଇ
> ବଙ୍ଗ୍‌ଳୋ, ସମୁଦ୍ରର ପଠା, ଫୁଲ୍‌ଟବ୍, ଓ ପାର୍କର ଅର୍ଚ୍ଚନା ।
> ଫଗୁଣର ବଂଶୀ ଡାକ, ଶରତର ଜହ୍ନ, ଓ
> ଯେତେ ସବୁ ଶ୍ରାବଣର ଅବିରତ ବର୍ଷାର ଘୁଙ୍ଗୁର
> ମୋତେ ଲାଗେ ବିଷ ଭଳି ! ଓ ମୋର
> ସ୍ମୃତି ହବୁ ଜଣାଯାନ୍ତି ସପ୍ତଫେଣୀ କଣ୍ଠା ଭଳି ।"

( ଜଣେ ଅବିବାହିତା ଯୁବତୀଙ୍କ ଡାଏରୀରୁ କିଛିଟା—ସ୍ମରଣ ବିସ୍ମରଣ )

ମାର୍କସ ଓ ହେଗେଲଙ୍କ ବିଶ୍ୱରର କିଛିଟା ପ୍ରତିଫଳନ ଘଟିଛି ଦାର୍ଶନିକ ଟିଲିକଙ୍କ ଉପରେ । ତାଙ୍କ ମତରେ, ମଣିଷର ସ୍ଥିତିହିଁ ଏକ ନିଃସଙ୍ଗ ସ୍ଥିତି । ( The state of existence is the state of estrangement— Systematic Theology—P. P. 44) । ସେ ନିଃସଙ୍ଗତାର ଯେଉଁ ତିନୋଟି କାରଣ ଦର୍ଶାଇଛନ୍ତି ତାହା ହେଲା—( ୧ ) କାମାସକ୍ତି ( Concupiscence ), ( ୨ ) ଅବିଶ୍ୱାସ, ( ୩ ) ମଣିଷ ନିଜର ସମୀମତ୍ୱକୁ ଅସ୍ୱୀକାର କରି ନିଜକୁ ଦେବତା ଆସନକୁ ଉଠାଇ ନେବା ( hubris ) । ଏହି ଦୃଷ୍ଟିକୋଣରୁ ସେ ନିଃସଙ୍ଗତାକୁ ଅତିକ୍ରମ କରିଯିବାର ଯେଉଁ ସ୍ୱପ୍ନ ଦେଖିଛନ୍ତି, ତାହା ସତ୍ୟ ହୋଇପାରେ; କିନ୍ତୁ ନିଃସଙ୍ଗତାର ସବୁ ସମସ୍ୟାକୁ ସେ ବିଶ୍ଳେଷ କରି ନାହାନ୍ତି ! କେବଳ ଭଗବାନ ବା ଯୀଶୁଙ୍କ କରୁଣା ବଳରେ ମଣିଷର ନିଃସଙ୍ଗତା ଦୂର ହୋଇଯିବା କଥାଟିକୁ ଶ୍ରୀ ଲେଙ୍କା ବାସ୍ତବ ବୋଲି ମନେ କରନ୍ତି । ସବୁ ମନ୍ଦର ମନ୍ଦାକାନ୍ତା ଛନ୍ଦରେ ଆତଯାତ ହେଉଥିବା ମଣିଷକୁ ଈଶ୍ୱର ନିଃସଙ୍ଗତାର କଠୋର ଯନ୍ତ୍ରଣାରୁ ରକ୍ଷା କରି ପାରିବେ ବୋଲି ଶ୍ରୀ ଲେଙ୍କା ଅନ୍ତତଃ ବିଶ୍ୱାସ କରି ପାରିନାହାନ୍ତି । ମନ୍ଦ ତାଙ୍କ ଦୃଷ୍ଟିରେ ଅନ୍ୟତମ ମୂଲ୍ୟବାନ ଉପାଦାନ । ଈଶ୍ୱରଙ୍କଠାରୁ ବିଚ୍ଛିନ୍ନ ହେବା କାରଣରୁ ତାଙ୍କ ନିଃସଙ୍ଗତାବୋଧର ଉଦ୍‌ଗମନ ହେବା କଥା

ସେ ଆଦୌ ସ୍ୱୀକାର କରିପାରିବେ ନାହିଁ । ତାହା ବରଂ ବୋଦ୍‌ଲେୟାରଙ୍କ ଯନ୍ତ୍ରଣାଦାୟକ ନିଃସଙ୍ଗତାବୋଧ (anguished separation) ଓ ଷ୍ଟିଫେନ ସ୍ପେଣ୍ଡରଙ୍କ (excessive inwardness)ର ଅଧିକ ନିକଟବର୍ତ୍ତୀ । ସ୍ପେଣ୍ଡରଙ୍କ ମତରେ ବାହାର ଜଗତର ବାସ୍ତବ ପୃଷ୍ଠଭୂମିରେ ବ୍ୟାପ୍ତ ହେବାଠାରୁ କବିମାନେ ନିଜ ମଧ୍ୟରେ ନିଜକୁ ହଜେଇ ଦେବାକୁ ଚାହାଁନ୍ତି "Poets then prefer losing themselves within themselves to losing themselves outside themselves." (୧୭) ହାଇଡ୍‌ଗାର ଏହାକୁ "throwness-in-to-being" ବୋଲି କହନ୍ତି ।

ଦୁର୍ବଳ ମୁହୂର୍ତ୍ତରେ ବିଷଣ୍ଣତାର ଆକର୍ଷଣ କେତେ ପ୍ରବଳ ଶ୍ରୀ ଲେଙ୍କା ତାଙ୍କର କେତେକ କବିତାରେ ଅନୁଭବ କରିବା ଫଳରେ ନିଃସଙ୍ଗତାବୋଧର ଦର୍ଶନ ପରିଷ୍କାର ହୋଇଯାଇଛି ।

> "ତେଣୁ ଆଜ ଭୂନତାନି ସ୍ମୃତିରେ ଜଙ୍ଗରେ
> ଯନ୍ତ୍ରଣାର ମଥା ରଖି ଆପୁଣ୍ଠିଲେ କ୍ଷତ କିଏ ?"
>
> ( ବର୍ତ୍ତମାନର ଆର୍ଶିରେ—ଅନ୍ତତଃ କିଛୁ ପ )

ଜୀବନ ପ୍ରତି କବିଙ୍କର ଏହା ଏକ ଟ୍ରାଜିକ୍ ଦୃଷ୍ଟିକୋଣ । ସେଇ ଟ୍ରାଜିକ୍ ଦୃଷ୍ଟି ଟି ତାଙ୍କର ଦୁଃଖାତ୍ମକ ଅନୁଭୂତିରୁ ଜନ୍ମ ନେଇଥିବାର ସମ୍ଭାବନା ଅଧିକ । ନଚେତ୍ ସେ କିପରି କହି ପାରି ନ ଥାନ୍ତେ "ନିରର୍ଥକ, ମୂଲ୍ୟହୀନ ସାନ୍ତ୍ୱନା ବା/ ଦୁଃଖର ଜଳନ୍ତା ସୂର୍ଯ୍ୟ/ ଅସ୍ତ ଯିବ ଅରଣ୍ୟରେ, ରାତ୍ରିର ହୃଦରେ/ କମ୍ପା ବିଶୃଙ୍ଖଳ ଶୋକର ମେଘରେ :/ ତେବେ ମୁଁ କି ଅସ୍ତଯିବି ଅନ୍ତର୍ହିତ ଦୃଶ୍ୟ ଏବଂ ଈଶ୍ୱରଙ୍କ ସନ୍ଧ୍ୟାର ଆସରେ ॥" (ସୂର୍ଯ୍ୟାସ୍ତ— ସ୍ରୋତର ନାମ ରିତ ) ।

କବି ଶ୍ରୀ ଲେଙ୍କାଙ୍କ କବିତା ନିଃସଙ୍ଗତାର ଧୂସର ଅନୁଭବରେ ପୂର୍ଣ୍ଣ । ନିଃସଙ୍ଗତା ତାଙ୍କର ରକ୍ତ । ତାହାକୁ ଦେଇ ହୃଦୟ ବିବେକ ଓ ଭାଗ୍ୟକୁ ନିୟନ୍ତ୍ରଣ କରିବାକୁ ସେ ଉନ୍ମୁଖ । ସବୁ ମନକୁ, ବିଶେଷ କରି ନିଜକୁ ସାକ୍ଷାତ କରିବାପରେ ଶୂନ୍ୟତା ବ୍ୟତୀତ ଆଉ କାହାକୁ ବା ମଣିଷ ପୂଜା କରି ପାରିବ ? ନିଜ ପ୍ରତି ପ୍ରଚଣ୍ଡ ନିଷ୍ଠୁରତାରୁ ନବ ବଳି ଦେଇଛନ୍ତି ଈଶ୍ୱରଙ୍କୁ । ତଥାପି ଶୂନ୍ୟତାଠାରୁ ମୁକ୍ତି କାହିଁ ? ଜୀବନକୁ ସାମଗ୍ରିକଭାବେ ନେଇ ବଞ୍ଚିବା ତାଙ୍କ ନିଃସଙ୍ଗତାବୋଧର ଏକମାତ୍ର କାବ୍ୟିକ ପରିଚର୍ଯ୍ୟା ।



---

୧୭ । Spender, Stephen—"The creative element" Ist Edition, Great Britain, Hamish Hanilton Ltd. 1953—P. 21.

# ଚତୁର୍ଥ ଅଧ୍ୟାୟ

## ପ୍ରେମାନୁଭୂତିର ଦିଗ୍‌ବଳୟ

ନିଃସଙ୍ଗତାର ଯନ୍ତ୍ରଣାରେ ଅହରହ ସଙ୍କୁଚିତ ହେଉଥିବା ମଣିଷ କ'ଣ କାହାକୁ ପ୍ରେମ କରିପାରେ ? ଏ ସଂଶୟ ଆଧୁନିକ କବିର ଏକ ବଡ଼ ସମସ୍ୟା । ମଣିଷ ମଣିଷ ମଧ୍ୟରେ ଥିବା ସମ୍ପର୍କ ଆଜି ଏକାନ୍ତ ଅନାତ୍ମୀୟ । ତାର ସ୍ୱପ୍ନ ଓ ସମ୍ଭାବନା ଆଜି ଧ୍ୱଂସମୁଖୀ । ଶୁଭ୍ର ସୁନ୍ଦର ଜୀବନବୋଧ ବିଶ୍ୱଯୁଦ୍ଧ କବଳରେ ପଡ଼ି କ୍ଷତାକ୍ତ । ଘୋର ଅନ୍ଧକାରାଚ୍ଛନ୍ନ ତା'ର ଭବିଷ୍ୟତ । ବିଷଣ୍ଣ ବାସ୍ତବତାର ମରୁଭୂମିରେ ସେ ଜଣେ ନିଃସଙ୍ଗ ପଦଯାତ୍ରୀ । ସୁତରାଂ ନାରୀ ପୁରୁଷ ମଧ୍ୟରେ ପୂର୍ବର ପବିତ୍ର ପ୍ରେମ ଆଶା କରିବା ବିଡ଼ମ୍ବନା । ବ୍ୟକ୍ତି ଜୀବନର ବିଶିଷ୍ଟ ମୌଳିକ ଆବେଗ ପ୍ରେମ ଆଜି କେବଳ ଦହନ ଓ ଜ୍ୱଳନର ପ୍ଲାବନ । ଆଧୁନିକ ମଣିଷର ଯୌବନ ଅନେକାଂଶରେ ଶୀତଳ ବରଫଖଣ୍ଡ, ଯାହା ମୃତ୍ୟୁର ନିକଟବର୍ତ୍ତୀ । ତେଣୁ ପ୍ରେମରେ ନିଷ୍ଠା ଓ ଆନ୍ତରିକତାର ଅନ୍ୱେଷଣ ଏକ ନିର୍ବୋଧତା । ସେ ପ୍ରେମରେ ନାହିଁ ଫଗୁଣର ଫଗୁ ଉତ୍ସବ, ଅଛି ଅଗ୍ନିଝରା ବୈଶାଖର ଉଦଗୀରଣ । ରୂପ ପ୍ରିୟ କବିର ଏ ବିତୃଷ୍ଣା ଅନୁଚ୍ଛ୍ୱାସଧର୍ମୀ ଏକ ସ୍ୟାଡ଼ିଷ୍ଟିକ୍ ଆପ୍ରୋଚ୍ ଭିନ୍ନ ଆଉ କ'ଣ ହୋଇପାରେ ?

ଶ୍ରୀ ଲେଙ୍କାଙ୍କ ପ୍ରେମ ଚେତନାର ଦିଗ୍‌ବଳୟ ଏହି ଦୃଷ୍ଟିରୁ ବିସ୍ତୀର୍ଣ୍ଣ । ପ୍ରେମ ପ୍ରତି ତାଙ୍କର ମୌଳିକ ଦୃଷ୍ଟିକୋଣର ସ୍ୱଚ୍ଛତା 'ସ୍ମରଣ ବିସ୍ମରଣ' (୧୯୭୩)ର 'ମାନଚିତ୍ର' କବିତାରୁ ବୁଝି ହୁଏ ।

"ପ୍ରେମ ମାନେ କିଛି ନୁହେଁ
ଆଖି ଏବଂ ଆଖିର ନିଃଶ୍ୱାସ
ବିତାସରେ ଡୁବାଇବା ।
ସମ୍ଭବତଃ ରକ୍ତର ନଈକୁ ଡେଇଁ
ବେଳେ ବେଳେ ରକ୍ତର ତୁଠରେ
ଠିଆ କରାଇବା ।
ବେଶି ହେଲେ ଓଠ, ସ୍ତନ ଏବଂ ଜଙ୍ଘର ଦ୍ୱନ୍ଦ୍ୱରୁ
ଆପଣାକୁ ନିବର୍ତ୍ତାଇ
ଶୂନ୍ୟରେହିଁ ଶୂନ୍ୟକୁ ଯୋଖିବା ।।"

ପରବର୍ତ୍ତୀ ପର୍ଯ୍ୟାୟରେ ଏହାହିଁ ପ୍ରେମର ମୂଲ୍ୟବୋଧ, ଏହାହିଁ ପ୍ରେମ-ଜିଜ୍ଞାସା । ମର୍ମଗତ ପ୍ରେମ ସ୍ୱପ୍ନ ଆଜି କବି ପକ୍ଷରେ ହାସ୍ୟକର । ଯନ୍ତ୍ରଣାହିଁ ତା' ପ୍ରେମର ବିଶ୍ୱସ୍ତ ଅନୁଚର । ଗଲଦ୍‌ଘର୍ମ ଦେହାନୁଭୂତି ତାର ସର୍ବସ୍ୱ । ମରୁଦାହର ଉତ୍ତାପ ତାର ପ୍ରେମଶଯ୍ୟା । ଗୋଟାଏ କଥାରେ କହିଲେ, ଯୌବନ ଉପରେ ବାର୍ଦ୍ଧକ୍ୟର ଶାସନ, ଉଦ୍‌ବେଗ ଉପରେ ଯନ୍ତ୍ରଣାର ଜଟିଳତା । ପ୍ରେମର ଏ ଦୁର୍ଦ୍ଦଶା ପାଇଁ ଦାୟୀ ଆମ ସମସ୍ତ । ସଚୋଟ କବି ପକ୍ଷରେ ସମୟର ଏ ଦାବୀକୁ ଉପେକ୍ଷା କରିବା ଅସମ୍ଭବ । 'ତୁମ୍ଭନ୍' କବିତାର ତାହାର ସାକ୍ଷ୍ୟ ଦେବ ।

> "ସତରେ
> କେତେ ସହଜ
> ତମେ ବୁଢ଼ୀ ହୋଇଗଲ !
> ଏ ପାଞ୍ଚ ସମସ୍ତଠାରୁ
> କି ଭୟଙ୍କର
> ତୁମ୍ଭନ୍ ମୁଁ ?
> ଦେଖିଲ ।"

( ଚିତା ଅଙ୍କା କାନ୍ଥର ଛବି : ପରିଧି ବାହାରେ ଅପେକ୍ଷାରତ ପୃଥିବୀ )

ପୃଥିବୀର ସବୁ ସାହିତ୍ୟରେ, ସବୁ କାଳରେ ପ୍ରେମକବିତାର ସଂଖ୍ୟା ପ୍ରଚୁର । ମାତ୍ର ଆଜିର କବି ଭଳି କେହି ସେମାନଙ୍କର ପ୍ରେମିକାକୁ ହୁଏତ ଏଭଳି ବୃଦ୍ଧାବସ୍ଥାରେ ଭେଟି ନ ଥିବେ । ଏହାର ଏକମାତ୍ର କାରଣ, ସମାଜର ରୂପ ଓ ଗୁଣ ଭେଦରେ କବିର ମନୋଭାବର ପରିବର୍ତ୍ତନ । ଇତିହାସରୁ ଦେଖାଯାଇଛି, ଯେତେବେଳେ ପ୍ରେମ ସମାଜରେ ସମୁଚିତ ସ୍ଥାନ ପାଇନି, ସେତେବେଳେ ସେଥିରୁ ବିଭିନ୍ନ ପ୍ରକାର ଗୁପ୍ତ ସଂପ୍ରଦାୟ ଧର୍ମନାମରେ ଆତ୍ମ ପ୍ରକାଶ କରିଛି । (୧) ଯୌନଚେତନାକୁ କେନ୍ଦ୍ର କରି ସେମାନଙ୍କ ମତବାଦ ଗଢ଼ି ଉଠିଛି । ତାର କଳାତ୍ମକ ରୂପ ଆମର କୋଣାର୍କ ଓ ଖଜୁରାହୋ । ଷ୍ଟେଣ୍ଡାଲ ( Stendhal ) ଙ୍କ ଦୃଷ୍ଟିକୋଣ ଏ ଦିଗରୁ ଗ୍ରହଣୀୟ । ସେ କହନ୍ତି—"Only passionate love evokes poetry of highest order." ଆଜିର ଅଧିକାଂଶ ପାଠକ ଏହାକୁ ସ୍ୱୀକାର କରିବେ ନାହିଁ । କମଳାକାନ୍ତଙ୍କ କବିତାରେ ଏହାର ପ୍ରମାଣ ରହିଛି—

---

୧ । Dasgupta, Shashibhusan. Obscure Religious Cults As Background of Bengali Literature, Calcutta, 1946.

"ଅଗୋ ମୋର ପ୍ରେମବତୀ ସ୍ତ୍ରୀ । ତୁମର ମାଂସଳ ଜଙ୍ଘ,
ମୋ ହାତରେ ନେସ୍କେଫେ କପ୍ ଓ ଦନ୍ତ ନାଭି, ନାଭିଗର୍ଭ ଦେହ—
ଯାହା ଏଇ ଏକାଚିଆ ରବିବାର ବର୍ଷାରେ ଗାଧୋଇଲାବେଳେ
ଉତ୍ତାପ ମୋ କାମନାକୁ—ସିଲ୍କ ଶାଢ଼ୀ ଇସ୍ତ୍ରୀ ଦେଲା ପରି ।"

( ମୋ ସ୍ତ୍ରୀ ପାଇଁ ଗୋଟିଏ କବିତା—ସୌରଭ ବିଶ୍ୱାଲ )

ଏହା କାଳିଦାସଙ୍କ "ଜ୍ଞାତାସ୍ୱାଦଃ ବିବୃତ ଜଘନାଂ କୋ ବିହାତୁଂ ସମର୍ଥଃ" ( ଅନାବୃତ ଜଘନା ନାରୀର ସ୍ୱାଦ ଚାଖିଥିବା ମଣିଷ କ'ଣ ତାହାକୁ ତ୍ୟାଗ କରିପାରେ ? ) ଠାରୁ ଅଧିକ ନଗ୍ନ ନୁହେଁ । ପ୍ରେମର ଜୈବିକ ବର୍ଣ୍ଣନା ଯେତେବେଳେ ଗ୍ରାହ୍ୟ ହେଉଥିବେଳେ ଏକାଳରେ ତାହା ପ୍ରତ୍ୟାଖ୍ୟାତ ହେବାର କିଛି ମାନେ ନାହିଁ । ତେଣୁ ପ୍ରେମ ବାସନାର ବ୍ୟକ୍ତିଗତ ଅନୁଭୂତିର ରୂପାୟନ ଓ ତା'ର ଶିଳ୍ପ ସମ୍ମତ ନୂତନ ଦୃଷ୍ଟିକୋଣ ପାଇଁ କବି ଶ୍ରୀ ଲେଙ୍କା ପ୍ରଶଂସା ଦାବି କରିବେ ।

ଶ୍ରୀ ଲେଙ୍କାଙ୍କ ପ୍ରେମ କବିତା ଗଢ଼ି ଉଠିଛି ବାସ୍ତବତାର ପୃଷ୍ଠଭୂମି ଉପରେ । ଜୀବନକୁ କଳ୍ପନାର ଭିତରେ ହଜାଇ ଦେବାର ବଳବତୀ ଇଚ୍ଛା ତାଙ୍କ କାର୍ଯ୍ୟଧାରାର ପରିପନ୍ଥୀ । ମଧ୍ୟଯୁଗୀୟ ଷୋଡ଼ଶୀ ନାୟିକା ଆଧୁନିକ କବି ଦୃଷ୍ଟିରେ ହରିଣୀ ଯୌବନା । ରୂପସୀ ନାରୀର ମୁଖ କୁଷ୍ଠଦୁଷ୍ଟ । ଶୀର୍ଣ୍ଣ ଓ ପାଣ୍ଡୁର ଉତ୍ତପ୍ତ ନଗରରେ କଳା ପାଦ ଦେବା ଦିନଠାରୁ ତାର ମାଂସପେଶୀ ତଳେ ଷଡ଼ଯନ୍ତ୍ରର ଜୀବାଣୁ ସଂକ୍ରମିତ । ନକଲି ସୌନ୍ଦର୍ଯ୍ୟରେ ନକଲି ପ୍ରେମର ଆକର୍ଷଣ କି ଦୁର୍ବାର ! ମସ୍ତକରେ କ୍ଷୁଦ୍ରକେଶର ଆବର୍ତ୍ତକୁ ଦର୍ଶିତ କରିବାକୁ ଆଧୁନିକ ବନ୍ୟୁଙ୍କା ନାରୀର କି ଦୁରନ୍ତ ଚେଷ୍ଟା ! (—ମୁଦ୍ରା (୨)-'ପାଣ୍ଡୁଲିପି'—ସଚ୍ଚି ରାଉତରାୟ) । ପ୍ରେମିକର ଅବସ୍ଥା ମଧ୍ୟ ତଦ୍ରୂପ । ଆଖିରେ ତୃଷ୍ଣା ଓ ହାତରେ ମୁଠାଏ ଧରି ପ୍ରେମିକ ସମ୍ରାଟ୍ ସୁଧାକର ଅନ୍ୱେଷଣ କରିବା ଭିତରେ ପ୍ରେମର ସ୍ୱତନ୍ତ୍ରତା, କ୍ଲାନ୍ତ ନମସ୍କାର ସଦୃଶ ସ୍ଥଗିତ । (ରମାକାନ୍ତ ରଥ) । ଆଜି ସ୍ୱପ୍ନ ବିଦୀର୍ଣ୍ଣ, ଜୀବନ ଆଣ୍ଟି ରୋମାଣ୍ଟିକ୍ । ଶ୍ରୀ ଲେଙ୍କାଙ୍କ କବିତାରେ ମଧ୍ୟ ଏହାର ସ୍ପଷ୍ଟତା ଅନୁଭବ୍ୟ ।

"ମୋ ରକ୍ତ ହେଲାଣି ବୁଢ଼ା । ସ୍ୱପ୍ନ ମୋର ବୁଢ଼ୀ ପାଲଟିଛି ।
ମୋ ଭଲପାଇବା ଇଚ୍ଛା ଏବେ ଜଇଁପୂଣା ଧାରଣ କରିଚି ।
ଏବେ ମୋର କିଶୋରୀଳ ଚେହେରର ସପନ ସବୁ ଆଗପରି ଅତୁଟ ରହିଚି ।"

( ଚିଠି : ଶିମୁଳି ଓ ପଳାଶ ଫୁଲକୁ )

ଏଠି ସ୍ୱଭାବ ସୁନ୍ଦର ସ୍ୱଚ୍ଛ ପ୍ରେମଧାରାର କୌଣସି ଅର୍ଥ ନାହିଁ । କବିତା ଓ କଳାସୃଷ୍ଟିର ଉତ୍ସ ଆଧୁନିକ କାଳରେ ଏକପ୍ରକାର ଅପରିହାର୍ଯ୍ୟ । ଏହା ପ୍ରାଚୀନ ଓ ମଧ୍ୟଯୁଗୀୟ ପ୍ରେମ ପରି ଆଦର୍ଶପୀଡ଼ିତ ନୁହେଁ ବା ନାନାବିଧ ବାଧ୍ୟବାଧକତାର କଣ୍ଟକଶଯ୍ୟାରେ ଲୁଣ୍ଠିତ, ସଙ୍କୁଚିତ ନୁହେଁ । ଏହା ରକ୍ତମାଂସର ସ୍ପର୍ଶ ନେଇ, ଅନୁଭବ ଓ ଅନୁଭୂତିର ନିଷ୍ଠା ନେଇ ଜୀବନର ନିକଟବର୍ତ୍ତୀ । ଜୀବନକୁ ପ୍ରକୃତ ମଣ୍ଡ ମାର୍ଜିଲ୍ କରିବା ଇଚ୍ଛାରେ ସମସ୍ତମନ ତାର ସନ୍ଧାନଧ୍ୟାନ ।

ହ୍ୱେଷ୍ଟ୍ଲ ପ୍ରେମକୁ ଆବେଗାତ୍ମକ ( Passionate love ), ବୋଧଗତ ( Sophisticated Love ), ଦେହଗତ ( Physical Love ), ଓ ପରିକଳ୍ପିତ (Calculated Love)—ଏପରି ଚାରି ଭାଗରେ ବିଭକ୍ତ କରିଛନ୍ତି । (୧) 'ଦେହଗତ ପ୍ରେମ' ସୃଷ୍ଟି ଆରମ୍ଭରୁ ବିଦ୍ୟମାନ । ଏହା ମଣିଷର ବିକାଶ ପାଇଁ ଜରୁରୀ । 'ବୋଧଗତ' ପ୍ରେମ ଅଳସ ଭାବନାରୁ ଉଦ୍‌ଭୂତ । ସମାଜର ଶୃଙ୍ଖଳା ରକ୍ଷା ପାଇଁ ବିଭିନ୍ନ ଦେଶ କାଳରେ 'ପରିକଳ୍ପିତ ପ୍ରେମ'ର ପ୍ରଚଳନ ଦୃଷ୍ଟିଗୋଚର ହୁଏ । ବିବାହ ଏହି ପ୍ରେମର ଆଦର୍ଶ । କିନ୍ତୁ ଆବେଗାତ୍ମକ ପ୍ରେମ କୌଣସି ବାଧାବନ୍ଧନ ମାନିବାକୁ ପ୍ରସ୍ତୁତ ନୁହେଁ । ପ୍ରେମିକ ପ୍ରେମିକାଙ୍କ ଭାବଗତ ଆକର୍ଷଣରୁ ଏହାର ଉତ୍ପତ୍ତି । ପାଶ୍ଚାତ୍ୟ ଜଗତର ଏହା ଏକ ବିରାଟ ଅବଦାନ । ପ୍ରାଚ୍ୟ ଓ ପାଶ୍ଚାତ୍ୟ ଦେଶରେ ଯଦି ଏଇ ଆବେଗପ୍ରବଣ ପ୍ରେମ ପ୍ରକାଶ ପାଉଥିଲା, ତେବେ ତାହାକୁ ମାନସିକ ବିକୃତି ବୋଲି ଧରିନିଆଯାଉଥିଲା । (୨) ମାତ୍ର ଏଇ ପ୍ରେମ ଆଧୁନିକ କବିର ମର୍ମସ୍ପର୍ଶୀ ଭାଷା । ଶ୍ରୀ ଲେଙ୍କାଙ୍କ ପ୍ରେମ କବିତାର ସ୍ୱରୂପ ଧାରଣା ପାଇଁ ଏଇ ପ୍ରେମର ଗତି ଓ ପ୍ରକୃତି ନିର୍ଦ୍ଧାରଣ ଏକାନ୍ତ ପ୍ରୟୋଜନ ।

ଇଂରେଜୀ ରୋମାଣ୍ଟିକ୍ କବିଙ୍କ ପ୍ରଭାବରେ ଓଡ଼ିଶାର ସବୁଜ କବି, ମାୟାଧର ମାନସିଂହ ଓ ରାଧାମୋହନ ଗଡ଼ନାୟକ ପ୍ରମୁଖ ପ୍ରେମ ରଚନାର ଯେଉଁ କାବ୍ୟିକ ଭାବମଣ୍ଡଳ ନିର୍ମାଣ କରିଥିଲେ, ତାହା ପରବର୍ତ୍ତୀ କାଳରେ ଭାଙ୍ଗିଭୁଶି ଗଲା । ଯୌବନ ସୁଲଭ ଭାବ ତାଙ୍କର ପରିବର୍ତ୍ତେ ସୁଖରେ, ଦୁଃଖରେ, ଦୈନନ୍ଦିନ ଜୀବନର କ୍ରିୟାକଳାପରେ ଆବେଗାତ୍ମକ ପ୍ରେମର ସମସ୍ତ ଦିଗ ଉନ୍ମୋଚିତ ହେବାକୁ ଲାଗିଲା । କମଳାକାନ୍ତଙ୍କ ପ୍ରେମ ଚେତନା ସେଇ କାରଣରୁ ଗ୍ରାହ୍ୟ ଆଲୁଅ, ଦିନରାତି ଭଳି ମୃତ୍ୟୁ ଓ ଜୀବନର ପାଖାପାଖି ରହିବାକୁ ବେଶି ପସନ୍ଦ କଲା । ଜୀବ ଦୃଷ୍ଟିରେ ତାହାଁ ଜୀବନାନୁରାଗ । ପ୍ରେମ ଓ ମୃତ୍ୟୁର ଦ୍ୱୈତ ମାନସିକ ଅନୁଭବ । ପ୍ରେମର ପ୍ରତୀକ ବା ମୃତ୍ୟୁର ପ୍ରତୀକ ଅନ୍ୱେଷଣ ତେଣୁ ତା' ପକ୍ଷରେ ଏକ ସ୍ୱପ୍ନବାଦ ।

୧ । Read, Herbert—Phases of English Poetry-P.43.
୨ । Ibid—P. 43 ।

ଆଜିର କବି ଦୃଷ୍ଟି ଏଇହେତୁ ପ୍ରେମରେ ମୃତ୍ୟୁର ବା ମୃତ୍ୟୁରେ ପ୍ରେମର ଅନୁଭବ ଆଣେ । ଆମେ ଜାଣୁ ପ୍ରେମର ପରମ ପରିଣତି ମୃତ୍ୟୁର ଶୀତଳ ସ୍ପର୍ଶ ଦିଏ ଓ ଏଇ ଶୀତଳତାର ଅନୁଭବ ଭିତରେ ପ୍ରେମ ମୃତ୍ୟୁଞ୍ଜୟ ବୋଲି ଘୋଷଣା କରିଯାଏ । କମଳାକାନ୍ତଙ୍କ କବିତାରେ ଏଇ ଅନୁଭବର ସୂକ୍ଷ୍ମତା ରହିଛି ।

"ଯେଉଁ ଦିନ
ଶ୍ମଶାନରୁ ଫେରିବ
ତମ ଶବ
ହଜାର ବରି
ହୁଏ ତ
ମୋର ଶବ ସହ
କଥାବାର୍ତ୍ତାରେ
ସାରା ରାତି ବିତିଯିବ,
ହୁଏ ତ
ସାରା ରାତିର ଅନ୍ଧାର
ଜଣାଯିବ
କବିତାର ପ୍ରତିମା ପରି,
ପ୍ରେମର ଜୁଇ ପରି ।।"

(ପ୍ରେମ-ଶତୀ ଅଙ୍କା ବାଙ୍କୁରି ଛବି : ପରିଧି ବାହାରେ ଅପେକ୍ଷାରତ ପୃଥିବୀ)

ପ୍ରେମ ଓ ମୃତ୍ୟୁର ଦ୍ୱୈତଲୀଳା ଓ କବିଙ୍କ ପ୍ରେମଭାବନାର ପ୍ରସାର ଏହି କବିତାରେ ଜୀବନକୁ କବିତାମୟ କରିବାର ଇଚ୍ଛା ପୋଷିଛି । ସାରା ରାତିର ଅନ୍ଧାର ପ୍ରେମର ପ୍ରତିମା ହୋଇ, କବିତାର ଜୁଇଫୁଲର ମହକ ହୋଇ ସଞ୍ଚରି ଯାଇଛି । ନିଜ ଶବସହ କଥାବାର୍ତ୍ତାବେଳେ ମୃତ୍ୟୁକୁ ପ୍ରେମମୟ କରି ଦେଇଛନ୍ତି କବି ।

ଶ୍ରୀ ଲେଙ୍କାଙ୍କ ଏଇ ନୂତନ ଦୃଷ୍ଟିଭଙ୍ଗୀ ପାରମ୍ପରିକ ପ୍ରେମାଖ୍ୟାନଠାରୁ ସମ୍ପୂର୍ଣ୍ଣ ପୃଥକ । ପ୍ରେମର ବୌଦ୍ଧିକ ଓ ତାତ୍ତ୍ୱିକ ବିଶ୍ଳେଷଣରେ ତାଙ୍କ କବି ପ୍ରତିଭା ଅଗ୍ରଗାମୀ ଭାବଲୋକର ସନ୍ଧାନୀ । କାବ୍ୟ ବିକାଶର ପ୍ରତିଟି ସ୍ତରରେ କଳ୍ପନାପ୍ରବଣ ଭାବାନୁଷଙ୍ଗ ଶକ୍ତିଶାଳୀ ଆବେଗରେ ପ୍ରକାଶିତ । କବିଙ୍କ ପ୍ରାଥମିକ ରଚନାରେ ଏଭଳି ଭାବସାନ୍ଦ୍ରତା ପରିଦୃଷ୍ଟ ହୁଏ ନାହିଁ । 'ହସପିଟାଲ' କବିତାରେ ବର୍ଣ୍ଣିତ ସୁବସାକା କବିଙ୍କର ଯନ୍ତ୍ରଣା ଦୂର କରିବାରେ ସମର୍ଥ । "ମୋତେ ତୁମେ ମୁକ୍ତ ଦିଅ ପିଇ ସବୁ ଯନ୍ତ୍ରଣା ଅମୃତ/ନ ପାରିବି ଦୁର୍ବଳ ମୁଁ ଏଡ଼ି କେବେ ପ୍ରଣୟ ବାରତା" (ପ୍ରୀତି ଓ ପ୍ରତୀତି) । ଝଡ଼ ରାତିର ଛାତି ତଳେ ତାତିର ପ୍ରବାହ

ଫୁଟୁଥିଲାବେଳେ ପ୍ରଣୟିନୀ ବକ୍ଷରେ କୋଣାର୍କ ଘୁରୁଣିଲାର ଅଭେଦ ଅନୁଭୂତି
ଆଣିବା ଏକ ଭାବପ୍ରବଣତା ଛଡ଼ା ଅନ୍ୟ କିଛି ନୁହେଁ । (୪) 'ସୁନାଫସଲ'
(୧୯୫୮) ରେ ଜୀବନକୁ କେବଳ ପ୍ରେମର ଆଲୋଡ଼ନ ଭାବେ ଗ୍ରହଣ କରିନେଇ
ତାର ବିପୁଳ ଦାନରେ ଆପ୍ଲୁତ ହେବା କବିଙ୍କର ସଚେତନ ଦୃଷ୍ଟିଭଙ୍ଗୀର ଅଭାବ
ସୂଚାଇ ଦିଏ । (୫) 'ଅନାହୂତା' କବିତାଟି ତାହାର ପ୍ରକୃଷ୍ଟ ଦୃଷ୍ଟାନ୍ତ । କବି
ଏହାର କୈଫିୟତ୍ ମଧ୍ୟ ଦେଇଛନ୍ତି—"ଯୌବନର ପ୍ରାକ୍ କାଳରେ ଯେମିତି ଆମ
ଅଜାଣତରେ କେତେବେଳେ ନାକ ତଳେ ନିଶ କେରାଏ ଗଜୁରି ଆସେ ସେମିତି
ମନ ଓ ହୃଦୟର ଶାଖା ପ୍ରଶାଖାରେ ପ୍ରେମର ଚଢ଼େଇଟି ଡେଣା ହଲେଇ, ଅଣ୍ଟା
ଘଷି ଗୀତ ପଦେ ବୋଲି ପକାଏ । ସମୟକ୍ରମେ ପୁଣି ନିଶ ଦାଢ଼ି ପାଚେ, ପ୍ରେମ
ପାକସିଦ୍ଧ ହୁଏ । ନାନା ବାଗ ଓ ଢଙ୍ଗରେ ଯୌବନ ଖେଳ କୁଦ କରେ, ଆସେ,
ଯାଏ । ବାର୍ଦ୍ଧକ୍ୟ ପରିଣତ ହୁଏ ବିଗ୍ରହରେ, ପ୍ରଜ୍ଞାରେ ।" (୬) 'ସ୍ମରଣ ବିସ୍ମରଣ'
(୧୯୭୩) ରଚନା ବେଳକୁ ପ୍ରେମ ପାକସିଦ୍ଧ ପ୍ରକ୍ରିୟାରେ ସଫଳତା ହାସଲ କରିଛି ।
କବିତା ସବୁ ଶାଶ୍ୱତ ପ୍ରେମାନୁଭବର ଅଙ୍ଗୀକାର ଭାବରେ ସ୍ୱୀକୃତି ପାଇଯାଇଛି ।
ଲୁହ ଓ କୋହର ମିଶ୍ରିତ ପ୍ରତ୍ୟୟ ଏହାର ଛନ୍ଦେ ଛନ୍ଦେ ଭରି ରହିଛି ଯେପରି ।

କ୍ରମଶଃ କମଳାକାନ୍ତଙ୍କ ପ୍ରେମଚେତନା ଦ୍ୱନ୍ଦାତ୍ମକ ହୋଇ ପଡ଼ିଛି । ପ୍ରେମର
ବାସ୍ତବ ରୂପ ଭିତରେ ଆସିଯାଇଛି ଯନ୍ତ୍ରଣା, ଆନନ୍ଦ, ଅନୁତାପ, ଖେଦ, ଓ
ଶୋକ । ଇଂରାଜୀ ସାହିତ୍ୟରେ ସ୍ପେନ୍ସର, ଜନ୍ ଡନ୍, କୀଟ୍ସ, ରବର୍ଟ ବ୍ରାଉନିଂ
ଓ ଡବ୍ଲୁ. ବି. ୟେଟ୍ସ୍ ପ୍ରେମର ବିଭିନ୍ନ ରହସ୍ୟର ସନ୍ଧାନ ଦେଇଥିବାବେଳେ
କମଳାକାନ୍ତ ତାହାକୁ ଇନ୍ଦ୍ରିୟଗ୍ରାହ୍ୟ ରୂପଚେତନା ଭିତରେ ପୂର୍ଣ୍ଣତାର ସନ୍ଧାନ
କରିଛନ୍ତି । ଅଥଚ ଏଥିରେ ନାହିଁ ଚପଳ କଳ୍ପନା, ତରଳ ରୂପତୃଷ୍ଣା । ତାରୁଣ୍ୟର
ରକ୍ତ ପ୍ରତି ରକ୍ତର ଆକର୍ଷଣକୁ ପରିଶୀଳିତ କାବ୍ୟରୂପ ଦିଆଯାଇଛି । 'ମୋ ସ୍ତ୍ରୀ ପାଇଁ
ଗୋଟିଏ କବିତା' ଏହାର ଏକ ସାର୍ଥକ ଉଦାହରଣ । ଜୀବନରେ ନିଷ୍ଠୁର
ବାସ୍ତବତାର ଆହ୍ୱାନ ଅନେକ ସମୟରେ ପ୍ରେମର ଗୌଣତା ପ୍ରତିପାଦନ କରିଥାଏ ।
କିନ୍ତୁ ପ୍ରେମର ଦୁର୍ବାର ସାନ୍ନିଧ୍ୟ ମଣିଷକୁ ସବୁପ୍ରକାର ଅସ୍ୱଚ୍ଛନ୍ଦତା, ମାନସିକ
ଦୁଃଶ୍ଚିନ୍ତାରୁ ରକ୍ଷା କରେ । ଶ୍ରୀ ଲେଙ୍କା ତେଣୁ ପ୍ରେମଠାରେ ନିଜକୁ ସମର୍ପଣ
କରିବାରେ ରୁକ୍ଷ ବାସ୍ତବତାକୁ ଏଡ଼ାଇ ଯାଆନ୍ତି ।

---

୪ । ପ୍ରୀତି ଓ ପ୍ରତୀତି (୧୯୭୩)—'ଗୋଟିଏ ପ୍ରେମ କବିତା' —ପୃ. ୪୬ ।

୫ । ଦାଶ, ମନମୋହନ—କବି କମଳାକାନ୍ତଙ୍କ ଦୃଷ୍ଟି ଓ ଦର୍ଶନ-ଇସ୍ତାହାର (୩ ଓ ୪), ୧୯୭୮ ।

୬ । ସାହୁ, ନିରାକାର—କବିଙ୍କ ସହ ସାକ୍ଷାତକାର, 'ନବଲିପି'—ଫେବୃୟାରୀ — ୧୯୮୬ ।

"ବର୍ତ୍ତମାନ ମୁଁ ତୁମକୁ ପୂର୍ଣ୍ଣପୂର୍ଣ୍ଣ ସମର୍ପଣ କଲି,
ଓ ତୁମଠାରୁ ବ୍ରହ୍ମବିଦ୍ୟା ଶିକ୍ଷାର ଆଗ୍ରହରେ
ହଲ୍‌କାପାତ, ପଞ୍ଚରତ୍ନକୂଟ, ଝର୍ଣ୍ଣାଘାଟ ଓ ଓଇଲର ଡିସେମ୍ବର ଦାହକୁ
ନିଜକୁ ବଞ୍ଚେଇବାର କଳା ଶିଖି ତୁମକୁ ମୁଁ ଆଶ୍ୱାସନା ଦେଲି —"

× × ×

ଏ କଣ୍ଟିଆ କଦମ୍ବର ଅନ୍ତରର ଆଶ୍ରିତା ଭଳି ।
ଏ ଖର ଖର ଉଦାସିଆ ପାଗ ପାଇଁ ରାଜହଂସ ନଦ ଭଳି ॥

ପ୍ରାର୍ଥନାର ମୂକ ଅଧୀରତାରେ କବି ଭୀରୁତାର ଚମ୍ପାଫୁଲ ଫୁଟାନ୍ତି । ଗେଣ୍ଡେଇ ନଈକୁ ସମୁଦ୍ର ସହ ଯୋଡ଼ି ଶ୍ରଦ୍ଧାର ଝିଲବସ୍ତ୍ର ତଳେ ପ୍ରେମର ମନ୍ତ୍ରମୁଗ୍ଧତା ଦାରନ୍ତି । ପ୍ରେମର ଚକ୍ଷୁ ନବୀନ ଶୁଭ୍ରତାରେ ଝଲମଲ ହୋଇଥାଏ । ଫୁସ୍‌ଫାସ୍ ଟୁପ୍‌ଟାପ୍ କଥାସବୁ ଜୀବନଚର୍ଯ୍ୟାର ମଧ୍ୟବିନ୍ଦୁର ଉପାସ୍ୟ ହୋଇ ଛିଡ଼ାହୁଏ ।

ସଂସାରର ଯାବତୀୟ ଜଞ୍ଜାଳରୁ ମୁକ୍ତି ଲାଭ କରିବା ବିବାହର ଅନ୍ୟତମ କଳା । ବିବାହ ଭିତରେ ନିହିତ ରୁଟିନ୍‌ବନ୍ଧା କାର୍ଯ୍ୟପ୍ରଣାଳୀ ତାର ମନସ୍ତାତ୍ତ୍ୱିକ ସମସ୍ୟା ଦୂର କରିବା ଅସମ୍ଭବ । ଜଣେ ଅବିବାହିତା ଯୁବତୀ ସଙ୍କଳ୍ପର ଇଚ୍ଛା ପୋଷଣ କରୁଥିବା ବେଳେ ସଂସାରର ଖଣ୍ଡଚିତ୍ର ଦୃଶ୍ୟରେ ଆତଙ୍କିତା । ବିବାହର ବସ୍ତୁସବୁ ଅତିକ୍ରମ କରିଥିବା ଝିଅଟିର କାନକୁ ତେଣୁ ବାରମ୍ବାର ଶୁଭୁଯାଏ ଫଗୁଣର ବଂଶୀଡାକ, ବର୍ଷାର ଝୁମ୍ପୁଲ । ଶରତର ଜହ୍ନ ତାର ଉତ୍ତୀର୍ଣ୍ଣ ବସ୍ତୁସବୁ ଧରି ରଖିବାକୁ ଚେଷ୍ଟା କରେ । ଫ୍ରଏଡ୍, ୟୁଙ୍ଗ୍‌ଙ୍କ ପଢ଼ିଶିଖା ଏଇ ଯୁବତୀ ନିକଟରେ ଦେହର ଆହ୍ୱାନଟି ବଡ଼ ହୋଇ ଉଠେ । ଦରପୋଡ଼ା ସିଗାରେଟ୍ ଗନ୍ଧକୁ ହଜମ କରିବାର ପ୍ରବଣତା ଏଠାରେ ବିମୂର୍ତ୍ତ ରୂପ ନିଏ । ଏହି ପରିସ୍ଥିତିରେ ଯୁବତୀଟି ଦେଖେ— କାନ୍ଥରେ ରାଧାକୃଷ୍ଣ ମୂର୍ତ୍ତି, ଦୁଆରେ ପ୍ରେମସୁଧାନିଧିର ସ୍ଥାଣୁମୂର୍ତ୍ତି "ରାଧାକୃଷ୍ଣ ମୂର୍ତ୍ତି କିଏ ଝୁଲେଇଲା କାନ୍ଥରେ କହିତ ?/ପ୍ରେମସୁଧାନିଧି ଆସି ଠିଆ ହେଲା ଦୁଆରେ କାହିଁକି ?" (ଜଣେ ଅବିବାହିତା ଯୁବତୀର ଡାଏରୀରୁ କଥିତ) । ଘର ଭିତରେ ରାଧାକୃଷ୍ଣ ପ୍ରେମାଦର୍ଶର ଧୂପଗନ୍ଧ, ଅଥଚ ବାହାରେ ଭକ୍ତୀୟ ପ୍ରେମ-ନିଷ୍ଠାର ଅନନ୍ୟତା ବିସ୍ମୃତ ଅବିବାହିତାଟିକୁ ଦ୍ୱନ୍ଦ୍ୱମୁଖୀ କରିଛି । ବିବାହ ଏଠି ଅର୍ଥହୀନ, ଜୈବିକ କାମନାହିଁ ଯୁଗସତ୍ୟ । ପ୍ରେମ ଓ ବିବାହରେ ସ୍ଥିତ ପୂର୍ଣ୍ଣାଙ୍ଗ ତ୍ୟାଗ ଓ ତିତିକ୍ଷା ଆଜିର କବି ନିକଟରେ ଅଚଳ । ଚନ୍ଦ୍ରଭାନୁ ପ୍ରତି ଲବଣ୍ୟର ପ୍ରାଣ ବୈକଲ୍ୟ ବା ମାନସିଂହଙ୍କ 'ଧୂପ'ର ସୁରଭିରେ ନିହିତ ଉନ୍ମାଦନା କବି ଶ୍ରୀ ଲେଙ୍କାଙ୍କ ଦୃଷ୍ଟିରେ ଏବର ସମସ୍ତ ପାଇଁ ପ୍ରେମର ଗୋଟାଏ ଗୋଟାଏ ଦ୍ୱନ୍ଦ୍ୱାତ୍ମକ ସ୍ଥିତି । କବି ଯୁବତୀକୁ ପ୍ରଶ୍ନ କରିଛନ୍ତି—

"ଆଗୋ ଗୁଇ ! ମନ ଯଦ ହେଲ ବାଇ
ବାହା ହେଲେ କ୍ଷତ କ'ଣ ?" ସଙ୍ଗେ ସଙ୍ଗେ ଉତ୍ତର ମିଳିଯାଇଛୁ—
"ଘରଦ୍ୱାର, ପୁଅ ଝିଅ
ଗୁହ, ମୁତ, ରୋଗ ଶୋକ, ଉପେଣ୍ଟି ଓ ଡାଇରିଆ ଛଡ଼ା
ହଣ୍ଡଗୋଳ, ମନଫଟା, କେସାକେସି, ଝମେଲା ଅନେକ ।"

ନିଜର ଅନ୍ତସ୍ଥିତ ପ୍ରବୃତ୍ତିକୁ ଧ୍ୱଂସ କରିବାକୁ ବିବାହ ଗୋଟାଏ ବିରାଟ ଚକ୍ରାନ୍ତ । କୋକଶାସ୍ତ୍ରର ପୃଷ୍ଠାଙ୍କ ଭିତରେ ଯୌବନକୁ ଖୋଜିବା ବ୍ୟତୀତ ଜୀବନରେ ଆଉ କିଛି ବଡ଼ କଥା ନାହିଁ । ସିନେମା, ଟିପାର୍ଟି, କ୍ୟାଣ୍ଡିଲ୍, ଲଜିଂ ହାଉସ୍ ଭିତରେ ଛପିଥିବା ସନ୍ତୋଷ ଟିକିଏ ପାଇବାକୁ ସେ ଉନ୍ମୁଖ । ଜୀବନକୁ ଲୋଭନୀୟ ଏଇ ପ୍ରବୃତ୍ତିଗୁଡ଼ିକ ଦ୍ୱାରା ଭୂଷିତ କରି ମୋହ ମୁକ୍ତ ଭାବେ ଭେଟିବା କମଳାକାନ୍ତଙ୍କ ନାରୀ ଚରିତ୍ରର ପ୍ରଧାନ ବିଶେଷତ୍ୱ । ଏପରି ନାରୀ ଚରିତ୍ରର ଅନ୍ତିମ ପରିଣତି ନିଜ ଦୁଃଖରେ ନିଜେ ସିଝିବା । ନଶିଷ ତାର ମୂଲ୍ୟବୋଧଗୁଡ଼ାକୁ ନିଜେ ବାଛେ ଓ ବଞ୍ଚାଇ ରଖିବାକୁ ଉଦ୍ୟମ କରେ ବୋଲି ଏଠେ ସ୍ୱାଭିମାନ ହୁଏ । ନିଜ ସ୍ୱାର୍ଥ ବିରୋଧୀ ବସ୍ତୁର ନିର୍ବାଚନ ମଣିଷ କେବେ କରିପାରେ ନାହିଁ । ସାର୍ତ୍ରେଙ୍କ ଭାଷାରେ—

"For we are unable ever to choose the worse. What we choose is always the better; and nothing can be better for us unless it is better for all" (Existentialism is a Humanism) ସର୍ବେଟିସ୍ ଏ କଥା ବହୁ ପୂର୍ବରୁ ଆଲୋଚନା କରି କହିଥିଲେ, ଜଗତସାରରେ କଣେ ନିଜର ମନ୍ଦ କଥା ଚିନ୍ତା କରି ନ ପାରିଲେ ବି ତାର ଅଜ୍ଞାନତା ହେତୁ ସେ ତ୍ରୁଟିପୂର୍ଣ୍ଣ ସିଦ୍ଧାନ୍ତ ଗ୍ରହଣ କରେ । ମାତ୍ର ମାନବ ଚରିତ୍ରର ଏକ ବିଶେଷତ୍ୱ ହେଉଛି ଯେ ସେ ନିଜର ଅଜ୍ଞତାକୁ ସ୍ୱୀକାର କରି ପାରେ ନା । ତେଣୁ ଯେଉଁଟାକୁ ସେ ଭଲ ଭାବେ, ତାହାହିଁ କରି ଚାଲେ । ତ୍ରୁଟିର ପାହାଡ଼ ଉପରେ ପଦଚାରଣ କରିବା ତା'ର ମନୁଷ୍ୟତ୍ୱର ସଙ୍କଟ । ଆପଣାର ବିଗ୍ରହ ଓ ଚିନ୍ତାକୁ ମାରିଦେବା କବି ଦୃଷ୍ଟିରେ ଏକ ଆତ୍ମହତ୍ୟା । ତା' ହୋଇ ନ ଥିଲେ ଶ୍ରୀଲେଙ୍କା ହୁଏତ ଗତାନୁଗତିକ ମୂଲ୍ୟବୋଧର ଉପାସକ ହୋଇ ଥାଆନ୍ତେ । ନିଜଠାକୁ ବିସ୍ମୃତା ନାରୀର ପ୍ରେମରେ ପଡ଼ିବା ଏ ଦୃଷ୍ଟିରୁ ଅସ୍ୱାଭାବିକ ନୁହେଁ । ଡକ୍ଟର ନିତ୍ୟାନନ୍ଦ ଶତପଥୀ ଶ୍ରୀ ଲେଙ୍କାଙ୍କ ପ୍ରେମକବିତା ଆଲୋଚନା କରି ଯେଉଁ ମନ୍ତବ୍ୟ ଦେଇଛନ୍ତି, ତାହା ଖୁବ୍ ଅର୍ଥପୂର୍ଣ୍ଣ । "ଏଇ ନାରୀ; ବସ୍ତୁସର ତାରତମ୍ୟ, ବିଗ୍ରହର ମେଘନାଦ ପ୍ରାଚୀର ସବୁ ଯେପରି ତାର ଚିନ୍ତାରେ ଭାଙ୍ଗି

ପଡ଼େ । କବି ଆଖିରେ ବୟସ ବିଶ୍ୱର ଏକ ଦନ୍ତହୀ ଭୁଗ୍‌ଣ ଅଷ୍ଟାଭର ଅଥବା ମାପକ ଛଡ଼ା କିଛି ନୁହେଁ । ଦେହର ଦାବି, କାମନାର ଅଗ୍ନିଶିଖା ପାଖରେ ଏଇ ମନ ବୟସର ବିଶ୍ୱର ହାରେଇ ବସେ । ତେଣୁ ପୁରୁଷଠାରୁ ନାରୀ ବୟସର ଦୀର୍ଘତା ପ୍ରେମ ବ୍ୟାପାରରେ ଅନ୍ତରାୟ ହୁଏ ନାହିଁ । କାମନାର ଜଳାଭ ଚୌରଙ୍ଗୀରେ ବୟସ ଓ ସାମାଜିକ ସମ୍ପର୍କ ସବୁ ଟଳି ପଡ଼େ । ଶ୍ରୀ କମଳାକାନ୍ତ ଲେଙ୍କା ପ୍ରେମର ଏଇ ମାନସିକ ଓ ଦୈହିକ ଦାବୀକୁ ଚମତ୍କାର କେତୋଟି ଚିତ୍ରକଳ୍ପ ଭିତରେ ପ୍ରାଞ୍ଜଳ କରିଛନ୍ତି ।" (୭) ବୟସର ବ୍ୟବଧାନକୁ ଦ୍ୱିଧାଗ୍ରସ୍ତ, ଲଜ୍ଜାଗ୍ରସ୍ତ ଓ ଶଙ୍କାଗ୍ରସ୍ତ ଭାବରେ ଗ୍ରହଣ କରି ନେଲେ ସବୁ ଅଡ଼ୁଆ ଲୁଚିଯାଏ । କବି କହନ୍ତି ପଦାନ୍ତ—'ବୟସ ଯଦିଓ କମ୍ ତମଠାରୁ/ କିଣ ଯାଏ ଆସେ/ ବୟସର ବ୍ୟବଧାନ ସମୟର ଦୀର୍ଘ ନିଃଶ୍ୱାସରେ କେବେ କେବେ ଲମ୍ବିଯାଏ ।" (ବୟସ ଯଦିଓ କମ୍—ସ୍ମରଣ ବିସ୍ମରଣ) । ମିଳନାକାଂକ୍ଷାର ତୀବ୍ରତାରେ ବୟସର ବ୍ୟବଧାନ ଖସିଯାଏ । ଏହି କବିତାରେ ବାଘ ଓ ଠେକୁଆର ଭିଡ଼, କୁଆଁରିଆ ନଈ କୂଳ, ଘଞ୍ଚ ଜଙ୍ଗଲ, କଳା ମେଘ ଓ ଦରବୁଢ଼ୀ ପୃଥ୍ୱୀ, ଗଜା ଘାସ ଓ ବର୍ଷା ଭିତରେ କବିଙ୍କର ପ୍ରେମ ଓ ଯୌନକାମନା ସମନ୍ୱିତ ହୋଇ ଯାଇଛି । ଏଠି ପ୍ରେମ ସମୟକୁ ଚ୍ୟାଲେଂଜ୍ କରିଛି । ବୌଦ୍ଧିକ ସ୍ତରର ମାନସିକ ଆଲୋଡ଼ନକୁ ଦୁର୍ନିବାର ପ୍ରେମାକାଂକ୍ଷା ସାହାଯ୍ୟ କରିଛି ।

> "ଠୁଙ୍ଗା ହୋଇ ସମୟର ରଫ୍ ଖାତା ।
> ବୟସ ଯଦିଓ କମ୍ କ୍ଷତି କ'ଣ ?
> ଦୁଃଖ କ'ଣ ? ବୟସ ଯଦିଓ କମ୍ ଲଜ୍ଜା କ'ଣ ?
> ଦଗ୍‌ଧବନ ହୁତାଶର ଗୀତ
> ଏକାନ୍ତରେ ବୋଲିବା ହିଁ ସୁଖ ।" (ବୟସ ଯଦିଓ କମ୍)

ସେକ୍‌ସପିଅରଙ୍କ ଦୃଷ୍ଟିଭଙ୍ଗୀ ଏ ପ୍ରସଙ୍ଗରେ ସ୍ୱତନ୍ତ୍ର । ତାଙ୍କଠାରୁ ଆଠ ବର୍ଷ ବଡ଼ ଅନହାଥାଓ୍ୱେଙ୍କୁ ଭଲ ପାଉଥିଲେ ସେକ୍‌ସପିଅର । ମାତ୍ର ତାଙ୍କୁ ବିବାହ କରିବା ଦ୍ୱାରା ସେ ଗୋଟେ ମସ୍ତବଡ଼ ଭୁଲ୍ କରି ବସିଲେ । ବିବାହ ପରେ ବିଚ୍ଛେଦ ଆସିଲା ଓ ସାରାଜୀବନ ଜଳିଲେ ସେକ୍‌ସପିଅର । ଫଳରେ ସେ ବହୁ ସାର୍ଥକ ସନେଟ୍‌ର ସ୍ରଷ୍ଟା ଭାବେ ବିଶ୍ୱ ବନ୍ଦିତ ହେଲେ । ଅଥଚ ଜୀବନଟା ତାଙ୍କର ତୃଷ୍ଣାର ମରୁଭୂମିରେ ପଡ଼ି ଛଟପଟ ହେଲା । ସେଥିପାଇଁ ପାଶ୍ଚାତ୍ୟ ଦେଶର ବଡ଼ ବଡ଼ ସାହିତ୍ୟିକ, ଦାର୍ଶନିକ ବିବାହ କରିବାକୁ ସାହସ କରିନାହାନ୍ତି । ଫ୍ରେଞ୍ଚ୍

---

୭ । ଶତପଥୀ, ନିତ୍ୟାନନ୍ଦ—ଆଧୁନିକ ଓଡ଼ିଆ ସାହିତ୍ୟ (ଆଧୁନିକ ପ୍ରେମକବିତା-ଏକ ସମୀକ୍ଷା) ୧୯୭୭, ପୃ. ୮୭-୮୭ ।

କାଫ୍‌କା ପ୍ରେମରେ ପଡ଼ିଥିଲେ, ବିବାହ କରିବାକୁ ବି ମନ ବଳାଇଥିଲେ । କିନ୍ତୁ ଭୟ ତାଙ୍କୁ ପଥରୁଦ୍ଧ କରିଥିଲା । ନିଜର ସ୍ୱତନ୍ତ୍ର ସ୍ୱାବଜନଗତ ଭାଙ୍ଗିଯିବାର ଆଶଙ୍କାରେ ସେ ପୀଡ଼ିତ ଥିଲେ । ସାର୍ତ୍ରେ ଓ ତାଙ୍କର ପ୍ରେମିକା ବୋଭର ମଧ୍ୟ ବିବାହକୁ ଘୃଣା କରିଛନ୍ତି । ବୋଭରଙ୍କ ମତରେ—ମାତୃତ୍ୱ ତାଙ୍କ ଜୀବନର ପ୍ରତିବନ୍ଧକ । ବହୁ ପ୍ରେମ ଘଟଣାରେ ସମ୍ପୃକ୍ତ ଥାଇ ମଧ୍ୟ ବୋଭର ସାଂସାରିକ ଝୋଟ ଛଡ଼ାଇ ଦେଇଛନ୍ତି । ଜଣେ ଲୋକପ୍ରିୟ ଅଧ୍ୟାପିକା ଓ ଲେଖିକା ହୋଇ ମଧ୍ୟ ସେ ପ୍ୟାରିସ୍‌ର ସୁବ୍ୟସାଜୀ ଅଧ୍ୟୁଷିତ ଅଞ୍ଚଳକୁ ନିୟମିତ ଯା ଆସ କରୁଥିବାର ଦୁରନ୍ତ ଅଭ୍ୟାସ ଛାଡ଼ି ପାରି ନ ଥିଲେ । ଦାର୍ଶନିକ ନିତ୍ସେ ଅବିବାହିତ ଥିଲେ । ତାଙ୍କ ଭାଷାରେ—ବିବାହିତ ଦାର୍ଶନିକ ଗୋଟାଏ ଜୋକର୍, ଠିକ୍ ସକ୍ରେଟିସ୍‌ଙ୍କ ପରି । (୮) ସକ୍ରେଟିସ୍ ସକାଳୁ ସନ୍ଧ୍ୟା ପର୍ଯ୍ୟନ୍ତ ରାସ୍ତାଘାଟ, ଜନ ସମାଗମ ହୋଇଥିବା ସ୍ଥାନମାନଙ୍କରେ ବୁଲି ଦର୍ଶନ ଚର୍ଚ୍ଚା କରୁଥିଲେ । ପତ୍ନୀଙ୍କ ସହ ପ୍ରେମ ସମ୍ଭାଷଣ କରିବାକୁ ତାଙ୍କର ବେଳ ନ ଥିଲା । ଓଲଟି ପତ୍ନୀ କ୍ରୁଦ୍ଧା ହୋଇ କଟୂ ବାକ୍ୟ ପ୍ରୟୋଗ କରିବା ସଙ୍ଗେ ସଙ୍ଗେ ଗିନାଏ ପାଣି ତାଙ୍କ ଉପରେ ଢାଳି ଦେଉଥିଲେ ।

ମଣିଷର ପ୍ରଥମ ଆବଶ୍ୟକତା ଖାଦ୍ୟ, ଦ୍ୱିତୀୟଟି ଯୌନଚେତନା । ପ୍ରଥମଟିର ପୂର୍ତ୍ତି ପାଇଁ ସମାଜରେ ଅନେକ କିଛି ବୈଷମ୍ୟ, ବିଭ୍ରାଟ । ଉଦର ପରିତୃପ୍ତି ପରେ ଦ୍ୱିତୀୟଟି ତାର ମାନସିକତାକୁ ଘେରେ ମୋହାଚ୍ଛନ୍ନ । ଏହାର ଅଭାବରେ ମଣିଷ ବିଚଳିତ ହୋଇ ପଡ଼େ । ବାସ୍ତବବାଦୀ ଦୃଷ୍ଟିରୁ ଏହାର ଭୂମିକା କିଛି କମ୍ ନୁହେଁ । ଜୀବନକୁ ସୁଖମୟ କରିବାକୁ ଏଇଠୁ ପ୍ରେରଣା ମିଳେ । ଏଥିରୁ ଅହଂବାଦିତା ବା 'ଇଗୋ'ର ଜନ୍ମ । (୯) ଦେହବାଦର ସ୍ତୁତିଗାନରେ ମୁକ୍ତର କାବ୍ୟନାୟିକା ନିକଟରେ ବୟସର ଗୋପନ ମିଥ୍ୟା ।

"ବଡ଼ ସାଂଘାତିକ ସତ ଯେ :
ବୟସ୍କାମାନେ ବେଳେ ବେଳେ
ବୟସର ଗଡ଼ୁଥିବା ପେଣ୍ଡୁକୁ
ଜାକି ଧରନ୍ତି ଆପଣା ଗ୍ରୀବରେ,
ଏବଂ ଇତସ୍ତତଃ ଆୟୁଷର ଫୁଲକୁ
ଗୋଟାଇ ନିଅନ୍ତି
ଆପଣାର ଚଘ ଶାଢ଼ୀର ପଣତରେ ।"
( ବନ୍ଧ୍ୟା—ସ୍ରୋତର ନାମ ଋତ )

---

୮ । ମହାନ୍ତି; ଶରତକୁମାର—ଅସ୍ତିତ୍ୱବାଦର ମର୍ମକଥା – ପୃ. ୬୫ ।
୯ । Christopher, Candwell- Illusion and Reality, New Delhi, 1981, PP. 165.

ଗୋଧୂଳିର ଗୁରୁ ଅରୁଣିମା ସ୍ଥାନରେ ଦେଖାଯାଏ ଅପବିତ୍ର କାମନାର ଧୂସର ବର୍ଣ୍ଣ । କିନ୍ତୁ ପାପବୋଧର କାଳିମାରେ ପ୍ରେମକୁ ଉଜ୍ଜ୍ୱଳ କରିବାର ପକ୍ଷପାତୀ ସେ ନୁହନ୍ତି । ତାହାରି ହୁଏତ ଆତ୍ମପ୍ରକାଶର ନିଷ୍କପଟ ଗୋପନୀୟତା । "ଯେ ଯେଉଁଠି ଥିଲେ ବି/ ବଂଶୀଟିର ନିକ୍ୱଣରେ/ ବର୍ଷାର ଝୁପୁରୁ ଝାପୁରୁ ହଣ୍ଣାପ । /ତରଙ୍ଗିଣୀ ଆକାଶ/ ଓ ପ୍ରସନ୍ନ ସକାଳ ।" (ଶୋଭାବନ—ଚିତା ଅଙ୍କା ତା'ଙ୍କର ଛବି : ଯଶୋଧ୍ୱ ତାହାରେ ଅପେକ୍ଷାରତ ପୃଥିବୀ) । ପ୍ରିୟ ଯେଉଁ ପରିସ୍ଥିତିରେ ଥିଲେ ବି ଏଇ ଦୁର୍ଦ୍ଦାନ୍ତ ପ୍ରେମଚେତନାର ଶରବ୍ୟ ହେବାକୁ ବାଧ୍ୟ ।

ଶ୍ରୀ ଲେଙ୍କାଙ୍କ ପ୍ରେମକବିତାର ଏକ ବୈଶିଷ୍ଟ୍ୟ ହେଉଛି ଜୀବନ ଉପରେ ପ୍ରେମାନୁଭୂତିର ସୁଦୂର ପ୍ରସାରୀ ପ୍ରଭାବ । ପ୍ରତିଟି ପ୍ରେମକବିତା ଏଇ ବିଶିଷ୍ଟ ଭାବନାର ଅନ୍ତରଙ୍ଗ ପ୍ରକାଶ । ନାରୀ-ପୁରୁଷ ପ୍ରେମର ତୀକ୍ଷ୍ଣ ପର୍ଯ୍ୟବେକ୍ଷଣ, ବସ୍ତୁନିଷ୍ଠ ଦୃଷ୍ଟି (Objective vision) ରେ ପ୍ରେମର ସାଧାରଣୀକରଣ ଏବଂ ପ୍ରେମ ସମ୍ପର୍କୀୟ ନିଜସ୍ୱ ଧାରଣାରେ ଅଟଳ ରହିବା କବି ଶ୍ରୀ ଲେଙ୍କାଙ୍କର ନୂତନତ୍ୱ ବୋଲି କୁହାଯାଇପାରେ । 'ସ୍ମରଣ ବିସ୍ମରଣ'ର ଅଧିକାଂଶ କବିତା ଏ ଦୃଷ୍ଟିରୁ ଅତି ଉଚ୍ଚକୋଟୀର । ଦେହ ଓ ଦାହର ତାହା ଅକପଟ ଅନୁଭୂତି । ଏଥିରେ ପାଠକମାନଙ୍କୁ ବୌଦ୍ଧିକ ଆବର୍ତ୍ତ ଭିତରେ ପକାଇବାକୁ ଅପଚେଷ୍ଟା କରାଯାଇ ନାହିଁ । ଡକ୍ଟର ଜାନକୀବଲ୍ଲଭ ମହାନ୍ତି ଶ୍ରୀ ଲେଙ୍କାଙ୍କ ପ୍ରେମକବିତାକୁ ବର୍ତ୍ତମାନ ଯାନ୍ତ୍ରିକ ଯୁଗଯନ୍ତ୍ରଣାର ଅଭିବ୍ୟକ୍ତି ବୋଲି ମତ ଦେଇଛନ୍ତି । ଆଜି ପ୍ରେମର ସ୍ୱର୍ଗୀୟ ମହତ୍ତ୍ୱ କପଟ ଯନ୍ତ୍ରୀ, ସନାତନ ମୂଲ୍ୟବୋଧ ରକ୍ତମାଂସର ପିଞ୍ଜରା ଭିତରେ କପଟ ଶ୍ୱାସରୁଦ୍ଧ, ତା'ର ଆଭାସ ଓ ପରିଚର୍ଯ୍ୟା କମଳାକାନ୍ତ ଲେଙ୍କାଙ୍କ ପ୍ରେମକବିତା । (୧୦) ଅଧ୍ୟାପକ ବନମାଳୀ କାରକଙ୍କ ଭାଷାରେ—"କମଳାକାନ୍ତ ଲେଙ୍କାଙ୍କ କବିତା ସଙ୍କଳନ 'ସ୍ମରଣ ବିସ୍ମରଣ' ରକ୍ତସ୍ନାନ ଓ ଅଶ୍ରୁସ୍ନାନର ଆଲେଖ୍ୟ । ଶରୀର ଅନୁଭବ ଓ ଅଭିଜ୍ଞତାର ଦର୍ପଣ ଏବଂ ଅକପଟ ଜୀବନ ଓ ଆତ୍ମସ୍ୱୀକାରୋକ୍ତିର ଦଲିଲ ଟିଏ ।" (୧୧) ଅଧ୍ୟାପକ ପୀତାମ୍ବର ପ୍ରଧାନଙ୍କ ମତରେ ଦେହ ଓ ଦହନଠାରୁ ତାଙ୍କର 'ସ୍ମରଣ ବିସ୍ମରଣ'ର ପ୍ରେମକବିତା ଦେଖି ଦୂର ଯାଇପାରନ୍ତି । ଏହା କବି ମନର ଛଳନାହୀନ ଆତ୍ମପ୍ରକାଶ । ଆବେଗପ୍ରବଣତା

---

୧୦ । ମହାନ୍ତି, ଜାନକୀବଲ୍ଲଭ—'କବିତାର ମୁହଁ'ରେ ପ୍ରକାଶିତ କବିଙ୍କ ସୃଷ୍ଟି ପ୍ରତି ଓ ଓ କାବ୍ୟପୁରୁଷ ସମ୍ପର୍କରେ ବିଭିନ୍ନ ପତ୍ର ପତ୍ରିକା ଓ ବ୍ୟକ୍ତି ବିଶେଷଙ୍କ କ୍ରିୟା-ପ୍ରତିକ୍ରିୟା ।

୧୧ । କାରକ, ବନମାଳୀ—ତତ୍ରୈବ ।

ସହ ସୌନ୍ଦର୍ଯ୍ୟବୋଧର ସମନ୍ୱୟ ତାଙ୍କ କବିତାର ସ୍ୱର୍ଣ୍ଣ ପ୍ରତୀକରେ ମୂର୍ତ୍ତି । (୧୨)
ଶ୍ରୀ ଚିତ୍ତରଞ୍ଜନ ଦାସ କମଳାକାନ୍ତଙ୍କ ପ୍ରେମ କବିତାକୁ 'ସ୍ମରଣ ବିସ୍ମରଣର କବିତା
ବୋଲି କହିଲବେଳେ କମଳାକାନ୍ତଙ୍କ ମନସ୍ତାତ୍ତ୍ୱିକ ଅନ୍ତର୍ଦୃଷ୍ଟିର ଗୁରୁତ୍ୱକୁ
ଉପଲବ୍ଧି କରିଛନ୍ତି । ପ୍ରେମଚେତନାର ପ୍ରୟୋଗ କ୍ଷେତ୍ରରେ ତାଙ୍କ ସଫଳତାର
ସଂକ୍ଷିପ୍ତ ମୂଲ୍ୟାଙ୍କନ କରି ଶ୍ରୀ ଦାସ କହନ୍ତି -"ସ୍ମରଣ ସହିତ ବିସ୍ମରଣ ଲାଗି
ରହିଥାଏ, ନୂତନ ସ୍ମରଣ ଲାଗି ଅନେକ ଅଭ୍ୟନ୍ତର ବିସ୍ମରଣ ପ୍ରୟୋଜନ ହୁଏ ।
ଏହା ମନୋବିଜ୍ଞାନର ଏକ ସିଦ୍ଧାନ୍ତ, ଅନ୍ତଃବିଜ୍ଞାନର ମଧ୍ୟ ଏକ ସିଦ୍ଧାନ୍ତ ।
ତେଣୁ ସ୍ମରଣକୁ କଦାପି ସେହି ପୁରୁଣା ହ୍ରଦଟାର ଜଳ ସଂଚଳନରେ କେବଳ
ଏକ ସନ୍ତରଣ ବୋଲି କୁହାଯିବ ନାହିଁ । ଏହାକୁ ଅଧିକ ଯଥାର୍ଥ ଭାବରେ ଏକ
ଉତ୍ତରଣ ବୋଲି କୁହାଯାଇପାରିବ । ସ୍ମୃତିମାନ ଲାଗି ବିସ୍ମୃତି ଆସିବାକୁ ପଡ଼େ,
ମଣିଷ ଯେଉଁ ପର୍ଯ୍ୟାୟକୁ ଆସି ଯାହାର ଆକାଂକ୍ଷା କରେ, ସେତେବେଳେ ତାହାର
ସ୍ମରଣ କରେ । ତେଣୁ ଏହି ସ୍ମରଣକୁ ଏକ ଆକାଂକ୍ଷା ବୋଲି ମଧ୍ୟ ବେଶ୍
କୁହାଯାଇପାରିବ । ଆକାଂକ୍ଷାର ସବୁବେଳେ ଏକ ସ୍ତର ରହିଛି । ସେହି ଅନୁସାରେ
ସ୍ମରଣରେ ମଧ୍ୟ ସ୍ତର ରହିବ । ତେଣୁ ବିସ୍ମରଣ ଲାଗି ମଧ୍ୟ ଏକ ସ୍ତର ଅବଶ୍ୟ
ରହିବ ବୋଲି କୁହାଯାଇପାରିବ କି ? (୧୩) ଶ୍ରୀ ଲେଙ୍କାଙ୍କ ପ୍ରେମକବିତାର
ସ୍ୱରୂପ ଆବିଷ୍କାର ପାଇଁ ଏବଂ ସଫଳତାର ମୂଲ୍ୟାୟନ ପାଇଁ ଶ୍ରୀ ଦାସଙ୍କର ଏହି
ମନ୍ତବ୍ୟଟି ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ପ୍ରେମର ପରିବର୍ତ୍ତିତ ରୂପସ୍ୱରୂପ ତାଙ୍କ କବିତାକୁ
କିଭଳି ଆଚ୍ଛାଦିତ କରିଛି, ଆଲୋଚନା ପରେ ସ୍ପଷ୍ଟ ହେବ । ତେବେ ଶ୍ରୀ ଲେଙ୍କାଙ୍କ
ପ୍ରେମକବିତାର ଦୁଇଟି ବିଶେଷ ଭୂମିକା ଲକ୍ଷ୍ୟ କରି ହୁଏ । (କ) ମଣିଷର
ଅବଚେତନ ଭିତ୍ତିରେ ପ୍ରେମର ବିଶ୍ଳେଷଣ, (ଖ) ନିଜ ପ୍ରେମ ଭାବନାର ବିଭିନ୍ନଭଙ୍ଗୀ
ଆବିଷ୍କାର ଛଳରେ ତାର ଯଥାର୍ଥ ପ୍ରତିପାଦନ । ଏହାକୁ ଆଉ ଟିକିଏ ସୂକ୍ଷ୍ମ-
ଭାବରେ ଅନୁଧ୍ୟାନ କଲେ ଶ୍ରୀ ଲେଙ୍କାଙ୍କର ପ୍ରେମଚେତନାର ଚାରୋଟି ଲକ୍ଷଣ
ଦେଖାଯାଏ । (୧) ଯୌନଭିତ୍ତିକ ପ୍ରେମାନୁଭୂତି, (୨) ଆତ୍ମିକ ପ୍ରେମାନୁଭୂତି,
(୩) ଶୃଙ୍ଖଳିତ ପ୍ରେମାନୁଭୂତି, (୪) ମାନବବାଦୀ ପ୍ରେମାନୁଭୂତି । ଏସବୁ
ଶ୍ରୀ ଲେଙ୍କାଙ୍କ ବହୁବିଧ ପ୍ରେମାନୁଭବର ସମାହାର ।

---

୧୨ । ପ୍ରଧାନ, ପୀତାମ୍ବର— ତଦେବ ।

୧୩ । ଦାସ, ଚିତ୍ତରଞ୍ଜନ—"ସ୍ମରଣ ବିସ୍ମରଣ," କମଳାକାନ୍ତ ଲେଙ୍କା.
୧୯୬୩ – କବି ଶ୍ରୀ ଲେଙ୍କାଙ୍କଠାରୁ ପ୍ରାପ୍ତ ଶ୍ରୀ ଚିତ୍ତରଞ୍ଜନ ଦାସଙ୍କ ପତ୍ର
( ୧୭ । ୭ । ୧୯୭୪ ) ।

## ଯୌନଭିତ୍ତିକ ପ୍ରେମାନୁଭୂତି :—

ପ୍ରେମିକ ହେବା ମଣିଷ ପକ୍ଷରେ ଏକ ବଡ଼ ଆଶୀର୍ବାଦ । ପ୍ରେମହିଁ ସବୁ କିଛି ପ୍ରାପ୍ତି-ଅପ୍ରାପ୍ତିର ଊର୍ଦ୍ଧ୍ୱରେ ମଣିଷକୁ ବସାଇ ଦେଇ ପାରେ । କିନ୍ତୁ ପ୍ରେମ ଯୌନଭିତ୍ତିକ ହେବା ଦିନଠାରୁ ଏଇ ସନାତନ ମୂଲ୍ୟବୋଧର ପରିବର୍ତ୍ତନ ଘଟିଛି । ଅଧୁନାତନ କବିର ପ୍ରେମାନୁଭୂତି ଆଜି ଅନେକାଂଶରେ ଅସ୍ଥିମାଂସ ସମ୍ବନ୍ଧୀୟ । କ୍ଷଣଭଙ୍ଗୁର ମିଳନ ମୁହୂର୍ତ୍ତକୁ ସ୍ଥାୟିତ୍ୱ ଦେବାର ପ୍ରବଣତା ଆଜି ନାହିଁ କହିଲେ ଚଳେ । ଫଳତଃ, ପ୍ରେମ ଆଜି ଜୀବନ ଯନ୍ତ୍ରଣାର ଫଳାଭିଷିକ୍ତ । ଜୈବିକ ମିଳନରେ ହିଁ ଥିଲେ ଆନନ୍ଦ ପାଇବାର ଇଚ୍ଛା ଦୁରତିକ୍ରମ୍ୟ । ଶ୍ରୀ ଲେଙ୍କା ପାରଂପରିକ ପ୍ରେମକବିତାଠାରୁ ବିଦାୟ ନେବା ପରେ ଏଇ ନୂଆ ଭାବନା ତାଙ୍କ ମାନସଲୋକରେ ବଳବତ୍ତର ହୋଇଛି । 'ସୁନାଫସଲ' ଓ 'ପ୍ରୀତି ଓ ପ୍ରତୀତି'ର ମାନସିଂହ ସୁଲଭ ପ୍ରେମରେ ସେ ଦେଖିଛନ୍ତି ଯୁଗଳ ପ୍ରେମର ଅତ୍ୟନ୍ତିକ ପ୍ରୀତି । ଏହାଦ୍ୱାରା ଅନ୍ତର୍ଚେତନାର ସମର୍ଥନ କବିଙ୍କୁ ମିଳିନାହିଁ । ତେଣୁ ଏହାକୁ ଲକ୍ଷ୍ୟ କରି ତାଙ୍କ ପ୍ରେମଚେତନାର ପୁନର୍ବିନ୍ୟାସ ଘଟିଛି । 'ଉତ୍ତରଣ'ର ଭାବଗତ ସ୍ୱାତନ୍ତ୍ର୍ୟ କବିଙ୍କ ଚିତ୍ତ ପରିବର୍ତ୍ତନର ସଙ୍କେତ ସୂଚୀ । "ମୁଁ ସମ୍ରାଟ୍ ! ମୋର କ୍ଷୁଧିତ ଓ ଭୋଗବତୀ କ୍ଷମତାର ନିଆଁ ଜଳୁଚି । /ମୋର ଶବ୍ଦ, ବର୍ଣ୍ଣ, ଗନ୍ଧ ଓ ସ୍ପର୍ଶର ଝରକାରେ କୋପମୁକ୍ତ ହିଂସାର ତରବାରୀ । /ମୁଁ ଏକ ରୁଗ୍ଣ ଚେତନାର ପେଟିକାରେ ଏକ ବିଷଧର କୁଟିଳ-ସମ୍ରାଟ୍ ।" ( ଉତ୍ତରଣ—ପୃ. ୩ ) । ସମ୍ଭୋଗାତୁର ପ୍ରେମ କ୍ଷେତ୍ରରେ ଅବତୀର୍ଣ୍ଣ ହେବାର ଏହା ପ୍ରଥମ ସ୍ଫୁଟଶ୍ରୁତି । ସେଥିପାଇଁ ମଧ୍ୟଯୁଗୀୟ ପ୍ରେମପ୍ରତୀତି ବିଲୁପ୍ତ ଓ ନାରୀତାର ପୁଷ୍ଟ ଯୌବନରେ ତୀକ୍ଷ୍ଣ ବର୍ଛାର ନିର୍ମମ ଆଘାତ । କବି କଣ୍ଠରେ ପ୍ରେମର ଏଇ ଆତଙ୍କିତ ରୂପ ନିମ୍ନ ପଂକ୍ତିରେ ସ୍ପଷ୍ଟ ।

> "ବର୍ତ୍ତମାନ ଅସୁସ୍ଥ ଅନୁଭୂତିର ରଞ୍ଜନ ବିଳାସ ।
> କଦମ୍ବର ଗନ୍ଧ ଓ ପକ୍ୱ ଧାନର ବାସ୍ନାରେ
> ନର୍ତ୍ତକୀର ସବିନୀତ ଡାକରା । ବାରାଙ୍ଗନାର
> ପ୍ରୀତିପ୍ରଦ ଅଙ୍ଗନରେ ସନ୍ଦେହମୁକ୍ତ କ୍ଷୁଧାର ଆର୍ତ୍ତନାଦ ।"
>
> (ଉତ୍ତରଣ--ପୃ. ୬ )

ଶଚୀ, ମେନକା, ଉର୍ବଶୀର ଅନ୍ୱେଷଣ ଭିତରେ ଆଜିର ମଣିଷ ଖୋଜୁଛି ଯୌନକାମନାର ପ୍ରଶମନ । ଏହି ଶୋଚନୀୟ ଇଚ୍ଛା କବିଙ୍କ ବହୁଧୃତ ପ୍ରେମର ଦୈହିକ ପ୍ରତିଧ୍ୱନି । ଯୌବନୋଦ୍ଦୀପ୍ତ କବିମାନସର, ଦୈହିକ କାମନାର ଏହା ଏକ ପୁଷ୍ପିତ ଋତୁ । ପୀଡ଼ନର କଣ୍ଟକିତ ଫୁଲଶଯ୍ୟାରେ କବି ଯେପରି ଜୀବନର ରସ

ଲୁଷିବାରେ ପ୍ରମତ୍ତ । ନଗ୍ନତାର ସ୍ୱରୂପ ଅନ୍ୱେଷଣ ଆଜି ଯେପରି ତାର ଲକ୍ଷ୍ୟଲିପି । ଅତୀତର ଅବାଧ ସାଧନ କରୁଥିବା ପ୍ରେମିକଠାରୁ ଏହାର ଦୂରତା ସହଜରେ ବାରି ହୋଇପଡ଼େ । ପ୍ରେମିକ ଏଠି ଭୀରୁ, କାପୁରୁଷ—"ମୋର କାପୁରୁଷତାର ହେ ଯୌବନର ଉପବନ" ! (ଉତ୍ତରଣ – ପୃ. ୧୩) ଅତୀତରେ ଏଇ ଭୀରୁତାର ସ୍ୱୀକୃତି ମିଳୁ ନ ଥିଲା । ଏବେ କିନ୍ତୁ ଆଧୁନିକ କବି ଶ୍ରୀ ଲେଙ୍କା ସେଇ ଭୀରୁତାରେ ଜୀବନର ପ୍ରତ୍ୟୟ ସନ୍ଧାନରେ ବ୍ୟସ୍ତ । ଅହରହ ମୃତ୍ୟୁ ଚେତନା ପ୍ରେମର ଏଇ ପରାଜୟ ପାଇଁ ଦାୟୀ । ନିଃସଙ୍ଗତା ମୃତ୍ୟୁର ସହଯାତ୍ରୀ । ତେଣୁ କବିର ଦୁସ୍ୱପ୍ନ —"ଶୂନ୍ୟତାର ପିଣ୍ଡରେ ଶିଶିରର ପାଦ ଶବ୍ଦ ଓ ରକ୍ତମଗ୍ନା ନାରୀର ମନରେ ଆକାଶର କ୍ରନ୍ଦନ ।" (ଉତ୍ତରଣ—ପୃ. ୧୮) । କବି ପାରିପାର୍ଶ୍ୱିକ ଅବସ୍ଥାର ଯନ୍ତ୍ରଣା ସହିବାକୁ ବାଧ୍ୟ । ସେଥିପାଇଁ ଏ ପ୍ରେମ ପୃଷ୍ଠତଃ ଯୌନଭିତ୍ତିକ । ଏଥିରେ ସଫଳତାର ସମ୍ଭାବନା କ୍ଷୀଣ ଓ ପ୍ରେମର ଅସମ୍ଭାବ୍ୟ ରୂପ ଆଜିର କବି ନିକଟରେ ସ୍ପଷ୍ଟ । W. H. Auden କହନ୍ତି –

"Love by ambition
of definition
suffers partition."

(Poems—x)

ଶ୍ରୀ ଲେଙ୍କା ତାହାଙ୍କୁ ଅନ୍ୟ ଭାବରେ କହନ୍ତି—"ବର୍ତ୍ତମାନ ଆମ ପୋଷାକ କନ୍ଦୁଛି" ଅର୍ଥାତ୍ ଆମ ପ୍ରେମର ପ୍ରାଚୀନ ଧାରଣା ଓ ବିଶ୍ୱାସ ଭୁଷୁଡ଼ି ଯାଇଛି । କିନ୍ତୁ ପ୍ଲାଟୋନିକ୍ ପ୍ରେମରେ ଏଇ ସମ୍ଭୋଗ ପ୍ରବଣତାକୁ ପ୍ରଶଂସା କରାଯାଇ ନାହିଁ । ତେବେ ଅଶ୍ଳୀଳ ପ୍ରେମକୁ ପ୍ଲେଟୋ ବା ସକ୍ରେଟିସ୍ ଅସ୍ୱୀକାର କରିପାରି ନାହାନ୍ତି । ଦେହ କାମନା ଭିତରେ ପ୍ରେମ ବଞ୍ଚି ରହୁ—ଏହା ସେମାନେ ସ୍ୱପ୍ନରେ ବି ଗ୍ରହଣ କରି ପାରିବେ ନାହିଁ । ଆଧୁନିକ କବି ଏଥିରେ ଏକମତ ନୁହନ୍ତି । ସେମାନେ କହନ୍ତି—ବୌଦ୍ଧିକ ସମ୍ପର୍କଦ୍ୱାରା ଯୌନସମ୍ପର୍କକୁ ମହତ୍ତ୍ୱମଣ୍ଡିତ କରାଯାଇପାରେ । ସମୁଦ୍ରକୁ ପିଠି କରି ଅର୍ଥାତ୍ ଜୀବନର ଅନ୍ୟସବୁ ବସ୍ତୁକୁ ସାମୟିକ ଭାବେ ତୁଚ୍ଛ କରି ମଣିଷ ଲୋଡ଼େଁ ସମ୍ଭୋଗର ସାଫଲ୍ୟ । ସେତେବେଳେ ଜଗତର ଅନ୍ୟ କାହାକୁ ଦେଖି ହୁଏନି, ଜୀବନର ବହୁଧା ବିସ୍ତୀର୍ଣ୍ଣ ବାସ୍ତବିକତାକୁ ଅନୁଭବ କରି ହୁଏନି । ଏହା ଏକପ୍ରକାର 'ବ୍ରାହ୍ମୀସ୍ଥିତି' (ଯଦିଓ 'ଗୀତା' ଅର୍ଥରେ ନୁହେଁ) । ତେଣୁ ଏହାର ସ୍ଥାୟିତ୍ୱ ଅଳ୍ପ କ୍ଷଣ । ଯୌନାକାଂକ୍ଷା ନିର୍ବହଣର ଏହା ଏକ ଉପାୟ ।

"ଆମେ ଏଠି ଶୋଇ ଶୋଇ ସମୁଦ୍ରର ଶାମୁକା ପରାଏ
ଡୁବ ଦେଲୁ ସମୁଦ୍ରରେ । ପହଁରିଲୁ ଅଜାତ ଜଳରେ ।

ଜଳର ଭଉଁରୀ ସ୍ୱର୍ଗ ପବନର କପୋତ୍ ଦେଖି
ନନ୍ଦିଲା ହୃଦୟର ଦୀପ ଘୁଞ୍ଚିଗଲା ଶିଖାର ଆଲୁଅ
ଗାଧୋଇଲୁ ଗୋଟାପଣେ ସମୁଦ୍ରରୁ ଫେରିବା ବାଟରେ ।
ଆଖିରେ ଅରଣ୍ୟ ନଦୀ । ଫୁଲ ଝରେ ବାଲିର ଶେଯରେ ।”
(ସମୁଦ୍ରକୁ ପିଠି କରି – ସୂରଣ ବସୁରଣ)

ଶାମୁକା ଏଠାରେ ସେକ୍ସର ପ୍ରତୀକ । ଉଦଗ୍ର କାମନାର ଜନ୍ମ ଭଉଁରୀରେ ଅବଗାହନ କରିବାର ପ୍ରବୃତ୍ତି ଏଠି ଏତେ ସୁସ୍ପଷ୍ଟ ଯେ ଏହା ଭିତରୁ ଅଶ୍ଳୀଳ କାମନା ଭିନ୍ନ ଅନ୍ୟ କିଛି ଆଶା କରିବା ନିରର୍ଥକ । ଅନ୍ୟ ଏକ କବିତା ‘ଶାମୁକା’ରେ ଜୀବନର, ପ୍ରେମର ଓ ବୈରାଗ୍ୟର ଗମ୍ଭୀର ଅର୍ଥବୋଧ ଯୌନିକ ରୂପାୟନରେ ଚମତ୍କାର ଭାବେ ମଧ୍ୟ ପ୍ରକାଶିତ ।

“ତୁମକୁ ମୁକ୍ତ କଲେ ସମୁଦ୍ର ।
ତୁମକୁ ଯୁକ୍ତ କଲେ ସନ୍ନ୍ୟାସ ।
ଓ ତୁମକୁ ଛିନ୍ନ କଲେ
ବଦାଣ୍ଡି ପୃଥିବୀର ହାହାକାର !”
(ଶାମୁକା —ସୂରଣ ବସୁରଣ)

ନାରୀ ଯୌନାଙ୍ଗର ପ୍ରତୀକ ଶାମୁକାକୁ ମୁକ୍ତ କଲେ ତା’ ଭିତରୁ ଦିଶେ ଜୀବନର ରହସ୍ୟମୟ ସ୍ନିଗ୍ଧ ଓ ଶାମୁକା ମୁହଁ ଫିଟାଇଲେ ପ୍ରଥମେ ଦେଖେ ସମୁଦ୍ରକୁ । ସମୁଦ୍ର : ଗମ୍ଭୀରତା, ବ୍ୟାପକତା ଓ ବର୍ତ୍ତୁଳତାର ପ୍ରତୀକ । ସେହିପରି ନାରୀ ସାନ୍ନିଧ୍ୟରେ ଆସେ ଜୀବନର ଗଭୀର ଅନୁଭୂତି, ବ୍ୟାପକ ଆଧିପତ୍ୟ ଓ ବର୍ତ୍ତୁଳ ଉଷ୍ଣତା । ସମଗ୍ର ସୃଷ୍ଟି ମୂଳରେ ଏଇ ଆଶ୍ଚର୍ଯ୍ୟଜନକ ରହସ୍ୟ ଲୁକ୍କାୟିତ । ବୈରାଗ୍ୟ ଉଦ୍ରିକ୍ତ ହୁଏ ନାରୀ ସଂସ୍ପର୍ଶରୁ । ‘ତୁମକୁ ଯୁକ୍ତ କଲେ ସନ୍ନ୍ୟାସ’ ଏଇ ଗୂଢ଼ ଅର୍ଥ ବହନ କରେ । ଅଶ୍ଳୀଳ କାମନାର ଆବେଦନରେ ସରିଯାଏ ଜୀବନ, ଓ ଜନ୍ମନିଏ ସନ୍ନ୍ୟାସ । ସୃଷ୍ଟିର ଆରମ୍ଭରୁ ମନୁଷ୍ୟ ତାର ଅର୍ଦ୍ଧାଙ୍ଗକୁ ଖୋଜି ଆସୁଛି । ସେଇ ଅର୍ଦ୍ଧାଙ୍ଗକୁ ପାଇବାର ଇଚ୍ଛା ଭିତରେ ଲୁଚି ରହିଛି ପ୍ରେମ । ଆରିଷ୍ଟୋଫେନିସଙ୍କ ମତରେ—‘ଯିଏ ତାର ଅର୍ଦ୍ଧାଙ୍ଗକୁ ଖୋଜି ପାଉଛି, ତାର ପ୍ରେମ ସଫଳ ହୋଇଛି । ତା’ଠାରୁ ଅଧିକ ସୁଖୀ କେହି ନାହିଁ ।’ (୧୪) ନାରୀ ପ୍ରତି ପୁରୁଷର ଆକର୍ଷଣରେ ଏହା ହୁଏତ ଏକ ପ୍ରମୁଖ କାରଣ । ସେଇ ନାରୀ ଅଙ୍ଗକୁ ଅସ୍ୱୀକାର କଲେ ସ୍ୱର୍ଗ ଚୂରମାର ହୋଇଯାଏ ପୃଥିବୀ । ହାହାକାରରେ ସନ୍ତପ୍ତ ହୋଇଯାଏ ବିଶ୍ୱଗ୍ରାସୀ ଜୈବିକ ପ୍ରବୃତ୍ତି । ସବୁ ଶାମୁକା ଭିତରେ ଥାଏ ମାଂସ;

---

୧୪ । ମହାନ୍ତି, ଶରତକୁମାର—ସକ୍ରେଟିସ୍ ଓ ପ୍ଲେଟୋ, ୧୯୭୦, ପୃ. ୩୮୧ ।

କିନ୍ତୁ ସବୁଥିରେ ନ ଥାଏ ମୁକ୍ତା । ମାଂସ ଅଣ୍ଡାକୁ ଅଣ୍ଡାକୁ କେତେବେଳେ ମୁକ୍ତାଖଣ୍ଡ ମିଳିଥାଏ କେଉଁ ଏକ ଶାମୁକା ଗର୍ଭରୁ । ସେଇ ନାରୀ ମାଂସ ଲେଖି ମଣିଷ ମାଂସକୁ ଛିନ୍‌ଭିନ୍ କଲାବେଳେ କେଉଁ ଏକ ଶୁଭ ମୁହୂର୍ତ୍ତରେ ସନ୍ଧାନ ପାଇଥାଏ ମୁକ୍ତିରୂପୀ ଆନନ୍ଦର । ଯୌନ ଆନନ୍ଦ ସେଠି ତୁଚ୍ଛ ହୋଇଯାଏ । ଆମ ତନ୍ତ୍ର ସାଧନାର ଅନ୍ତର୍ନିହିତ ରହସ୍ୟ ଏଇ ତାନ୍ତ୍ରିକ ଜିଜ୍ଞାସା ଅଡ଼କୁ ସନ୍ଧାନରେ ଟାଣି ନେଇଯାଏ । କିନ୍ତୁ ସମସ୍ତେ ଏଇ ମୁକ୍ତାର ସନ୍ଧାନ ପାଇବା ଅସମ୍ଭବ ।

ତଥାପି ଆଶା-କଳ୍ପନା, ସଫଳତାକୁ ଭିତ୍ତି କରି ଉଦ୍ୟମ ଅବ୍ୟାହତ ରହେ । ନାରୀ ପୁରୁଷକୁ ଯୁକ୍ତ କରେ, ମୁକ୍ତ କରେ, ପୁଣି ଛନ୍ନ କରାଏ । କବି କିନ୍ତୁ ମୁକ୍ତାର ସନ୍ଧାନୀ ହେବାକୁ ଅନ୍ତିମ ନିଷ୍ପତ୍ତି ନେଇଛନ୍ତି । ସେ ଯୌନସୁଲଭ ପ୍ରେମ ଭିତରେ ମୁକ୍ତିର ସ୍ୱାଦ ବୁଝିବାକୁ ଲାଳସୀ । ଆଧୁନିକ ମଣିଷ ପାଇଁ ଏହାଠାରୁ ଆଶ୍ୱାସନାର ବିଷୟ ଆଉ କିଛି ନାହିଁ । ଶ୍ରୀ ଲେଙ୍କାଙ୍କ ପ୍ରେମର ଏଇ ଦାର୍ଶନିକ ବିଶ୍ଳେଷଣ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । କବିତାଟି ନିଜସ୍ୱ ମହିମାରେ ଉଦ୍‌ଭାସିତ । ମୋର ବିଶ୍ୱାସ, ଏ କବିତା ଶ୍ରୀ ଲେଙ୍କାଙ୍କ ପ୍ରେମାନୁଭୂତିର ବୈଚିତ୍ର୍ୟକୁ ଗୋଟାଏ ମାତ୍ର ସୂତ୍ରରେ ବାନ୍ଧି ଦେଇ ପାରିଛି ।

ଯୌନାକାଂକ୍ଷା ସୃଜନଶୀଳତାର ଏକ ପ୍ରଚଣ୍ଡ ଶକ୍ତି । ମଣିଷର ବ୍ୟକ୍ତିତ୍ୱକୁ ସନ୍ତୁଳିତ ଉପାୟରେ ଧରି ରଖିବାର ଏହା ଗୋଟାଏ ମାନସିକ ଦୃଷ୍ଟି । ସ୍ନାୟୁସଂସ୍ଥାର ଏହା ଏକ ଅମୂର୍ତ୍ତ ଆବେଗ । ନିଜର ଜଣେ ଉପଯୁକ୍ତ ସାଥୀ ନ ପାଇବା ପର୍ଯ୍ୟନ୍ତ ମଣିଷର ଅପୂର୍ଣ୍ଣତା ଦୂର ହୁଏ ନାହିଁ ଏବଂ ଶାନ୍ତିର କୋଠରୀ ରୁଦ୍ଧ ହୋଇ ରହିଥାଏ । ଯେଉଁ ନାରୀମାନେ ଜୀବନର ଏଇ ସ୍ୱପ୍ନକୁ ବାସ୍ତବାୟିତ କରି ପାରନ୍ତି ନାହିଁ, ସେମାନଙ୍କ ଜୀବନର ମଲା ନଈ କୂଳରେ ବାଜେ ବ୍ୟର୍ଥତାର ସାହାନାଇ । (ହେ ମୋର ବାନ୍ଧବୀମାନେ—୧-ସ୍ମରଣ ବିସ୍ମରଣ) । ଅଥଚ ଚତୁର୍ଦ୍ଦିଗରେ ପୂର୍ଣ୍ଣ ପ୍ରେମର ବଜାର । କ୍ଲବ୍‌ରୁମ, ଲାଇବ୍ରେରୀ, ଟିଙ୍ଗସନ ଶ୍ରେଣୀ, କକ୍‌ଟେଲ ପାର୍ଟି, ପିକ୍‌ନିକ୍, ସବୁଆଡ଼େ ନାରୀପୁରୁଷର ଅବାଧ ମିଳାମିଶାର ଅବାରିତ ସୁଯୋଗ । "ଶୋଦଶୀ ବୁଢ଼ୀଟି ପ୍ରାୟ ରହି ରହି କରୁଛି ତାଗିଦ୍/ତୁମେ ସବୁ ମୋ ପ୍ରେମର ପାସ୍‌ପୋର୍ଟ ।" (ହେ ମୋର ବାନ୍ଧବୀମାନେ—୫-ସ୍ମରଣ ବିସ୍ମରଣ) । ପ୍ରେମକୁ 'ଗୋଦଶୀବୁଢ଼ୀ' ସହ ତୁଳନା କଲାବେଳେ ମନେ ପଡ଼ିଯାଏ ଔପନ୍ୟାସିକ ଶାନ୍ତନୁକୁମାର ଆଚାର୍ଯ୍ୟଙ୍କ 'ନରକକିନ୍ନର'ର ଗୋଦଶୀବୁଢ଼ୀଟି । ଶିକ୍‌ସାବାର୍, କ୍ଲବ୍, ମନ୍ଦିରର ପ୍ରଭୃତିଙ୍କ ଦେହ ବ୍ୟାପାରକୁ ପରାମର୍ଶିତ କରିବାରେ ଗୋଦଶୀବୁଢ଼ୀଟିର ନିର୍ବିକାର ଦୃଷ୍ଟି ପ୍ରେମର କାମୁକତାକୁ ସୂଚେଇ ଦିଏ ।

ଯୌନଚେତନାର ନଗ୍ନତା ସ୍ୱାଭାବିକ । କିନ୍ତୁ ନଗ୍ନତାରେ ଆନନ୍ଦ ନ ରହିଲେ ନୂଆ ନୂଆ ଭାବନାର ପରିସ୍ଫୁରଣ ନ ହେଲେ ଦେହ ଘଷା ହୋଇଯାଏ

ନଗ୍ନତାର ସ୍ୱାଦ । କବି ଶ୍ରୀ ଲେଙ୍କା ହିନ୍ଦୁ ନଗ୍ନତାର ନୂତନତ୍ୱ ବାରଛନ୍ତି । ଉଦ୍‌ଘାଟିତ ସୌନ୍ଦର୍ଯ୍ୟ ପରି ନଗ୍ନତା ଅରଣ୍ୟର ଚନ୍ଦ୍ରକଳା ଗଢ଼େ । ସମୁଜ୍ଜ୍ୱଳ ସୌନ୍ଦର୍ଯ୍ୟ କବିଙ୍କର ଅସ୍ଥିରତା ହୁଏ । ପୁଣି ନିର୍ବାପିତ ନିଆଁର ହୁତାଶ ପରି ନଗ୍ନତା ସଞ୍ଚର-ଯାଏ ଦେହକୁ । କବିଙ୍କ କାବ୍ୟନାୟିକାର ଦେହ ସୌନ୍ଦର୍ଯ୍ୟରେ ବିଭଳ ବିରୋଧୀ ଭାବାନୁଷଙ୍ଗ ଦେଖି ଯେତେବେଳେ ତାଙ୍କ ଜଙ୍ଘରେ ହାତ ରଖନ୍ତି ସେତେବେଳେ ନଗ୍ନତା ଓ ଗୋପନୀୟତାର ସଗୁପ୍ତ ଅର୍ଥ ଫିଟିଯାଏ । ସବୁ ଦେହ ଚେତନାର ରହସ୍ୟ ମୁକ୍ତ ଓ ଚିରହରଣ ମନେହୁଏ । 'ମୋକ୍ଷ' କବିତାଟି ଏ ଦୃଷ୍ଟିରୁ ଏକ ସାର୍ଥକ ସୃଷ୍ଟି । ଦେହ ଓ ଦାହର ଶେଷ କଥାଟି ନଗ୍ନତା । ସୃଷ୍ଟିର ଉନ୍ମେଷ କାଳରୁ ଏହାର ପ୍ରାଧାନ୍ୟ ସ୍ୱୀକାର କରାଯାଇଛି । ମିଳନ ପୂର୍ବର ଯେତେ ଉପଚାର ସବୁ ତୁଚ୍ଛ ଓ ଗୌଣ ମନେ ହୁଏ ।

"ହାତ ରଖିଲି ଓଠରେ—
କହିଲ :
ଲଜ୍ଜା ନିର୍ଲିପ୍ତ ଅବଧୂତ ।
ହାତ ରଖିଲି ଅଣ୍ଟାରେ—
କହିଲ :
ମଧ୍ୟ ସ୍ୱର୍ଗର ଇନ୍ଦ୍ରଜାଲ ଅନିଶ୍ଚିତ ।
ହାତ ରଖିଲି ଜଙ୍ଘରେ—
କହିଲ :
ଗୋପନୀୟତା ଚିର ହରଣ,
ଓ
ମୁକ୍ତ ॥"
(ମୋକ୍ଷ—"ଶତା ଅଙ୍କା କାନ୍ଥର ଛବି : ପରିଧି ବାହାରେ
ଅପେକ୍ଷାରତ ପୃଥିବୀ")

ପୁଣି ଦେହଭୋଗୀମାନେ ଜାଣନ୍ତି ମିଳନରେ ଶେଯର ଆବଶ୍ୟକତା । ନାରୀ ପୁରୁଷର ଚିରବାଞ୍ଛିତ ମୁହୂର୍ତ୍ତଟି ହାତମୁଠାକୁ ଆସିଗଲେ ସ୍ଥାନ ଅସ୍ଥାନ ସବୁ ଶେଯର ଆଭିଧାନିକ ଅର୍ଥ ସ୍ୱୀକାର କରନ୍ତି ନାହିଁ । ସବୁ ଶେଯମୟ ଜଣାଯାଏ । ଏପରିକି ସମ୍ଭୋଗକାଳର ନାରୀଟି କେବଳ ଶେଯ ହୋଇଯାଏ । ଏଇ ଭାବର ଚମତ୍କାର ଅଭିବ୍ୟକ୍ତି 'ଶେଯ' କବିତାରେ ଘଟିଛି । ନିଜ ଦୁଃଖସୁଖର ଋତୁକୁ ପରିକ୍ରମା କଲାବେଳେ କାବ୍ୟନାୟକ ଶେଯକୁହିଁ ପରିକ୍ରମା କରନ୍ତି ଏବଂ ଦୁଃଖର ମହିଣାରେ ସୁଦ୍ଧେ ଅଣିମା ପ୍ରାପ୍ତ ହୁଅନ୍ତି । "ତମେ ଗୋଟେ/ଶେଯ ହେଲ

ଯାଆନ୍ତି ନ,/ପ୍ରିୟମ୍ବଦା ।" (ଶେଯ) । ଆଜିର ମୁହୂର୍ତ୍ତିସର୍ବସ୍ୱ ମଣିଷ ପାଇଁ ଦେହ-ଭୋଗର ତାତ୍ପର୍ଯ୍ୟ ବେଶି ଅର୍ଥମୟ । ଜୀବନର ରୁକ୍ଷତା ଓ ରୂଢ଼ତାକୁ ମୁକାବିଲା କରିବା ପାଇଁ ରକ୍ତର ଆହ୍ୱାନ କେବଳ ଜୈବିକତାକୁ ଅଭିନନ୍ଦନ କରିପାରେ ।

"ରକ୍ତର ତୋରଣି ଫେଣ୍ଟି
ଡାକ ଗିଲେ ମୁମୂର୍ଷୁ ଜୀବନ !
ଦେହର ମାଉଁସ କାନ୍ଦେ
ମାଗେ କେବେ ମୁକ୍ତ ସମର୍ପଣ ?"
(ଏଠିସବୁ ଧାନ ବିଲ—ସ୍ଫୁରଣ ବିସ୍ଫୁରଣ)

ତେଣୁ ଶାଳୀନତାର ସଜ୍ଞା ମାନ ଏଠାରେ ପ୍ରେମ କରିବାର କିଛି ମାନେ ନାହିଁ । କୁଳୀନତା ଏଠି ଭ୍ରଷ୍ଟତା । ଶ୍ୱାସକୁ, ରକ୍ତକୁ ଓ ନିସ୍ତବ୍ଧତାର ସିଂହ-ଦ୍ୱାରକୁ ଉନ୍ମୁକ୍ତ କରିବା ପାଇଁ ଏସବୁ ସୌଜନ୍ୟର କୌଣସି ଆବଶ୍ୟକତା ନାହିଁ । କବି କହନ୍ତି—

"'ଆ' ପାଖକୁ, ଖୁବ୍ ପାଖକୁ ଆ'ରେ ନୈଶ ସୁନ୍ଦରୀ ।
ସୌନ୍ଦର୍ଯ୍ୟର ଅର୍ଥଘନ ଶବ୍ଦ ଏକା ତୁ ।
ସୌନ୍ଦର୍ଯ୍ୟର ହାତ ବାରଣି ଏ ରାତ ତୁ ।
ଛଟ ପଟା ରାତର ଫାଙ୍କାଣି ଉଡ଼ିଯାଏ—
ସୌନ୍ଦର୍ଯ୍ୟରେ ଏକା ତୁ ।"
(ସାରା ରାତି ଉଜାଗର—ଗୀତ ଗା' ନା ରେ ପକ୍ଷୀ)

ଭାବପ୍ରବଣତା ଅପେକ୍ଷା ଏ କବିତା ବେଶି ଭାବାତ୍ମକତାକୁ ସମର୍ଥନ କରେ । 'ନିତ୍ୟ ନିସ୍ମିତ'ର ୨୪ ନମ୍ବର କବିତାଟି ଏଇ ପରିପ୍ରେକ୍ଷିତରେ ମଧ୍ୟ ବିଶ୍ଳେଷ୍ୟ ।

"କିଛି ନ ହେଲେ ମିଠା,
ମାଂସ, ମାଛ, ଠା ପାଣି, ଠା ଭାତ ।
ସମତଳ ସ୍ତନ, ଜୈବିକ ଆଲିଙ୍ଗନ ।"
(ନିତ୍ୟ ନିସ୍ମିତ—ପୃ. ୨୪)

ପ୍ରେମ ଏଠାରେ ଏକ ପୁନରୁତ୍ପାଦନଶୀଳ (Regenerative) ଶକ୍ତି, ଯାହା ପ୍ରେମର ଅର୍ଥହୀନତାକୁ ଅର୍ଥ ପ୍ରଦାନ କରିଥାଏ । ହରବର୍ଟ ମାର୍କ୍ୟୁସ୍ ତାଙ୍କର "କାମ ଓ ସଭ୍ୟତା" (Eros and Civilisation) ପୁସ୍ତକରେ କହିଛନ୍ତି ଯେ— "ପ୍ରବୃତ୍ତିର ପରିତୃପ୍ତିରେ, ବିଶେଷ କରି କାମନାର ପରିପୋଷଣରେ ଉଚ୍ଚତର

ମୂଲ୍ୟବୋଧ ପ୍ରତି ଆଗ୍ରହଶୀଳ, ଉନ୍ନତତର ପ୍ରାଣୀ ହେଉଛି ମଣିଷ । ପରିଶେଷରେ କାମବାସନା ପ୍ରେମରେହିଁ ଗୌରବାନ୍ୱିତ ହେବା ବିଧେୟ ।" (୧୫)

ଯୌନାକାଂକ୍ଷା ଏକ ନାସ୍ତିସୂଚକ ଚେତନା ନୁହେଁ । ବରଂ ଏହା ଅସ୍ତିସୂଚକ । ସେଥିପାଇଁ ଈର୍ଷା, ସ୍ୱାର୍ଥପରତା, ହତାଶା ପ୍ରଭୃତି ନଞର୍ଥକ ବସ୍ତୁଠାରୁ କବିର ଦୃଷ୍ଟିଭଙ୍ଗୀ ପୃଥକ । 'ସ୍ମରଣ ବିସ୍ମରଣ'ର 'ସ୍ତନ', 'କେଶ', 'ପଥଭ୍ରଷ୍ଟର ଗୀତ' ପ୍ରଭୃତି କବିତା ଏହାର ପ୍ରମାଣ ଦିଅନ୍ତି । ନାରୀର ବିଭିନ୍ନ ଅବସ୍ଥାରେ ସ୍ତନର ପ୍ରଭାବ ଅପ୍ରତିହତ । କବି ଏହାର ଏକ ଚମତ୍କାର ବିଶ୍ଳେଷଣ କରିଛନ୍ତି । ମା'ର ସ୍ତନରୁ ପ୍ରେମିକାର ସ୍ତନର ଦୂରତ୍ୱ ଯୋଜନବ୍ୟାପୀ । ପୁଣି ପ୍ରେମିକାର ସ୍ତନରୁ ପତ୍ନୀର ସ୍ତନ ପର୍ଯ୍ୟନ୍ତ ଦୂରତ୍ୱ ମଧ୍ୟ ଅନେକ । କବିଙ୍କ ବର୍ଣ୍ଣନା ବେଶ୍ ରସୋତ୍ତୀର୍ଣ୍ଣ ।

"କାରଣ ମା'ର ସ୍ତନରୁ ମୋର ପ୍ରେମିକା ସ୍ତନକୁ
ଯୋଜନ ଯୋଜନ ଦୂର ଏବଂ ମୋ ଶରୀରର ଉତ୍ସୁକା ପ୍ରେମରେ
ଯଉବନ ପଳାତକ ସାଜେ । ମନେ ହୁଏ ମୋ ଭିତରେ
ପିଲାଳିଆ ସ୍ମୃତିଠାରୁ ବୟସର ମଧ୍ୟାହ୍ନକୁ ଝପି
ସୂର୍ଯ୍ୟାସ୍ତ ପୂର୍ବର ରଙ୍ଗମିଶି ମୁହଁକୁ ଏକାକାର କରେ !"
(ସ୍ତନ—ସ୍ମରଣ ବିସ୍ମରଣ)

ମା'ର ସ୍ତନଯୁଗଳରେ ବାତ୍ସଲ୍ୟର ଫଲ୍‌ଗୁ ଏବଂ ସେ ମମତା କ୍ଷୀର ହୋଇ ଝରିଆସେ ସନ୍ତାନର ମୁହଁକୁ । ମା'ର ଗୋଟାଏ ସ୍ତନରେ ମୁହଁ ଗୁଞ୍ଜି କ୍ଷୀର ପାନ କରୁଥିବାବେଳେ ଆର ସ୍ତନଟିକୁ ହାତରେ ଚେଲକଟିବା ଭିତରେ କବି ଶ୍ରୀ ଲେଙ୍କା ଅନୁମାନ କରିଛନ୍ତି ମା'ର ଅଧା ଦେହରେ କାମନାର ନଈ । ଗୋଟାଏ ପଟେ ମାତୃତ୍ୱ ଓ ଅନ୍ୟ ପାଖରେ ନାରୀତ୍ୱର ବୀଜତ୍ୱ । ବାସ୍ତବିକ୍ ଏକ ନୂତନ ବିଶ୍ଳେଷଣ । ଫ୍ରଏଡ୍‌ଙ୍କ ମନୋବିଜ୍ଞାନର ଏହା ଏକ ଚମକପ୍ରଦ ସିଦ୍ଧାନ୍ତ । ଜୀବନ ପାଇଁ ଏହା ନିଶ୍ଚୟ ଖୁବ୍ ନୈରାଶ୍ୟପୂର୍ଣ୍ଣ ଅଥଚ ଏକ ସତ୍ୟଶୀଳ ବିଭାବ, ଯାହାକୁ ଆଡଲର୍, ୟୁଙ୍ଗ୍ ପ୍ରଭୃତି ମନୋବିଜ୍ଞାନୀମାନେ ସମର୍ଥନ କରନ୍ତି । ନରନାରୀର ଯୌନ ପ୍ରେମର ଏହା ଏକ ଅବିରତ ସଂଗ୍ରାମ । କବିଙ୍କର ଏଇ ଅଦ୍ଭୁତ ବିଶ୍ଳେଷଣ ଗୋଟାଏ ଧର୍ମରେ ପଡ଼ି ଗଢ଼ିଆସୁଥିବା ମଣିଷ ପାଇଁ ଏକ ବିରାଟ ଆଘାତ । ମା'ର କାମନା କଥା ଭାବିବାକୁ ଖୁବ କଷ୍ଟ ଲାଗେ, କିନ୍ତୁ ସେ ସମ୍ଭାବନାକୁ ଅସ୍ୱୀକାର କରିବା କଷ୍ଟ । ପୁଣି ପ୍ରେମିକାର ବକ୍ଷୋଜରେ ମାତୃତ୍ୱର ଆବେଗ ଏକ ବିଚିତ୍ର ଘଟଣା । "ଏବେ ମୋର ପ୍ରେମିକାର ଉପାଶ୍ୱାନ ସ୍ତନର ସ୍ତବ୍‌ଧତା /ଭିଜା ଶାଢ଼ୀ ଛାଙ୍କି ମୋତେ ବିହ୍ୱଳ କଲାରୁ/ମା' କଥା ମନେପଡ଼େ ।" (ସ୍ତନ) । ପ୍ରେମିକା ନିକଟରେ

୧୫ । ମହାପାତ୍ର, ସୀତାକାନ୍ତ—ଭିନ୍ନ ଆକାଶ, ଭିନ୍ନ ମାଟି—୧୯୭୮-ପୃ. ୬୪୦

କବି ଉଡ଼ନ୍ତା ପକ୍ଷୀଟିଏ । ବହୁବର୍ଣ୍ଣୀ ଶାଢ଼ୀ, ବ୍ଲାଉଜ୍ ଓ ବ୍ରେସିୟାର ଭିତର ସେ କେବଳ ପ୍ରେମିକାକୁ ରୋମନ୍ଥନ କରନ୍ତି । ଏଥିରେ ନା ଥାଏ ଆନ୍ତରିକତା ନା ସମର୍ପଣ ! ତେଣୁ କବି କହନ୍ତି —"ଦିନର ଆଲୁଅ ଘୃଟି ସନ୍ତର ଭିତରେ/ରାତି ଉପସ୍ଥିତ ହେଲା ଭଳି ମୁଁ ଆସେ ଓ ଅନ୍ତର୍ହିତ ହୁଏ ।" ଅତି ଶକ୍ତିଶାଳୀ ଚିତ୍ର ମାଧ୍ୟମରେ ପ୍ରେମିକା, ମା' ଓ ସ୍ତ୍ରୀ ପ୍ରେମର ପାର୍ଥକ୍ୟ ସୂଚିତ ହୋଇଛି —

"ମୋ ପ୍ରେମିକା, ମୋ ମା' ଓ ମୋ ସ୍ତ୍ରୀଙ୍କ ସ୍ତନରେ
ଜହ୍ନିଫୁଲ, ବର୍ଷା ଏବଂ ଗ୍ରୀଷ୍ମର ଶାସନ !"

ଜହ୍ନିଫୁଲ ସନ୍ଧ୍ୟାରେ ଫୁଟି ସକାଳକୁ ମଉଳିଯାଏ । ତେଣୁ ପ୍ରେମିକା ସହ ତାଙ୍କର ସମ୍ପର୍କ ଦୈହିକ ଓ ସୌନ୍ଦର୍ଯ୍ୟଭିତ୍ତିକ, ପୁଣି ସମୟର ସ୍ୱଳ୍ପତା ସଚେତନ । ବର୍ଷା—ସ୍ନେହ, କରୁଣାର ପ୍ରତୀକ, ଓ ଏହା ମାତୃପ୍ରେମରେ ଉପଲବ୍ଧ । ଆଉ ଗ୍ରୀଷ୍ମ ! କଠୋରତା, ନିଷ୍ଠୁରତା, ଜ୍ୱଳନ ଓ ଗତାନୁଗତିକତାର ଭାଷା କହେ । ଯେଉଁ ଭାଷା ସାଂସାରିକତାରେ ନିମ୍ଜିତ ଆତଯାତ ସ୍ତ୍ରୀଟିର ପ୍ରେମରେ ରୂପାନ୍ତରିତ ହେବା ସ୍ୱାଭାବିକ । ସମୟର ଶାସନ ମାନି ପୁଣି ବାର୍ଦ୍ଧକ୍ୟ ଆସେ । ନାରୀଟି ବୁଢ଼ୀ ହୋଇଯାଏ । ଘଣ୍ଟି ଭଳି ସ୍ତନରୁ ସ୍ପଷ୍ଟ ହୋଇଯାଏ ଜୀବନର ଶେଷ ପ୍ରହରର ସତର୍କ ଘଣ୍ଟି ! ବୁଢ଼ୀଟି ହଳଦୀର ମଳିକୁଟି ସ୍ତନରୁ ଛଡ଼ାଇଲାବେଳେ ସୁଖଦୁଃଖର ଅତୀତକୁ ଫେରିଯାଏ । ଯୌବନର ପ୍ରେମାନୁଭୂତି ମନେ ପଡ଼ି ହୃଦୟ ଆଲୋଡ଼ିତ ହୁଏ । 'ଗୁଡ଼ରନ୍ଧା କ୍ଷେତର ମହକ' ମାଧ୍ୟମରେ ତାରୁଣ୍ୟର ଅନୁଭବ ପୁଣି ହୋଇଯାଏ । ଯୌବନରୁ ମୃତ୍ୟୁ ପର୍ଯ୍ୟନ୍ତ ସ୍ତନର ଏଇ ବୈଚିତ୍ର୍ୟମୟ ଲୀଳା ଚାଲିଛି । ପୁରୁଷର ମନ ଓ ହୃଦୟର ଦମ୍ଭ ଅଭିମାନକୁ ଦ୍ରବୀଭୂତ କରୁଥିବା ନିଟୋଳ ନିବୁଜ ସ୍ତନର ଚିତ୍ର ବାର୍ଦ୍ଧକ୍ୟରେ ଯେଉଁଭଳି ବିପର୍ଯ୍ୟସ୍ତତାର ମୂର୍ତ୍ତି ଗଢ଼େ ତାହାର କାରଣ ଖୋଜିବାକୁ ଯାଇ ବୁଢ଼ୀଟି "ବଂଶରକ୍ଷା, କୁଳ ରକ୍ଷା, ବୁଢ଼ୀ କାଳେ ପୋଷିବାର ମିଛ ସାନ୍ତ୍ୱନାରୁ" ସ୍ତନ ତାର ଡାକି ଦିଏ । ଏ କବିତାଟି ପଢ଼ିଲାବେଳେ ଭାନୁଜୀ ରାଓଙ୍କ 'ସ୍ତନ' କବିତାଟି ସ୍ମରଣକୁ ଆସେ । ଶ୍ରୀ ରାଓଙ୍କର 'ସ୍ତନ' ପ୍ରତିଥିବା କାବ୍ୟିକ ଦୃଷ୍ଟିଭଙ୍ଗୀ ମୁଖ୍ୟତଃ ରୋମାଣ୍ଟିକଧର୍ମୀ । ପ୍ରଚୁର ଉଦ୍ଦାମତା, ପ୍ରଲୋଭନ ଓ ଆକର୍ଷଣର କେନ୍ଦ୍ର ହୋଇ ପୁରୁଷକୁ ମୁଗ୍ଧ ଓ ଚକିତ କରିବା ତାଙ୍କ 'ସ୍ତନ'ର ଚିରକାଳର ସତ୍ୟତା । ସମୁଦ୍ରର କାହୁଁ ଓ ବନ୍‌ଶୀଯୋପ ଆଦି ଚିତ୍ରକଳ୍ପ ଜରିଆରେ ଏହା ଅଧିକ ପ୍ରଭାବଶାଳୀ । ଶ୍ରୀ ଲେଙ୍କା କିନ୍ତୁ 'ସ୍ତନ'ର କ୍ରମ ପରିଣତି ଦେଇ ମୃତ୍ୟୁ ଓ ସୌନ୍ଦର୍ଯ୍ୟର ନିକଟତମ ଅବସ୍ଥାଗୁଡ଼ିକୁ କଳାତ୍ମକ ଭଙ୍ଗୀରେ ଦେଖିଛନ୍ତି । ରୋମାଞ୍ଚ ଅଛି, ମାତ୍ର ତାହା ପରିଶୀଳିତ ସୌନ୍ଦର୍ଯ୍ୟ—କବି କହନ୍ତି— "ମୋ ଗାଁର ଆମ୍ବ ତୋଟା/ଖିଆଲବଣ ଓ ଉଇଁତର ସ୍ମୃତିର/ନଈରେ କାହାର

ସମ୍ଭ୍ରାନ୍ତ ସ୍ତନ ଦଶେ ।" ଗମ୍ଭୀର ଅନୁଭବ ଅଛୁ, ଅଥଚ ତାହା ପବିତ୍ରତା ଓ ଆଧ୍ୟାତ୍ମିକତାର ଅନୁଷଙ୍ଗ । 'ନଉକାରେ ଘଣ୍ଟ ହୋଇ ବସିବା ପୂର୍ବରୁ' ବା 'ଘଣ୍ଟ ଭଳି ଝୁଲୁଥିବା ସ୍ତନର ଆଘାତେ,/ମିଶିଯାଏ ଧୂଡ୍ଡୁ ଧୂଡ୍ଡୁ ଚମ ଦଦ୍ଧ/ ଘଣ୍ଟା ଶବ୍ଦରେ ।'—'ସମସ୍ତର ଢାଆଲରେ ପ୍ରତଧ୍ୱନ ତୋଳେ' ଆଦ ପଂକ୍ତିଗୁଡ଼ିକ ସମସ୍ତ, ମୃତ୍ୟୁ ଓ ମୂତ୍ରର ଚନ୍ଦ ଦଅନ୍ତ ଏବଂ 'ସ୍ତନ' ତାହାର ଏକ କାବ୍ୟକ ଉଚ୍ଚାରଣ ହୋଇଯାଏ । ଏଇ ଦୃଷ୍ଟିରୁ ବୋଦ୍‌ଲେୟାରଙ୍କ 'ସ୍ତନ'ର କାବ୍ୟରୂପ ଅଧିକ ଜୈବକ ।

"I am beautiful, O mortals, as a dream in stone, and my breast, on which every man has bruised himself in his turn." (Beauty) । (୧୬)

କମଳାକାନ୍ତଙ୍କ ଏଇ କବିତାଟି ନିଶ୍ଚିତଭାବେ ଗୋଟାଏ ଉଚ୍ଚ ମାନର କବିତା । କାରଣ ପ୍ରେମ ଓ ମୃତ୍ୟୁର ଯୁଗଳ ନୃତ୍ୟ ଭିତର ଦେଇ 'ସ୍ତନ'କୁ ମାନ୍ୟତା ଦେଇଥିବା କବି ପୌରୁଷ କ୍ଷୟର ଅନ୍ତିମ ଲଗ୍ନ ପର୍ଯ୍ୟନ୍ତ ମଣିଷର ଏ କାମପ୍ରିୟ ପ୍ରବୃତ୍ତିକୁ ଅପରାହତ ରଖିବାକୁ ଚାହାନ୍ତି ।

"ବର୍ତ୍ତିମାନ ଘଡ଼ର ମଧ୍ୟ । ସାଇକେଲ ଟିଂ ଟିଂ ହୁଏ ।
କଦବା ଟାକ୍‌ସିର ହର୍ଣ୍ଣ ନଦ ଶୁଣି ହଏ ।
ଓ ନାରୀର ଉଲଗ୍ନ ସ୍ତନ ମୋ ଗ୍ରୀବାରେ ମିଛେ ଲଦ ହୁଏ ।"
(ମୋ ମୃତ୍ୟୁ ପୂର୍ବରୁ କେତୋଟି ମୂହୂର୍ତ୍ତ—କବିତାର ମୁହଁ)

କବି ସେଥିପାଇଁ ମୃତ୍ୟୁ ହାତରେ ଧରାପଡ଼ି ମାତୃଗର୍ଭକୁ ତୁରନ୍ତ ପ୍ରବେଶ କରିବାର ଆଶା ପୋଷଣ କରିଛନ୍ତି । ଏ ଜନ୍ମର ଅତୃପ୍ତ କାମନା ପୂରଣ ପାଇଁ ପୁନର୍ଜନ୍ମ ନହାତ କରୁଛ ।

'ମାଛ' କବିତାରେ ଜୀବନର ଏଇ ଦ୍ୱନ୍ଦ୍ୱମୟ ପ୍ରବୃତ୍ତିକୁ ଶ୍ରୀ ଲେଙ୍କା ରୂପ ଦେଇଛନ୍ତି । ମାଛ ଯୌନପ୍ରିୟ ନାରୀର ପ୍ରତୀକ । ଲୋର୍‌କା ମଧ୍ୟ ଦିନେ ନାୟିକାର ସ୍ତନଯୁଗଳକୁ ଦୁଇଟି ମାଛର ଆକର୍ଷଣ ବୋଲି ମନେ କରିଥିଲେ ।

"Thamar in your high breasts
two fishes are calling me."

---

୧୬ । Scarfe, Francis (Ed)—Baudelaire, 1961, Penguin books, P. 26.

କବି ଶ୍ରୀ ଲେଙ୍କାଙ୍କ ଦୃଷ୍ଟିରେ—

ରେ ସୁନାସକାଳର ମାଛ,
ମୋତେ ଆଉ ପ୍ରଲୋଭିତ କର ନା
ତୋ ଚହଟ ଚକ୍‌କଣ ଛଇ, ଓ
ଲଳୁଆ ହସର ଆଶ୍ଚର୍ଯ୍ୟ ଗୁହାଣିରେ,
ମୋତେ ଆଉ ଝୁଲାଅ ନା
ତୋ ଲୁଗାଛପା ଦେହର ଦୋଳରେ ।"
(ମାଛ—ସ୍ମରଣ ବିସ୍ମରଣ)

'ଲୁଗାଛପା ଦେହର ଦୋଳ', 'ଧଳା ବଗଙ୍କର ହଲଚଲ ନ ହେବାର ପଟା ପଟା ରକ୍ତର ଦାଗ', 'ରୁପାକାଠି ଦେହର ମାଣିକ୍ୟ,' 'ଦେହର ପନ୍ଥି ଦାଢ଼େ' ଆଦି ରୂପକ ମଧ୍ୟରେ ପ୍ରେମର ଉଦ୍ଦୀପନ ବିଭାବ ସ୍ପଷ୍ଟ ହେବା ସଙ୍ଗେ ସଙ୍ଗେ ଏଇ ଉଦ୍‌ଗତ ତଥା ବାସ୍ତବବାଦୀ ବ୍ୟଞ୍ଜନା ଖୁବ୍ ପରିଷ୍କାର ବୁଝି ହେଉଛି । ପ୍ରତ୍ୟକ୍ଷ ଇନ୍ଦ୍ରିୟ ସମ୍ପର୍କ ଏଠି ବେଶ ସ୍ପର୍ଶଶୀଳ । ନଚେତ୍ ନାୟିକା ରାତର ପ୍ରେମକୁ ଲୁଚାଇବାକୁ ଏତେ ବ୍ୟସ୍ତ ହୋଇ ପଡ଼ନ୍ତା ନାହିଁ ।

"ସଞ୍ଜ ନ ହେଉଣୁ, ରାତି ନ ପାହୁଣୁ
ତରବର ପିନ୍ଧିବାକୁ
ନାଲି ନେଲି ଶରଙ୍କର ଶାଢ଼ୀ ?"
( ମାଛ )

ଶ୍ରୀ ଲେଙ୍କା ତାଙ୍କର କବିତାକୁ ଯୌନାଭିମୁଖୀ କରିଦେବା ଦ୍ୱାରା ସୌନ୍ଦର୍ଯ୍ୟ-ଚେତନା କ୍ଷୁଣ୍ଣ ହୁଏ ବୋଲି କହିବା ଭୁଲ୍ । ଏଇ ପ୍ରସଙ୍ଗରେ ମହାପାତ୍ର ଭାସ୍କର ଗନ୍ତାୟତଙ୍କ ମନ୍ତବ୍ୟ ଉଲ୍ଲେଖଯୋଗ୍ୟ ମନେ ହୁଏନ । "ସୁନ୍ଦରୀ ରମଣୀଙ୍କ ଗ୍ରୀବାରେ ହାତଛନ୍ଦି କମ୍ବା ରାତ୍ରି ବିହାର କରି ବି ସଫଳ ପ୍ରେମିକା ହେବା ବା ପ୍ରେମ ସାହିତ୍ୟ ସୃଷ୍ଟି କରିବାର ଯୋଗ୍ୟତା ଅନେକ ସୁପୁରୁଷମାନଙ୍କର ଯେପରି ନ ଥାଏ, ଠିକ୍ ସେମିତି ପୁଣ, ଜଙ୍ଘ ସମ୍ପର୍କରେ ଲିଖିତ କବିତା କମ୍ବା ଗଳ୍ପ ପ୍ରେମ ସାହିତ୍ୟ ପର୍ଯ୍ୟାୟଭୁକ୍ତ ହୋଇ ନ ପାରେ । (୧୭) ଡି. ଏଚ୍. ଲରେନ୍‌ସ ପ୍ରେମରେ ଯୌନ ଚେତନାକୁ ଅଧିକ ଗୁରୁତ୍ୱ ଦେଉଥିଲେ । ତାର କାରଣ ଦର୍ଶାଇ ସେ କହିଥିଲେ, ଯୌନ ଓ ସୌନ୍ଦର୍ଯ୍ୟକୁ ସ୍ୱତନ୍ତ୍ର ଭାବେ ଦେଖିବା ଅସମ୍ଭବ, ଠିକ୍ ଯେପରି ଅଗ୍ନିଶିଖାକୁ

୧୭ । ଗନ୍ତାଏତ୍, ମହାପାତ୍ର ଭାସ୍କର—'ସ୍ମରଣ ବିସ୍ମରଣ' ସମ୍ପର୍କରେ 'ଆର୍ଯ୍ୟାବର୍ତ୍ତ'ରେ ପ୍ରକାଶିତ ପ୍ରତିକ୍ରିୟା—ଦ୍ରଷ୍ଟବ୍ୟ "କବିତାର ମୁହଁ" ।

ଅଗ୍ନିକୁ ପୃଥକ କରିବା ଅସମ୍ଭବ । ଯୌନତାକୁ ଘୃଣା କଲେ ପରୋକ୍ଷରେ ସୌନ୍ଦର୍ଯ୍ୟକୁ ଘୃଣା କରାଯାଏ । ଜଣେ ସୌନ୍ଦର୍ଯ୍ୟପ୍ରେମୀ ଅବଶ୍ୟ ଯୌନତାକୁ ସମ୍ମାନ ଦେବା ଦରକାର । ପ୍ରାଚୀନ ମୃତ ସୌନ୍ଦର୍ଯ୍ୟରେ ଯୌନତା ଘୃଣ୍ୟ ହୋଇପାରେ, କିନ୍ତୁ ଜୀବନ୍ତ ସୌନ୍ଦର୍ଯ୍ୟରେ ଯୌନତାର ସ୍ଥାନ ସୌନ୍ଦର୍ଯ୍ୟ ପାଖରେ । (୧୮)

ଶ୍ରୀ ଲେଙ୍କାଙ୍କ କବିତାରେ ପ୍ରେମର ଏକ ମନସ୍ତାତ୍ତ୍ୱିକ ବିଶ୍ଳେଷଣ ନିହିତ । ଯୌନାକାଂକ୍ଷା ଅବଦମନ ମାଧ୍ୟମରେ ମଣିଷର ସ୍ୱାଧୀନ ଓ ସହଜ ଆତ୍ମାର ଅବମାନନା କରିବାକୁ ସେ ମୋଟେ ଇଚ୍ଛା କରନ୍ତି ନାହିଁ । 'କାଲେସୀ' କବିତାରେ କବିଙ୍କର ଏଇ ଦର୍ଶନର ପରିଚୟ ମିଳେ ।

"ସବୁ କଥାରେ ହସି ଦବାଟା
ତୋର ଅଭ୍ୟାସ ।
ଯେମିତି ଟକମକ
ଫୁଟୁଥିବା ଭାତ ହାଣ୍ଡି ।
ପେଜ ଗାଳି ଦେଲେ
ହସ ବନ୍ଦ ॥"

( କାଲେସୀ—ଚିତା ଅଙ୍କା କାନ୍ଥର ଛବି : ପରିଧି ବାହାରେ ଅପେକ୍ଷାରତ ପୃଥିବୀ )

ଟକମକ ଭାତ ହାଣ୍ଡି ଉତ୍ତପ୍ତ କାମନାର ପ୍ରତୀକ । କାମନାର ପୂର୍ଣ୍ଣତାରେ ଶାନ୍ତ ହୋଇଯାଏ ନାରୀର ହୃଦୟ । 'ପେଜ ଗାଳିବା' ଚିତ୍ର ଭିତରେ ବକ୍ତବ୍ୟ ଶାଣିତ ପ୍ରଭାବ ଖୁବ୍ ସ୍ପଷ୍ଟ । ଅପୂର୍ଣ୍ଣ ଯୌନକାମନାର ପରିତୃପ୍ତି ପୂର୍ବରୁ ତାର ହସଟି ଅଶ୍ଳୀଳତାର ଇଙ୍ଗିତରେ ପୂର୍ଣ୍ଣ । ସମଗ୍ର ପୃଥିବୀରେ ପରିବ୍ୟାପ୍ତ ସେହି ଯୌନ-କାମନାର ଫୁଲ । ଷ୍ଟିଫେନ୍ ସ୍ପେଣ୍ଡର କହନ୍ତି—"Our Sexes are the valid flowers/ sprinkled across the total world ।" ପ୍ରବୃତ୍ତିର ବୈଚିତ୍ର୍ୟ ଲୋପ ହେଲେ ପ୍ରେମିକର ପ୍ରେମିକା ପ୍ରତି ଆସେ ଭୟମିଶ୍ରିତ ସମ୍ମାନ । କିନ୍ତୁ ସେ ପ୍ରବୃତ୍ତି ତ ସହଜରେ ନିବାରିତ ହେବାର ନୁହେଁ । ସଙ୍ଗଲାଭ ପ୍ରୟାସୀ ମଣିଷ ତ ପ୍ରଥମେ ଭେଟେ କାମକୁ । କାମ ଅପୂର୍ଣ୍ଣ ହେଲେ କ୍ରୋଧକୁ ଓ କ୍ରୋଧରୁ ସମ୍ମୋହକୁ ଭେଟେ । ତେଣୁ କାମ, କ୍ରୋଧ, ସମ୍ମୋହ ଭିତରେ ଆତଯାତ ହେଉଥିବା ମଣିଷ ପ୍ରେମିକାକୁ କେବଳ ଦେହର ଖୋଳ ରୂପେ ଦେଖେ । ଫଳତଃ ପ୍ରେମିକା ଗ୍ରତତମାମ ବର୍ଣ୍ଣଟିଏ ଜାଳ ଭାଗବତର ପୃଷ୍ଠା ଓଲଟାଉଥିବାବେଳେ

୧୮ । Lawrence, D. H.—Selected Essays, Penguin Edition, P. 14 ।

ପ୍ରେମିକ ଦେହରେ କାମନାର ଖଇ ଫୁଟେ । (୧୯) ଏଥିରେ ଉଭୟଙ୍କର ସମତୁଲ୍ୟ ଜୀବନ ରହିଛି ବୋଲି କହି ହେବ ନାହିଁ । ରୋଗଗ୍ରସ୍ତ କାନ୍ଦୁରା ପୃଥିବୀର ମଣିଷ ଏଥିରେ ସଫଳ ନ ହେଲେ ପ୍ରାଣପ୍ରାଚୁର୍ଯ୍ୟହୀନ ହୋଇ ଉଠେ ପ୍ରେମର ଜଗତ । ଯୌନତା ପ୍ରବେଶ କରିଥାଏ ମଣିଷର ମନରେ । କବିଙ୍କ ଭାଷାରେ—"ସବୁଠୁଁ ଅଡ଼ୁଆ ବେଣି ମା'ର ସ୍ନେହକୁ ଭୁଲି /ଘରଣୀଙ୍କ ପଣତରେ ଆପଣାକୁ ଗଅଁଠେଇ/ ତା' ପିଠିରେ ପୁନଃ ପୁନଃ ନାଛ ହୋଇ ଚନ୍ଦ୍ରକୁ ଛୁଇଁବା, ଓ ଆଉରି ଅଡ଼ୁଆ ଲଗେ ଛୁଆଙ୍କ ମାଆକୁ ଭୁଲି /ଦାଣ୍ଠାରେ ଆପଣାର ଦେହକୁ ବିକିବା ! ( ପଥଗୃହୀର ଗୀତ—ସ୍ମରଣ ବିସ୍ମରଣ ) । କବିଙ୍କ ମନ ଜଙ୍ଗଲରେ ମହାବଳ ବାଘର ହେଣ୍ଟାଳ ! (୨୦) ଏ ସ୍ମୃତିକୁ ଉଜ୍ଜୀବିତ କରେଇ ଦିଏ । ରୂପଜୀବୀ ଜରତାର ଗଳାକୁ ଭିଡ଼ି ଧରି ନିର୍ଭୟରେ ବାଟ ଚାଲିବା କବିଙ୍କ ପକ୍ଷରେ ଏକ ବିରାଟ ଦୁଃସାହସିକ ପଦକ୍ଷେପ । (ନିର୍ଭୟ—ସ୍ମରଣ ବିସ୍ମରଣ) । ନାରୀ ବକ୍ଷର ଦୁଇ ଗୋଲକ ତାଙ୍କ ପାଇଁ ଏକ ନିରାପଦ ଆଶ୍ରୟ । ସବୁ ପୁଣ୍ୟକୁ ଜୀବନର ଦୁଇ ଶିଖାରେ ଆହୂତି ଦେଇ ଇଲମ ରସିକା ବାରାଙ୍ଗନାର ପ୍ରୀତପଦ ଅଗଣାରେ ବିଚରଣ କରିବା ଆଜି ଯେପରି ଅଧିକାଂଶ ଆଧୁନିକ କବିଙ୍କର ଗୋଟେ ଖିଆଲ ! ଜୀବନର ବିଫଳତାରୁ ଏଭଳି ସଙ୍କଳ୍ପ ଜନ୍ମେ । ଆଜି ଯେଉଁଠି ଜୀବନ ବିତେଇବାକୁ ହୁଏ ସେଠି କେହି ଭଲ ନାହାନ୍ତି । ଅଡେନ୍‌ଙ୍କ ଭାଷାରେ—"where nobody is well !" (The Orators—W. H. Auden) । ସେଥିପାଇଁ ବୋଦ୍‌ଲେୟାର ସାରା ଜୀବନ ଅନୁର୍ବର ତାକୁ ଖୋଜି ଖୋଜି ଶେଷରେ ନେଇ-ଥିଲେ ବେଶ୍ୟାପଡ଼ାର ଆଶ୍ରୟ । ଏ ଦୃଷ୍ଟିରୁ ସେ ବିପ୍ଳବୀ ନୁହନ୍ତି । ବିଦ୍ରୋହୀଟିଏ । "Your jutting breast which curves the watered-silk, your truimpant breast, is (like) some beautiful press, whose rounded, bright panels catch the light like shields : provoking shields armed with rosy tips—a press full of delicious secrets, full of good things, with wine and perfumes and liqueurs that would fill men's minds and hearts with delirium." (The Beautiful Ship—Baudelaire :

---

୧୯ । 'ଇର୍ଷା'—'ମୁଁ ହୁଁ ଟିଏ ମାଗି/ କହିଲି : ଦେଖିଲି, ମୋ ହୃଦୟରେ /କେତେ ତାଡି । /ଏଇନେ/ ଅସରାଏ ଭଲ ବର୍ଷା/ ହୁଅନ୍ତା କି ? !". (ଚିତା ଅଙ୍କା କାନ୍ଥର ଛବି···) ।

୨୦ । 'ଅନ୍ୟ ରୂପ ଏକ ଦୁର୍ବଳ ମୁହୂର୍ତ୍ତର'—'ସ୍ମରଣ ବିସ୍ମରଣ', ୧୯୭୩—ପୃ.୨୦ ।

Published in 'Fleursdumal', 1857) । ବୋଦ୍‌ଲେୟାରଙ୍କ ଏ ବର୍ଣ୍ଣନା ଲରେନ୍‌ସଙ୍କ ପ୍ରେମ ବର୍ଣ୍ଣନାର ଅନୁରୂପ । ଏଇ ବର୍ଣ୍ଣନା ଭିତର ଦେଇ ଅତୀନ୍ଦ୍ରିୟ ଅନୁଭୂତି ଅସେ କବିର । କୃଷ୍ଣବର୍ଣ୍ଣା ପ୍ରେମିକା ତା' ଆଖି ଆଗରେ ଦେଖାଦିଏ ଜ୍ୟୋତିର୍ମୟୀ ରୂପେ । ( "She herself, black, yet luminous"—An Apparition, Baudelcire) । ରବୀନ୍ଦ୍ରନାଥ ତାଙ୍କର ଗୋଟାଏ କବିତାରେ ଲେଖିଛନ୍ତି—"କାଲୋ ବଲେ ତାରେ ଗାଁ'ର ଲୋକ୍ /ମେଘ୍‌ଲା ଦିନେ ଦେଖେଛିଲୁମ୍ ତାରେ/ କାଲୋ ମେୟେର୍ କାଲୋ ହରିନ୍ ଚୋଖ୍ ।" ଏ ଅନୁଭୂତି ନିଜ ଭିତରକୁ ନ ଆସିବା ପର୍ଯ୍ୟନ୍ତ ସାଧାରଣ ଲୋକେ କହି ପକାନ୍ତି—

"ଆଖି ଲାଖି ପାରେ ନା ପଙ୍କୁଆ ଗାଡ଼ିଆର ଦଳରେ,
କାଳୀ କୋଇଲିଙ୍କ ବିଶୁଦ୍ଧ ପ୍ରେମର ଅହଂକାରରେ ।
ବୋଦ୍‌ଲେୟାରଙ୍କ ବେଶ୍ୟାପଡ଼ାର ଭୂମଧ୍ୟ ସ୍ୱର୍ଗରେ ।"
( ଆଖି—୨-ଖସିବାର ବେଳ )

କବିଙ୍କର ଅନୁଭବ କିନ୍ତୁ ଏହାର ବିପରୀତ । ନରେନ୍ଦ୍ର ପର ମୁହୂର୍ତ୍ତିରେ ଗୋରି ଝିଅଟି ଅପେକ୍ଷା କାନ୍ଦୁରି କୋଇଲି ଅଭିଆଡ଼ୀ ଝିଅଟି କବିଙ୍କୁ ଭଲ ଲାଗି ନ ଥାନ୍ତା (୨୧) ଏପରି ଝିଅଟିକୁ ଭଲପାଇବା ମାନେ କବିତାକୁ ଭଲପାଇବା । (୨୨) ବୋଦ୍‌ଲେୟାରଙ୍କ ଭାଗ୍ୟରେ ତାହାହିଁ ଘଟିଥିଲା । ନାରୀପାଖରୁ ସେ ଇନ୍ଦ୍ରିୟ-ସୁଲଭ ସନ୍ତୋଷ ଲୁହେଁ । ଖୁଣ୍ଡିଥିଲେ ଆତ୍ମୀୟତା । ପ୍ରେମିକା ଜାନ୍ନା ଡୁଭାଲ (Jeanne Duval) ଙ୍କୁ ନେଇ ସେ ରଚନା କରିଛନ୍ତି ଅନେକ ପ୍ରେମ କବିତା । କିନ୍ତୁ ଡୁଭାଲ ଶେଷରେ ତାଙ୍କୁ ଠକି ଦେଇ ଚାଲି ଯାଇଛନ୍ତି । ମାତ୍ର ବୋଦ୍-ଲେୟାର ତାଙ୍କୁ ଝୁରିଛନ୍ତି ସାରା ଜୀବନ ।

ବୋଦ୍‌ଲେୟାର କମଳାକାନ୍ତଙ୍କର ପ୍ରିୟ କବି । (୨୩) ନିଜ ଆତ୍ମାନୁଭୂତିର ସ୍ୱାକ୍ଷର ସେ ଦେଖିଛନ୍ତି ବୋଦ୍‌ଲେୟାରଙ୍କ କବିତାରେ । ଶ୍ରୀଲେଙ୍କାଙ୍କ 'କେଶ' କବିତା ତାର ପ୍ରକୃଷ୍ଟ ପ୍ରମାଣ । ବୋଦ୍‌ଲେୟାରଙ୍କ 'A Hemisphere in a

---

୨୧ । 'ଚୁପ୍ କର......ସମୟ' ଖସିବାର ବେଳ, ୧୯୮୦, ପୃ. ୭୭ ।

୨୨ । 'ନିତ୍ୟ ନିୟମିତ'—ପୃ. ୩୯—"ଜହ୍ନି ମଞ୍ଜିଠାରୁ ବଳି/ କାଳୀ ଓ କାନ୍ଦୁରି ଝିଅଟିକୁ/ ଭଲପାଇବା ମାନେ/ ପ୍ରେମ କରିବା କବିତାକୁ ।"

୨୩ । 'ସାରଥି'—୧ମ ସଂଖ୍ୟା, ୧୯୮୧—କବି କମଳକାନ୍ତଙ୍କ ସହ ସାକ୍ଷାତକାର—ଧନଞ୍ଜୟ ନାୟକ ।

woman's hair' ଓ 'Hair' କବିତାଦ୍ୱୟ ପ୍ରସଙ୍ଗତଃ ଆଲୋଚ୍ୟ । (୨୪) କେଶ ଯୁଗେ ଯୁଗେ ମଣିଷ ମନରେ ଭରି ଦେଇଛି ପ୍ରଚୁର ଉତ୍ସାହ, ଉଦ୍ଦୀପନା । ସବୁ ଦେଶର ଓ ସାହିତ୍ୟର କବି ମଣିଷର ଏଇ ଉତ୍ତମାଙ୍ଗର ସୌନ୍ଦର୍ଯ୍ୟରେ ବିଭୋର ହୋଇଛନ୍ତି । ପ୍ରେମିକ ମନରେ ପ୍ରେମିକାର କେଶ ସଜ୍ଜା ଅଦ୍ଭୁତ ପ୍ରେରଣା ଦେବା ସଙ୍ଗେ ସଙ୍ଗେ ତାର ସୌନ୍ଦର୍ଯ୍ୟ ଦୃଷ୍ଟିକୁ କରିଛି ଉନ୍ମୋଚିତ । ଗାଢ଼ର ରଙ୍ଗ ଭିତରେ ଏକାତ୍ମ ହୋଇ ନାରୀର କେଶ ପୁରୁଷକୁ କରିଛି ବିହ୍ୱଳ । ଅଫିମର ବିପୁଳ ଉନ୍ମାଦନା ଏଇ ସୁସଜ୍ଜିତ କେଶରାଶିରୁ ସଂକ୍ରମିତ; ପୁଣି କେଉଁ ଏକ ଇନ୍ଦ୍ରଜାଲର ଆକର୍ଷଣରେ ପୁରୁଷ ଝାମ୍ପ ଦେଇଛି ସମୁଦ୍ରର ନୀଳ ତରଙ୍ଗକୁ । "ଗାଢ଼ର ରଙ୍ଗକୁ ଫେଣ୍ଟି/ ଅଫିମ ଓ ନାନାଜାତି /ମାଦକ ଦ୍ରବ୍ୟରେ /ତୁମର କେଶର ଗନ୍ଧ/ ମନଇଚ୍ଛା ମୋ ମନରେ /ସଞ୍ଚାର କରିଲି । (କେଶ—ସ୍ମରଣ ବିସ୍ମରଣ) । ନିବିଡ଼ କୃଷ୍ଣ କେଶ ଭିତରୁ ଜୀବନକୁ ଲୁଣ୍ଠନ କରିବାକୁ କବି ବ୍ୟାକୁଳ । "ତୁମର କାଳିନ୍ଦୀ ଜଳେ, ମୁଁ ହେବି, ଯୁଗ ଯୁଗ ସାଧନାର ଅନୁରାଗୀ ହଂସ ।" (କେଶ) । ଶ୍ରୀ ରାଜକିଶୋର ମିଶ୍ର ଏହାର ଏକ ଚମତ୍କାର ବିଶ୍ଳେଷଣ କରିଛନ୍ତି । "କବିତାର ପ୍ରତ୍ୟେକ ଶବ୍ଦକୁ ନିବିଡ଼ ଆଶ୍ଳେଷ ଓ ଆନ୍ତରିକତାର ସ୍ପର୍ଶ ଦେଇ ସେଇ କାଉଁରୀ ସମ୍ମୋହନରେ କବି ଅବଗୁଣ୍ଠନବତୀ ମାନସୀର ଅବୟବକୁ ଉନ୍ମୋଚିତ କରେ । ସେଥିରେ ବିକୃତ ବା ବୀଭତ୍ସତାର ଦୁର୍ବଳ ସ୍ଖଳନ ନ ଥାଏ, ବରଂ ମନଲୋଭା ଉଦାତ୍ତ ଉଲଗ୍ନ ରମଣୀୟତାରେ ପ୍ରତ୍ୟେକଟି ଅଙ୍ଗ ସୁରଭିତ ହୋଇ ଉଠେ । କମଳାକାନ୍ତ ଲେଙ୍କାଙ୍କ ଭାଷାରେ ନାରୀକୁନ୍ତଳ ସେଇ ଅସଂଯତ ନୀଳ ଲହରୀ, ନାରୀ ମନର ଅବନତ ଇଚ୍ଛାର ପତାକା ବା ସମ୍ମୋହନମନ୍ତ୍ରୀ ବେଣୀ, ଯାହା ତାର ଅବୟବର ଶୀର୍ଷତମ ପ୍ରଦେଶରେ ଚରିବିତର ସଂଭ୍ରମ ଆହ୍ୱାନ । ସେଇ ବିଳମ୍ବିତ ଓ ଆନତ ବେଣୀର ଷ୍ଟ୍ରୁସ୍ତଣୀୟ ପ୍ରଚ୍ଛାୟା ତଳେ ବା ପବିତ୍ର ତୀର୍ଥ ସରସୀରେ ପୁରୁଷର ଔଦ୍ଧତ୍ୟ ଓ ସ୍ୱାଭିମାନ ଅନୁରାଗୀ ହଂସ ଭାବରେ କ୍ରୀଡ଼ା ବିଳାସରେ ବ୍ୟାକୁଳ ହୋଇ ଉଠେ ।" (୨୫) ସେଇ ନୀଳ ଜୋଚ୍ଛନାର ଲହରୀ ଭିତରେ ନିଜସ୍ୱ ସତ୍ତାକୁ ଭୁଲି ଯାଆନ୍ତି କବି ।

"ମୁଁ ତେଣୁ ଅଙ୍ଗୁଳିର ପାନଅଳୁ ଅପସର ନେଲି
ଓ ପୁନର୍ବାର ତୁମର ସେ ଅସଂଯତ ନୀଳ ଲହରୀରେ
ଆପଣାର ମୁହଁ ଗୁଞ୍ଜି କାନ୍ଦିକି ଓ କେମିତି ହସିଲି ।"

(କେଶ—ସ୍ମରଣ ବିସ୍ମରଣ)

---

୨୪ । Scarfe, Francis (Ed)—Baudelair, 1961, P. 59 ଓ P 57, ।

୨୫ । ମିଶ୍ର, ରାଜକିଶୋର—'କେଶ : ଏକ କାବ୍ୟିକ ଉନ୍ମାଦନା,—ଝଙ୍କାର, ଏପ୍ରିଲ୍—୧୯୭୪ ।

ସେଇ କେଶର ଗନ୍ଧରେ ହଜିଯିବା କବିଙ୍କର ସ୍ୱାଭିମାନ । ସେ ସ୍ୱାଭିମାନର ସ୍ୱପ୍ନରୁ ମୁକ୍ତିନାହିଁ ତାଙ୍କର । ଯୋଗୀଟିଏ ହୋଇଯିବା ପାଇଁ ରଜାପୁଅ ପ୍ରସ୍ତୁତ ହେଲା-ବେଳେ ଭୁଲି ପାରେ ନା ଅଗଣିତ ରମଣୀଙ୍କ ରମଣୀୟ ଶୃଙ୍ଗାର ! କବି ସେହିପରି ଉଚ୍ଛିଷ୍ଟ ଯୌବନରେ ଭୁଲି ପାରନ୍ତି ନାହିଁ କାମନାର ଉଚ୍ଛାସିତ ଜ୍ୱାଳା । ଚମ୍ପାଫୁଲ, ବଉଳ, ଶାଳ ମଞ୍ଜରୀ, ଜବାକୁସୁମର ଗନ୍ଧ, କାନ୍ତା ସେଣ୍ଟର ମହକ, ମହୁଲି ଓ ଅଫିମ ନିଶାରେ ମାତାଲ ହୋଇଯାନ୍ତି କବି ।

କେଶକୁ ନେଇ ବୋଦ୍‌ଲେୟାରଙ୍କ କାବ୍ୟିକ ବିଶ୍ଳେଷଣ ଅନୁଭୂତିମୟ । ପ୍ରେମାସ୍ପଦାର ଅର୍ଦ୍ଧାବୃତ୍ତାକାର କେଶରାଶିର ସୁରଭିରେ ପ୍ରମତ୍ତ କବି ବୋଦଲେୟାର । ସେଇ ସୁନ୍ଦର ସୁରମ୍ୟ କୁନ୍ତଳରେ ନିଜ ମୁଖମଣ୍ଡଳକୁ ବୁଡ଼ାଇ ଦେଇ ସମସ୍ତ ସ୍ମୃତିକୁ ଅନନ୍ତ ଆକାଶକୁ ଉଡ଼ାଇ ନେବାର ସ୍ୱପ୍ନରେ ସେ ମସ୍‌ଗୁଲ । ଶୁଷ୍କ ଘର୍ମାକ୍ତ ମଣିଷଟିଏ ଝରଣାରେ ଅବଗାହନ କଲାପରି ସେ ପ୍ରଣୟିନୀର କେଶରାଶିରେ ଡୁବି ଯାଆନ୍ତି । ସୁଗନ୍ଧିତ କୁନ୍ତଳକୁ ରୁମାଲ ପରି ଦୋଳାୟିତ କରି ସଙ୍ଗୀତର ଆବୋହନରେ ହଜିଯିବାକୁ ଇଚ୍ଛା କରି ଗାଇଉଠନ୍ତି –"Let me breathe long and long the odour of your hair, and dip my whole face in it, as a parched man does in the water of a spring, and shake it in my hand like a perfumed handkerchief, so that I might wave memories in the air." (A Hemisphere in a woman's hair ) । ସେଇ ନୀଳ କେଶରାଶିର ସମୁଦ୍ର ଭିତରେ କବି ସନ୍ଧାନ ପାଉଛନ୍ତି ଏକ ଧୂସର ବନ୍ଦର, ଯେଉଁଠି ପ୍ରତ୍ୟେକଟି ମଣିଷର କରୁଣ ଆର୍ତ୍ତନାଦ ମିଶିଯାଏ । ପର ମୁହୂର୍ତ୍ତରେ କବି ସେଥିରୁ ଆଘ୍ରାଣ କରନ୍ତି ଟବାକୋ, ଅଫିମ, ଚିନି, କସ୍ତୁରୀ, ଆଲକାତରା ଓ ନଡ଼ିଆ ତେଲର ଗନ୍ଧ । ପ୍ରେମିକା କେଶର ଅଫିମ ଓ କସ୍ତୁରୀ ଗନ୍ଧରେ ଆମୋଦିତ ହେବାର ମନୋଭାବଟି କମଳାକାନ୍ତ ପାଇଛନ୍ତି ବୋଦ୍‌ଲେୟାରଙ୍କଠାରୁ । ବୋଦ୍‌ଲେୟାରଙ୍କ ନଡ଼ିଆ ତେଲର ବାସ୍ନା କମଳାକାନ୍ତଙ୍କ କବିତାରେ 'କାନ୍ତା ସେଣ୍ଟ'ରେ ରୂପାନ୍ତରିତ ହୋଇଛି । ବୋଦ୍‌ଲେୟାରଙ୍କ 'କେଶ' ବେଶ୍ ଉନ୍ନତ ଓ ରୁଚିଶୀଳ । ଶ୍ରୀ ଲେଙ୍କାଙ୍କ କବିତା ନିଜସ୍ୱ ପ୍ରକାଶ-ଭଙ୍ଗୀରେ ଉଜ୍ଜ୍ୱଳ । 'ତୃପ୍ତ କାଳିନ୍ଦୀ ଜଳେ ମୁଁ ହୁଏ ଯୁଗ ଯୁଗ ସାଧନାର ଅନୁରାଗୀ ହଂସ, ଏକ ବିସ୍ମୟଶୀଳ ଦୂରଦୃଷ୍ଟିସମ୍ପନ୍ନ କାବ୍ୟିକ ଦୃଷ୍ଟିଭଙ୍ଗୀ ।

ଅନ୍ୟ ଏକ କବିତା 'Hair' ରେ ବୋଦ୍‌ଲେୟାର ବ୍ୟଞ୍ଜନାଧର୍ମୀ ନାରୀ କେଶର କୃଷ୍ଣିମାରେ ପ୍ରଲୁବ୍ଧ । ଶ୍ରୀ ରାଜକିଶୋର ମିଶ୍ରଙ୍କ ଭାବାନୁବାଦ ଶୁଣନ୍ତୁ

ଆକର୍ଷଣୀୟ । "ହେ ରେଶମ ତୁଲ୍ୟ ମସୃଣ କେଶ ଗୁଚ୍ଛ, ତୁମେ ଅପୂର୍ବ ଛନ୍ଦରେ ତରଙ୍ଗାୟିତ ଗତିରେ ବେକ ତଳକୁ ଓହ୍ଲାଇ ପଡ଼ିଛ । ହେ ମୋର କବ[illegible]! ତୁମ ଦେହରେ ନୈର୍ଋଶ୍ୟ ଓ ସୌରଭର ଅପୂର୍ବ ସମନ୍ୱୟ ମୁଁ ଦେଖୁଛି । ମୋ ନିକଟରେ ତୁମେ ଅତନ୍ଦ୍ର ସ୍ୱାଚ୍ଛଭୂତ । ଆମ ପ୍ରେମ ଉଦ୍ୟାନର ଆହ୍ଲାଦିତ କୁଞ୍ଜ ବାଟିକାରେ ଅନ୍ୟମାନଙ୍କୁ ଆଶ୍ରୟ ଦେବାର ଏକମାତ୍ର ସ୍ଥାନୀ ତୁମେ ! ମୋତେ ଲାଗେ ସତେ କି ଅତୀତର ସମସ୍ତ ସ୍ୱପ୍ନ ତୁମର କେଶଗୁଚ୍ଛରେ ମହାନିଦ୍ରାରେ ଶୋଇଛନ୍ତି ! ମୁକ୍ତ ପବନରେ ଖଣ୍ଡିଏ ରୁମାଲ ଉଡ଼ାଇଲା ଭଳି ମୁଁ ଚାହେଁ ତୁମର କବରୀକୁ ଶିହରିତ କରିବାକୁ ଭଲପାଏ । ପ୍ରଗଲ୍‌ଭ ହୋଇ ଉଠିଛନ୍ତି କବି ବୋଦ୍‌ଲେୟାର ଓ ପୁଣି କହିଛନ୍ତି—"ହେ ମୋର ସବୁଜ ଉର୍ବର ଆଳସ୍ୟ, ମୋ ପାଇଁ ତୁମେ ସୁଗନ୍ଧ ସୁରଭିତ ଆକାଶର ଅକଳନ ନୀଳାବାସ୍ତୁ । ହେ ନୀଳ ବେଣୀ, ତୁମେ ଏକ ଧୂମିଳ ତମ୍ବୁ । ହେ ମୋର କାମନା, ମୋର ଶାଶ୍ୱତମା ! ତୁମର ସେଇ ଗହଳ କେଶରେ ଅଙ୍ଗୁଳି ସ୍ଥଳନା କରି ମୁଁ ସେଇଠି ମୋତି ଓ ବୈଦୂର୍ଯ୍ୟର ବୀଜ ବୁଣି ଦେବି । ଏ ହୃଦୟର ଆହ୍ୱାନ ତୁମେ ନିଶ୍ଚୟ ଶୁଣି ପାରିବ । ହେ ପ୍ରିୟତମେ ! ତୁମେ ମୋର ତନ୍ଦ୍ରାତୁର ସ୍ୱପ୍ନର ଏକମାତ୍ର ମରୁତୀର୍ଥ । ହେ କବରୀ ! ମୋ ପାଇଁ ତୁମେ ଗୋଟାଏ ରସାଳ ଫଳ । ତାର ନିଃସୃତ ସୁରଭି ମନ୍ଥରରେ ମୋତେ ହଜାଇ ଦେବାର ସୌଭାଗ୍ୟ ଦିଅ ।" (୧୬) ଏଭଳି ପ୍ରାଣ ପ୍ରାଚୁର୍ଯ୍ୟପୂର୍ଣ୍ଣ ରୋମାଣ୍ଟିକ୍ ଭାବନା କମଳାକାନ୍ତଙ୍କ 'କେଶ' କବିତାରେ ଦୁର୍ଲଭ । କିନ୍ତୁ ଉଭୟ କବି ଭିତରେ ବିଶେଷତ୍ୱ ରହିବା ସୁନିଶ୍ଚିତ । ଶ୍ରୀ ଲେଙ୍କା ଦେକୁଆର ଶିରୁ ମମତା ନେଇ ଆଲୁଳାୟିତ କେଶରାଶିରୁ ଯେଉଁ ମାଦକତାର ସନ୍ଧାନ-ପ୍ରୟାସୀ, ତାହା ତାଙ୍କର ପୂର୍ବ ରଚିତ ଯୌନମୂଳକ ପ୍ରେମ କବିତାରେ ପ୍ରାଚୁର୍ଯ୍ୟ ଦେଖାଯାଏ ନାହିଁ ।

'ଆତ୍ମଗୋପନ' କବିତାରେ କବିଙ୍କର ଏହି କଥା ଟିକିଏ ଭିନ୍ନ ଭାବରେ ସମ୍ପ୍ରସାରିତ । "ତମେ ଜୁଡ଼ା ଖୋଲି ଦିଅ / ଓ ସଂଭ୍ରମରେ ଘୁଞ୍ଚି ଆସ ଖୁବ୍ ପାଖକୁ/ଚମ୍ପା ଫୁଲଟିଏ/ପରି ମୋ ଅସ୍ତିତ୍ୱ/ଲୁଚାଇ ରଖେ/ତା' ଭିତରେ/ପୁନଃ ଶନ୍ୟାସକ୍ତ ।" ପାଖରୁ ପାଖକୁ, ଆଖିରୁ ଆଖିକୁ ଏବଂ ଓଠରୁ ଓଠକୁ ଚାଲିଆସିବା ପାଇଁ ପ୍ରେମିକାକୁ କବିର ଆମନ୍ତ୍ରଣ ସତେ ଯେମିତି ଏକ ରୋମାଣ୍ଟିକ୍ ବଳୟରେ ଆତ୍ମସମର୍ପଣ ! ସମସ୍ତ ସେଠି ନିର୍ବାକ୍, କବି ଓ କବି ପ୍ରେୟସୀ ସ୍ଥାଣୁ । 'ଅଣଚାଳିଶଟି ବର୍ଣ୍ଣମାଳାର କୋକେଇ'ରେ ନିସ୍ପନ୍ଦ ସେମାନଙ୍କ ଚେତନା (୧୭)

---

୧୬ । ତତ୍ରୈବ ।

୧୭ । 'ଶବ୍ଦୀନ'—ଚିତା ଅଙ୍କା କାନ୍ଥର ଛବି : ପରିଧି ବାହାରେ ଅପେକ୍ଷାରତ ପୃଥିବୀ । (ପ୍ରକାଶୋନ୍ମୁଖୀ କବିତା ଗ୍ରନ୍ଥ)—କମଳାକାନ୍ତ ଲେଙ୍କା ।

ବକ୍ତବ୍ୟଟି ଇଙ୍ଗିତପୂର୍ଣ୍ଣ । ଚଉଦର ଶୋଭନୀୟତା ଏଠି ବଡ଼ କଥା ନୁହେଁ । ସ୍ୱାଭାବିକ ସ୍ଖଳନ ପ୍ରେମସଂପର୍କର ବିରୁଦ୍ଧାଚରଣ କରେ ନା । ବରଂ ଅନ୍ୟ ସଙ୍ଗେ ମିଳନର ଲକ୍ଷଣକୁ, ନଖଦାନ୍ତର ସ୍ପର୍ଶକୁ, କଷଟିଆ ଦାଗକୁ ଜାଣି ନ ଜାଣିଲା ପ୍ରାୟ ପ୍ରେମିକ ଗ୍ରହଣ କରିନିଏ । ତେଣୁ ପ୍ରେମିକକୁ ଚଉଦର ପ୍ରକୃତ ଅର୍ଥ ବୁଝାଇବାକୁ ବେଶି ସମୟ ଲାଗେ ନାହିଁ । ଅସତୀର ସବୁ ଲକ୍ଷଣ ବହନ କରି ପ୍ରେମିକ/ସ୍ୱାମୀଙ୍କୁ ଚୁମ୍ବନ ମାଧ୍ୟମରେ ଚଉଦର ସଜ୍ଞା ବୁଝାଇ ଦିଏ—"ଏଥିପାଇଁ ସବୁ ଗୋପ୍ୟ କଥା, ଗୁପ୍ତ ଧନ, ଚଉଦର ପାର୍ଥିବବୈଭବ ।" (ଚଉଦ-୨) । ପୁରୁଷ ନାରୀର ଆଭରଣହୀନ ଦେହଟିକୁ ପାଇଲେ ବଦଳିଯାଏ ଶାଳୀନତା, ସମ୍ଭ୍ରମତା, ଓ କୁଳୀନତାର ଅର୍ଥ । ତେଣୁ କବି କହନ୍ତି – "ଆଭରଣହୀନ ଦେହଟାକୁ ପାଇଗଲେ/ଧରି ନିଏ : ପାଇଗଲି/ମସ୍ତବଡ଼ ଭୂଲ୍ ଏକ/ଲଙ୍ଘିବାକୁ ଜହ୍ନ ସିଢ଼ି/ଦୁସ୍ତର ଅନ୍ଧାର ।" (ଉତ୍ତୀର୍ଣ୍ଣ—ଚିତା ଅଙ୍କା କାନ୍ଥର ଛବି) । 'ଯୁବତୀର ଅକାତ କାତ ହୃଦର ଠିକଣା'ରେ ହଜିଯିବାବେଳେ ବା 'ଅନନ୍ୟ ଶୋକର କାଟ'ରେ ରସିଗଲା-ବେଳେ କବି ଶ୍ରୀ ଲେଙ୍କାଙ୍କର ଭାବନାର ଉତ୍ତାପ ଉପଲବ୍ଧ ହୁଏ । ('ସୂର୍ଯ୍ୟମୁଖୀ'—ସ୍ରୋତର ନାମ ଋତ) । ପୁଣି ଏ ଉତ୍ତାପର ତୀବ୍ରତା ଶେଷରେ ଚକାଡୋଳାଙ୍କ ଆଖି ପର୍ଯ୍ୟନ୍ତ ପ୍ରସାରିତ ହୋଇଯାଏ । ('ସମୁଦ୍ର : ୧୯୭୫'—ସ୍ରୋତର ନାମ ଋତ) । ଦୁଇ ଚକାଡୋଳା ସହ ଯୁବତୀର 'ଗୋଲାକାର ସୁନ୍ଦର ବକ୍ଷ'କୁ ତୁଳନା କରିବା ବାହ୍ୟତଃ ହାସ୍ୟାସ୍ପଦ ନିଶ୍ଚୟ ଓ ଯୁଗ ଯୁଗର ଧର୍ମବିଶ୍ୱାସ ଉପରେ ଏହା ଏକ କଠୋର ଆଘାତ । ଶ୍ରୀ ତ୍ରିଲୋଚନ ମିଶ୍ରଙ୍କ ଭାଷାରେ—ଏହା ଏକ ଦୁଃସାହସିକ ପଦକ୍ଷେପ । (୨୮) କିନ୍ତୁ ଏଇ ପଦକ୍ଷେପ ଅନ୍ତରାଳରେ ଯୁବତୀର ସମ୍ଭ୍ରାନ୍ତ ସ୍ତନ ଦେଇଛି ଆଧ୍ୟାତ୍ମିକତାର ଉପଲବ୍ଧି ଓ ବର୍ତ୍ତୁଳ ଚକାଡୋଳା ସନ୍ଦର୍ଶନରେ ଜାଗ୍ରତ ହୋଇଛି ରକ୍ତମାଂସର ପୃଥିବୀ ସ୍ଥିତ ଥିବା ମଣିଷର ଦୁର୍ବାର ପ୍ରଲୋଭନ । ଗୋଟାଏ ପଟେ ଆଧ୍ୟାତ୍ମିକ ମୁକ୍ତି ଓ ଅନ୍ୟପଟେ ପାର୍ଥିବ ସୌନ୍ଦର୍ଯ୍ୟ (ଯୁବତୀର ବକ୍ଷୋଜ)ର ଆକର୍ଷଣ—ମଝିରେ ମଣିଷ । ଯେବେ ପାର୍ଥିବତାରେ ଭୋଗୁଛି, ସଢ଼ୁଛି—ଚକାଡୋଳାର ଦୃଶ୍ୟ ଭିତରେ ଦେଖୁଛି ମୁକ୍ତିର ବାଟ ଓ ଯେତେ ତଟସ୍ଥ ଦୃଷ୍ଟିରେ ଚାହିଁ ରହୁଛି ଚକାଡୋଳାକୁ ତାର ମାନସପଟରେ ଜଳ ଜଳ ହୋଇ ଦିଶିଯାଉଛି ବକ୍ଷୋଜର ରମଣୀୟତା । ରୂପ ଓ ଅରୂପର, ଦେହ ଓ ଦେହାତୀତର, ଭୋଗ ଓ ଭକ୍ତିର ଦ୍ୱନ୍ଦ୍ୱାତ୍ମକ ଆକର୍ଷଣ/ବିକର୍ଷଣରେ ଛନ୍ଦି ହୋଇଥିବା ମଣିଷର/କବି ଭାବନାର ଏହା ଏକ ସୁନ୍ଦର ବିଶ୍ଳେଷଣ ।

ତେବେ କବି ଶ୍ରୀ ଲେଙ୍କାଙ୍କ ଯୌନଭିତ୍ତିକ କବିତାର ସୀମା ଏଇଠି ସରେ ନାହିଁ । ସହରରୁ ଗାଁକୁ, ଗାଁରୁ ସହରକୁ ଲମ୍ବିଛି ସେ ଚେତନାର ସ୍ୱର । 'ମୂଜାହୁଟି'ଟି ସେଥିପାଇଁ ସ୍ତ୍ରୀମାନଙ୍କ ଦେହପୂଜା/ପୂଜା ଅସ୍ତ୍ର ହୋଇଯାଏ ।

'ଭଗ୍ନ ସ୍ୱାଦର କବିତା'ରେ 'ମୃତ ଯୁବତୀର ଗୀତ' ସ୍ମରଣରେ ଭ୍ରମଣ ହେଉଥିବା ଯୁବକଟି ସୁରେନ୍ଦ୍ର ମହାନ୍ତିଙ୍କ 'ମହାନିର୍ବାଣ' ଗଳ୍ପଟିକୁ ମନେ ପକାଇ ଦିଏ । ଅଡ଼େନ୍‌ଙ୍କ ମିସ୍‌ଗି (Missgee) ର ଦୁରବସ୍ଥା (୨୯) କର୍କଟରୋଗ ପୀଡ଼ିତାର ଅନୁରୂପ ଆଜୀର ଯୌନକାମନା ସର୍ବସ୍ୱ ସୃଷ୍ଟି । ସତ୍ୟଭିତି ଯେପରି ଅଜଗର ସାପର ଛଳନା (ନିଜସ୍ୱ ପ୍ରାର୍ଥନା—କବିତାର ମୁକ୍ତି) । ଏଇ ସମସ୍ତ ଅଜଗରର ପିଠିରେ ବସି ଜୀବନର ସକଳ ସଫଳତା ଓ ବିଫଳତାର ଗୀତ ଗାଇବାକୁ ହେବ ଏବଂ ସେଇ ଗୀତ ଯେ ଆମ ଯୌନାକାଂକ୍ଷାର ସାର୍ଥକ ନିବେଦନ ହେବ, ସବୁବେଳେ ଏମିତି କିଛି ହେବ ନାହିଁ । ତେଣୁ ଶ୍ରୀ ଲେଙ୍କା ପ୍ରେମର ଏଇ ମନସ୍ତାତ୍ତ୍ୱିକ ଚାଫଣ ଭିତରେ ଏକ ମୋହମୁକ୍ତ ଜୀବନଯାପନ କରିବାର ଦର୍ଶନରେ ବିଶ୍ୱାସ ରଖିଛନ୍ତି ଏବଂ ପର୍ଯ୍ୟାପ୍ତଭାବେ ଏଇ ଭାବନା ତାଙ୍କର ଅନ୍ୟ ସବୁ ପ୍ରେମକବିତା ମଧ୍ୟକୁ ପ୍ରସରି-ଯାଇଛି ।

## ଆତ୍ମିକ ପ୍ରେମାନୁଭୂତି

ପ୍ରେମାନୁଭୂତି ସବୁକାଳରେ ବଡ଼ ସୂକ୍ଷ୍ମ ଓ ନିହାତି ବ୍ୟକ୍ତିଗତ । ଅଥଚ ବ୍ୟକ୍ତିଗତତା ପ୍ରେମର ଚିରନ୍ତନତା ବିରୋଧୀ । ଯେଉଁଠି ବ୍ୟକ୍ତିକ ପ୍ରେମାନୁଭବ ସାର୍ବଜନୀନତାର ସ୍ପର୍ଶ ପାଏ ସେଠି ପ୍ରେମ ବ୍ୟକ୍ତିକୁ ଲଙ୍ଘି ଯାଏ ଓ ସ୍ଥାନ କାଳପାତ୍ରକୁ ବି । ପ୍ରେମର ମହନୀୟତା ସର୍ବକାଳକୁ ଅମର ହୋଇ ରହେ । କିନ୍ତୁ ଆତ୍ମିକ ବା ବ୍ୟକ୍ତିକ ପ୍ରେମାନୁଭୂତିହିଁ ଏଇ ସାର୍ବକାଳିକ ପ୍ରେମାନୁଭବର ଭିତ୍ତି ଭୂମି । ବ୍ୟକ୍ତିର ପ୍ରେମାନୁଭବରେ ଯେଉଁଠି ଆତ୍ମସର୍ବସ୍ୱ ସମ୍ଭୋଗ ଲିପ୍ସା ରହେ ତାହା ସ୍ୱାର୍ଥପରତାରେ ପର୍ଯ୍ୟବସିତ ହେବା କଥା । ଯେଉଁଠି ବ୍ୟକ୍ତିକ ଯନ୍ତ୍ରଣା, ସହିଷ୍ଣୁତା, ନିଷ୍ଠା ଓ ତ୍ୟାଗ ମିଶି ପ୍ରେମକୁ ନିବିଡ଼ତା ଦାନ କରନ୍ତି ସେଠି କବି ମାୟାଧର ମାନସିଂହଙ୍କ କଣ୍ଠରେ ଗାଇବାକୁ ଇଚ୍ଛା ହୁଏ—

> ସବୁ ଭିଆଣରୁ ପୀରତି ଭିଆଣ କଠିନ
> ବିଳପି ବସିଲେ ବୋଧିବାର ଲୋକ ନ ଥାଏ ।
> କଠିନ ଆହୁରି ବାଛିବା ଲୁହ ଆଖିର
> ଯେତେ ପୋଛ ପୁଣି ସେତିକ ଗୋ ବୁକୁ ବିଥାଏ ॥
> ( ଧୂପ )

୨୯ । Srivastava, Narasingh—"W. H. Auden : A poet of Ideas"—1978, P. 91.

ପ୍ରେମରେ ଲୁହ ଗଡ଼ାଇବା କିଛି ନୂଆ ନୁହେଁ, ପ୍ରେମକୁ ଲୁହ ପବିତ୍ର କରେ । ଯୁଗ ଯୁଗ ଧରି ଲୁହ ସହ ଲକ୍ଷ୍ମର ସମ୍ପର୍କ ନେଇ ପ୍ରେମ ଗର୍ବ କରି ଆସିଛି । ବ୍ୟକ୍ତିର ଅନୁଭବର ସ୍ୱଚ୍ଛ ଦର୍ପଣଟିଏ ହୋଇ ଲୁହ ପ୍ରେମ ଆଗରେ ବସି ରହିଛି । ଦୁଃଖ ଶୋକର ନିଷ୍କପଟ ଦଲିଲ୍‌ଟିଏ ହୋଇ ପ୍ରେମ ଲୋଡ଼ି ଆସିଛି ଲୁହର ପ୍ରାମାଣିକତା । ଯେଉଁଠି ଯେତେ ଲୁହର ବନ୍ୟା ସେଠି ସେତେ ପ୍ରେମର ଗମ୍ଭୀରତା । କିନ୍ତୁ ବାସ୍ତବତା ପାଖରେ ଲୁହର ସତ୍ୟତା ଧରାପଡ଼େ, ଅଥଚ ପ୍ରେମର ସତ୍ୟତା ଅଶାନ୍ତିର କାରଣ ହୋଇଯାଏ । ସକ୍ରେଟିସ୍ କହନ୍ତି—"କେବଳ ପ୍ରେମ କରୁଥିବା କାଳରେ ନୁହେଁ, ପିପାସା ମେଣ୍ଟିଯିବା ପରେ ମଧ୍ୟ ପ୍ରେମିକ ପ୍ରେମିକାର ଅଶାନ୍ତିର କାରଣ ହୋଇଯାଏ । ନିଜର ଅଭିଳାଷ ପୂରଣ ହେଲା ପରେ ପ୍ରେମିକା ପାଖରେ ପ୍ରେମିକ ଯେଉଁସବୁ ପ୍ରତିଜ୍ଞା କରିଥାଏ, ସେଗୁଡ଼ିକ ଆଉ ପୂରଣ କରେ ନା ।" (୩୦) ଦାମ୍ପତ୍ୟ ପ୍ରେମ ନିଶ୍ଚିତଭାବେ ସନ୍ଧି ବା ପ୍ରତିଜ୍ଞା ଭିତ୍ତିକ । କେତେଗୁଡ଼ିଏ ପାରିପାର୍ଶ୍ୱିକ ସାମାଜିକତାର ଧାରାବାହିକ ସ୍ପନ୍ଦନ । ଯେବେ ପରିସ୍ଥିତିର ପ୍ରତିକୂଳତାରେ ପ୍ରତିଜ୍ଞା ପୂର୍ତ୍ତି ହୁଏ ନାହିଁ ବା ବାସ୍ତବତାର ଆହ୍ୱାନରେ କାବ୍ୟନାଟ୍ୟକ ସୁଖର ଶରଣାର୍ଥୀ ହୁଏ ନାରୀ ମନ ପ୍ରତିବାଦୀସୁଲଭ ହେବା ସ୍ୱାଭାବିକ । ପୁରୁଷର ଏଇ ଅମଡ଼ା ମାଡ଼ିବା ପଣକୁ ଆମ ପରମ୍ପରା ସମର୍ଥନ କରି ଆସିଛି । ଅଥଚ ନାରୀର ନୀରବ ଦ୍ରୋହକୁ ଶାସ୍ତ୍ର ସମ୍ମାନ ମିଳି ନାହିଁ । କବି ଶ୍ରୀ ଲେଙ୍କାଙ୍କ ଗୋଟାଏ କବିତାରେ ଏହାର ସୁନ୍ଦର ବିଶ୍ଳେଷଣ ରହିଛି । ସୁଖ ଓ ନାରୀ ଭିତରେ ଅଭେଦ କଳ୍ପନା କରାଯିବା ସଙ୍ଗେ ସଙ୍ଗେ ପୁରୁଷର ସୁଖସନ୍ଧିରେ ବ୍ୟଥିତା ନାରୀ କହୁଛି—

"ତମେ ଏତେଗୁଡ଼ାଏ ମିଛଟ
କାହିଁକି କହିଲ ? ମଦଠାରୁ
ମୁଁ କେଉଁ ଗୁଣରେ ହୀନ ଯେ !"

(ଅଭିଯୋଗ—ଚିତା ଅଙ୍କା କାନ୍ଥର ଛବି)

ଉତ୍ତରରେ ପୁରୁଷ କହୁଛି—

"ମଦ ମତେ ଭୁଲ୍‌ରେ ବି
ଭୁଲେ ନାହିଁ । ଠିକ୍‌ରେ ବି
ଠକେ ନାହିଁ । ଭୁଲ୍ ଠିକ୍‌ର
ମଝି ରାସ୍ତାରେ
ଠିଆ କରାଇ

---

୩୦ । ମହାନ୍ତି, ଶରତକୁମାର—ସକ୍ରେଟିସ୍ ଓ ପ୍ଲେଟୋ, ୧୯୭୦, ପୃ. ୪୧୩ ।

ପାଞ୍ଚ ପଚିଶିଙ୍କ କଥାରେ
ହୁଟେଡ଼ ନାହିଁ, ଝଲେ ନାହିଁ ।
ସବୁବେଳେ ପାଖରେ ଥାଏ । ଭିତରେ
ଗାଏ । ତମଠାରୁ ମନ
କେଉଁ ଗୁଣରେ ଊଣା ସେ !!"

ନାରୀଠାରୁ ମନ କୌଣସି ଗୁଣରେ କମ୍ ନୁହେଁ । ନାରୀ ସୁନା ପିଞ୍ଜୁରୀ ପରି ସୁନ୍ଦରୀ ହେଲେ ବି ସବୁଦିନ ପାଇଁ ପୁରୁଷ ତାହାଠାରେ ବନ୍ଦୀ ହୋଇ ରହିବାକୁ ଚାହେଁନା । ବୋଦ୍‌ଲେୟାରଙ୍କ ଭାଷାରେ—"Why should I care if you're as good as gold ?" (୩୧) ନାରୀର ସାହଚର୍ଯ୍ୟ ପୁରୁଷ ଚିତ୍ତକୁ ଯେମିତି ପ୍ରେମାନୁଭୂତିରେ ଧନାଢ୍ୟ କରେ ସେମିତି ମନ୍ତ୍ରମୁଗ୍ଧ ସୌନ୍ଦର୍ଯ୍ୟର ଫାଶରେ ପକାଇ ନାନାମତେ ଦଗ୍‌ଧୀଭୂତ କରେ । ଫଳରେ ପୁରୁଷର ସ୍ୱାଧୀନ ଅହଂକାରର ପାଦରେ ଶୃଙ୍ଖଳ ଲାଗିଯାଏ । ବନ୍ଦୀ କଏଦୀ ଭଳି କାବ୍ୟନାୟକର ଅବସ୍ଥା ହୋଇଯାଏ । "ଜାଣିବ : କେଇ ଦିନ ହେଲା/ମୁଁ ଖାସ୍ ମଥାରେ ଗୁଳୁଚ ।/କଞ୍ଚ ଭଳି ଲାଗିଚ ତମେ/ପାଦ ଦ'ଟାରେ ଯେଉଁ ଦିନୁ ।" ( ଶେଷ ସମ୍ବାଦ ) ! ମଥାରେ ଗୁଳୁଚ କହିବା ଭିତରେ କବିଙ୍କର ବସ୍ତୁରଣୀଳତା ପ୍ରତି ଔଚିତ୍ୟ ବାର ହୋଇଯାଏ । ନାରୀ ପ୍ରେମର ଅସଫଳଗ୍ରତା ଓ ତା'ର ରହସ୍ୟମୟ ବର୍ତ୍ତୁଳ ପୃଥିବୀ ଅନେକ ସମୟରେ ପ୍ରେମ ଓ ମୃତ୍ୟୁକୁ ସମମର୍ଯ୍ୟାଦା ଦାନ କରନ୍ତି । ଫଳତଃ 'ଅନ୍ଧ ମହୁମାଛି' (*) ଭଳି କାବ୍ୟନାୟକର ଅବସ୍ଥା ହୁଏ । ଅନନୁଭୂତ ମୂର୍ଚ୍ଛନାରେ ଯୋଗି ହୋଇ ଯାଆନ୍ତି କବି । ବାରମ୍ବାର ବାରଣ ସତ୍ତ୍ୱେ 'ନଟିଙ୍ଗ ନଥର'ଟି ପି ସେ ଓଲଟା ରାସ୍ତାରେ ଯାଆନ୍ତି ଏବଂ ଦଗ୍‌ଧୀଭୂତ ଯନ୍ତ୍ରଣାର କବର କାନ୍ଧେଇ (ପୁନର୍ଗମନ—ସ୍ମରଣ ବିସ୍ମରଣ) ତାକୁ ଫେରିବାକୁ ପଡ଼େ । ଏଭଳି ଅବସ୍ଥା ଆଜି କାହିଁକି, କାଳ କାଳର ମଣିଷର ଭାଗ୍ୟ । ପ୍ରେମ ରାଜ୍ୟର ପରିକ୍ରମା ପୁଣି ସଭିଙ୍କ ଭାଗ୍ୟରେ ଜୁଟେ ନାହିଁ । ନୂଆ ନୂଆ ଅନୁଭୂତି ଓ ଯନ୍ତ୍ରଣାସିକ୍ତ ମନ ନେଇ ହୃଦୟ ବଞ୍ଚେ । ପୁଣି ଦେହ, ମନ ଓ ହୃଦୟକୁ ନେଇ ପ୍ରେମ ଆୟୁଷ୍ମାନ୍ ହୁଏ । କମଲାକାନ୍ତଙ୍କ ଆତ୍ମିକ ଉପଲବ୍‌ଧି ତେଣୁ ପୁନର୍ଗମନ ଭଳି କେତୋଟି କବିତାରେ ନିଜସ୍ୱ ଅନୁଭୂତିର କଥା କହେ - ବୌଦ୍ଧିକତାକୁ ପ୍ରଶ୍ରୟ ଦିଏ ।

---

୩୧ । Scarfe, Francis -- Baudelaire-Poem : Sad Madrigal, P.70 ।

* ମିଶ୍ର, ସୌଭାଗ୍ୟକୁମାର—"ଅନ୍ଧ ମହୁମାଛି"- କବିତା ଗୁଚ୍ଛ ।

ଏହା ଧ୍ରୁବ ସତ୍ୟ ଯେ ମଣିଷ ଯାହା ଖୋଜେ ତା' ପାଏ ନାହିଁ । ଯାହା ପାଏ ତା' କେବେ ଖୋଜି ନ ଥାଏ । ଭାଗ୍ୟ ଓ ନିୟତି ସେଥିପାଇଁ ମଣିଷକୁ ଖେଳନା ରୂପରେ ଦେଖେ । ତେଣୁ ପରିବେଶ, ପରିସ୍ଥିତି ଓ ସମସ୍ୟା ଭିତରେ ବଞ୍ଚୁଥିବା ମଣିଷ ଶାନ୍ତି ଓ ଆନନ୍ଦ ପାଇଁ ବିଧିର ବିଧାନକୁ ଲଙ୍ଘିବାକୁ ଯାଇ ବେଳେବେଳେ ସ୍ୱପ୍ନର ପ୍ରତିମା ଗଢ଼େ । କବି ତାଙ୍କ କାବ୍ୟନାୟିକାର ମଡେଲ ଦିଅନ୍ତି । 'ବିଜ୍ଞାପନ' (ଚରା ଅଙ୍ଗା କାନ୍ଥର ଛବି : ପରିଧି ବାହାରେ ଅପେକ୍ଷାରତ ପୃଥିବୀରେ ଶ୍ରୀ ଲେଙ୍କା ଏଇଭଳି ଗୋଟାଏ ଝିଅର ଚିତ୍ର ଦେଇଛନ୍ତି । କବିଙ୍କ ଭାଷାରେ— ଝିଅଟି ଗୋଡ଼ରେ ନ ଚାଲି ମଥାରେ ଚାଲୁଥିବ (ଅର୍ଥାତ୍ ବୁଦ୍ଧି ଓ ବିବେକଦ୍ୱାରା ପରିଚାଳିତ ହେଉଥିବ), ନିଶାରେ ନୁହେଁ ନିଶାରେ ଜୀବନ ଖସଡ଼ା ପ୍ରସ୍ତୁତ କରୁଥିବ, ପ୍ରେମରେ ମାତିଥିବ, କାନ୍ଦୁଣୀ ହୋଇଥିବ, ବୟସ ପଚିଶିରୁ ଅଧିକ ହୋଇ ନ ଥିବ । କବିତା ଲେଖୁଥିବ, ମଦ ପିଉଥିବ, ଏବଂ "ମୋର ସବୁ ଭୁଲ୍‌କୁ/ବନ୍ଧୁଏ ହସରେ କେବଳ/ଧୋଇ ପାରିବ, ଧରି ପାରିବ !" (ବିଜ୍ଞାପନ) । ତନୁ ପାତଳୀ ଝିଅଟିର ଉଚ୍ଚତା କବିଙ୍କ ଉଚ୍ଚତା ସହ ତାଳ ଦେଉଥିବ, ଓଜନ ଚରିଶରୁ ପଇଁଚାଳିଶ କେ. ଜି. ହୋଇଥିବ । ଆଉ ଘରକରଣା କହିଲେ ବୁଝୁଥିବ—

"ପାଇଟି କହିଲେ : ଖବରକାଗଜର ଟେଂକଟକୁ ବୁଝୁଥିବ ।
ମୁଁ ରାଗିଲେ, ଅଧା ମୁକୁଳା ଗୁଡ଼ି ପିଠି
ଦେଖେଇ—'ମା'ର ମାର ପିଟ କାଟ କହି
ଆଖିର ହସରେ ନିଷ୍ପ୍ରଭ ତରଳି ଯାଉଥିବ ।"

ନିଜ ଗୋଡ଼ରେ ଠିଆ ଠିଆ ଦୌଡ଼ ପାରୁଥିବ ଏବଂ 'ଝୁଣ୍ଟି ପଡ଼ିଲା/ଘା' ଶୁଖିଲ ଯାଏ ପାଖରେ ରହୁଥିବ/ ଶୋଉଥିବ । ଗୀତଟିଏ ଗାଇବାକୁ କହିଲେ/ନିଜେ ମଦଭର୍ତ୍ତି ଗ୍ଲାସଟିଏ ହେଇ/ ଗୋଟାଏ ଢୋକରେ, ଓଠରେ ଶେଷ ହୋଇ ଯିବ ।" ଏଇଭଳି ଯୋଗ୍ୟତାସମ୍ପନ୍ନା ଝିଅଟିଏ ପୁଣି ପ୍ରତାରଣାଶୂନ୍ୟ ଜୀବନକୁ ବଞ୍ଚୁଥିବା ଦରକାର । ପ୍ରେମିକା ନିର୍ବାଚନରେ କବିଙ୍କର ଉଦାରତା ତାଙ୍କ କାବ୍ୟଦର୍ଶନର ମାପକାଠି । କବି ଆତ୍ମାର ଅଗ୍ରଗତି ପାଇଁ ପ୍ରେମିକାର ଭୂମିକା ଖୁବ୍ ବେଶି । ନ ହେଲେ ମନର ପ୍ରେମିକାକୁ ପାଇବା ପାଇଁ କବିଙ୍କର ଏଭଳି ସର୍ତ୍ତ ଆରୋପ ଅସ୍ପୃହଣୀୟ ମନେ ହୋଇଆନ୍ତା । ପ୍ରେମିକର ଏହା ଏକ ସ୍ୱାର୍ଥସମ୍ଭୂତ ଚିନ୍ତା ନିଶ୍ଚୟ । ପ୍ରେମିକାର ଅନନ୍ୟ ନିର୍ଭରଶୀଳତା ତାର କାମ୍ୟ । ଏପରି ନାରୀଙ୍କ ଶ୍ରୀ ଲେଙ୍କାଙ୍କ କବିତାର ବିବେକୀ ଗ୍ରାହିକା ହୋଇ ପାରିବେ । "ତମେହିଁ ମୋ କବିତାର ନିରଙ୍କୁଶ ଆୟୁଷ ।" ( ପ୍ରତିଲେଖ ) ସେଇ ନାରୀର ଯାଦୁକରୀ ସ୍ପର୍ଶରେ ଅସନ୍ତୋଷ, ଗ୍ଲାନି, କଳଙ୍କିତ ସତ୍ୟ, ନିଷ୍ଠୁର ଅତୀତ ଓ ପରିହାସମୟ ବର୍ତ୍ତମାନ ସେଥିପାଇଁ ମହମହ ଚନ୍ଦନ ଟୋପାରେ ରୂପାନ୍ତରିତ ହୋଇଯାଏ ( ଟୋପାଏ ଚନ୍ଦନ ) ।

ନାରୀ ହୃଦୟର ଆବେଗୋଷ୍ଣ ଆମନ୍ତ୍ରଣ ଜୀବନର ବ୍ୟର୍ଥତା, ଶୂନ୍ୟତାର ଅନ୍ଧକାର ଦୂର କରେ । କର୍ମକ୍ଳାନ୍ତ ମଣିଷର ମନ ଓ ହୃଦୟକୁ ସ୍ଥିରତା ଓ ଶାନ୍ତି ଦିଏ । ବାସ୍ତବ ଜୀବନର କର୍ମଜଞ୍ଜାଳର ଜ୍ୱାଳା ପ୍ରଶମିତ କରିବାରେ ନାରୀ ସାନ୍ନିଧ୍ୟର ସମର୍ଥତା ବୁଝାଯାଏ । କବି ଶ୍ରୀ ଲେଙ୍କା କହନ୍ତି—"ତମକୁ ପାଇଲା ମାତ୍ରେ/ଭୁଲିଯାଏ ମୋର ଅତୀତ ।" (ମହାକାଳୀ) । ନାରୀ ତ୍ରିକାଳର ଆଧାର । ବର୍ତ୍ତମାନ, ଭୂତ, ଭବିଷ୍ୟତର ନିତ୍ୟରୂପିଣୀ ଆତ୍ମା । କବି ଦୃଷ୍ଟିରେ ସେ ଏକ ମନ୍ତ୍ରସିଦ୍ଧା ଯୋଗିନୀ । ସେ ଗୋଟାଏ ବିନ୍ଦୁରେ ସ୍ଥିରୀକୃତ ମହାମୂର୍ତ୍ତି । ପୁରୁଷ ପାଇଁ/କାବ୍ୟନାୟକ ପାଇଁ ତେଣୁ ନାରୀ ସ୍ୱତନ୍ତ୍ର ଚେତନାର ଆଲୋକ ।

"ଗୋଟାଏ ବିନ୍ଦୁରେ ସ୍ଥିର
ମହାକାଳ ପରି
ତମେ ମତେ ମନ୍ତ୍ରସିଦ୍ଧ
କରୁଥାଅ ମହାସ୍ୱପ୍ନୀ,
ମହାକାଳୀ ରୂପେ ଅବତରି ।"

(ମହାକାଳୀ)

ପୁଣି କବି ଦୃଷ୍ଟିରେ ନାରୀ କ୍ଷମାର ବିଗ୍ରହ । ଉଦାରତାର ଜୀବନ୍ତ ପ୍ରତିମା । ପୁରୁଷର ଯାବତୀୟ କୁତ୍ସିତ ଅଭିପ୍ସାକୁ ସେ ଉଦାର ଦୃଷ୍ଟିରେ ଦେଖେ । ରାଗଦ୍ୱେଷ, ଅଭିଯୋଗ ଓ ଅଭିମାନ ସବୁ ନାରୀର ବିନ୍ଦୁଏ ଲୁହ ନିକଟରେ ପରାଜୟ ସ୍ୱୀକାର କରେ । 'କ୍ଷମାମୟୀ' ଓ 'ଅପ୍ରାସଙ୍ଗିକ' କବିତା ଦୁଇଟି ଏ ଦୃଷ୍ଟିରୁ ଅନନ୍ୟ ।

"ଯେତେ ଥର ମୁଁ ତମକୁ
ଭୁଲ୍ ବୁଝି ନିଜ ଭୁଲ୍ ଦେଖିଚି ତମଠି,
ସେତେଥର ଠିକ୍ ବାଟ
ବତାଇଚ, ନିଜ ଭୁଲ୍ ପାଖରେ ଅଟକି ।"

(କ୍ଷମାମୟୀ)

ଏଠି କବି ନିଜ ଭୁଲ୍‌କୁ ସ୍ୱୀକୃତି ଦେଇଛନ୍ତି ଓ କ୍ଷମାଶୀଳା ନାରୀ କବିଙ୍କର ଏ ଆତ୍ମସ୍ୱୀକୃତିକୁ ସମ୍ମାନ ଦେବାକୁ ଯାଇ ନିଜ ଭୁଲ୍‌ର ସୀମା ଟପିବାକୁ ପସନ୍ଦ କରିନାହାନ୍ତି । ଫଳତଃ ଜନ୍ମ ଜନ୍ମ ସାତ ଜନ୍ମ ଧରି ଗୋଟାଏ ମାତ୍ର ଅନୁନୟ ନାରୀ ପାଖରେ କବି ନିବେଦନ କରିଛନ୍ତି ।

"ଏଇମିତି ଜନ୍ମ ଜନ୍ମ ସାତ ଜନ୍ମ ଧରି
ତମେ ମତେ କ୍ଷମା କର, ମୋ ଆତ୍ମରୂପ

ସବୁତକ ନେଇ । ମୋ ଭଲ ଅପରାଧ
ତମଠାରୁ ତମଛଡ଼ା କ୍ଷମା ଦୟା କିଛି ଲୋଡ଼େ ନାହିଁ ॥

କବି କ୍ଷମା ଦୟା କିଛି ନ ଲୋଡ଼ିଲେ ବି ନାରୀ କ୍ଷମା ଦେବ । କାରଣ ନାରୀ ଜାଣେ ପୁରୁଷ ଜୀବନର କ୍ଷମାବିହୀନ ଅସହାୟତା । ଏଇ ଅସହାୟତା 'ଅପ୍ରାସଙ୍ଗିକ'ରେ ଏମିତି ଧୋଇ ହୋଇଯାଏ ।—"ସବୁ ହେଷ ଲୁହ ବିନ୍ଦୁ ମାନ ହେଇ / ଝଲ ପଡ଼େ ତମ ଦୁଇ ଆଖିର ଭିତରେ । /କାହିଁକି ଏମିତି ହୁଏ ?" ନାରୀ ସ୍ୱଭାବର ଗୋପନ ମାଧୁରୀ ପୁରୁଷର କ୍ରୋଧ ଓ ନିଷ୍ଠୁରତାକୁ ଲୁହବିନ୍ଦୁ ଭିତରେ ପ୍ରକାଶ କରେ । ପୂର୍ବର ଯୌନସୁଲଭ ପ୍ରେମ ଭିତରେ କମଳାକାନ୍ତଙ୍କର ଏ ମହିମ୍ନ ଉଚ୍ଚାରଣ କାହିଁ ? 'କାମନାର ହଳଦୀ ବସନ୍ତ' ଓ 'ଇଚ୍ଛାର ନିରାଲମ୍ବ ହାତ' (ଏକ ପୃଥକ୍ ସୃଷ୍ଟି—ସ୍ମରଣ ବିସ୍ମରଣ) ଭିତରେ ହଜି ଯାଇଥିବା କବିଙ୍କଠାରୁ ପୁଣି ଏମିତି ପ୍ରେମାନୁଭୂତି କିପରି ଆସିପାରେ ? ଏଇ ମାନସିକ ସ୍ଥିତିରେ କବି ପହଞ୍ଚି ସାରିବା ପରେ ମୋର ମନେହୁଏ ତାଙ୍କ ପ୍ରେମରେ ଆସିଛି ପରିପକ୍ୱତା । ଫଳତଃ ପ୍ରେମଜନିତ ସ୍ମୃତି କେବଳ ନିରୁଦ୍ଦିଷ୍ଟ ସ୍ୱୀକୃତି ଭିତରେ ବନ୍ଧି ରହି ନାହିଁ । ହୃଷ୍ଟତା ଓ ସାର୍ବିକତା ଆଡ଼କୁ ପ୍ରସରି ଯାଇଛି । 'ପ୍ରେମ' କବିତାରେ ତେଣୁ କବି ପ୍ରେମକୁ କବିତାର ପ୍ରତିମାରୂପେ ଦେଇଛନ୍ତି ଓ କବିତାକୁ ପ୍ରେମମୟୀର ଆସନ ଦେଇଛନ୍ତି । ବ୍ୟକ୍ତିର ମୃତ୍ୟୁ ସାଥିରେ ମୃତ୍ୟୁଞ୍ଜୟ ପ୍ରେମର ଯେ ବିଲୟ ଘଟେ ନାହିଁ, ଏଥିରେ ବିଶ୍ୱାସୀ କବି ଶ୍ରୀ ଲେଙ୍କା ଅଟଳ ଅଛନ୍ତି ।

## ଶୃଙ୍ଖଳିତ ପ୍ରେମ

ଶୃଙ୍ଖଳିତ ପ୍ରେମର ଅର୍ଥ ସ୍ୱାର୍ଥହୀନ ପ୍ରେମ । ପରିପାର୍ଶ୍ୱକୁ ବଦଳାଇବା ପାଇଁ ଏହାର ଭୂମିକା ଯଥେଷ୍ଟ । ସାଧାରଣତଃ ଆଧୁନିକ କବିମାନେ ପାରିପାର୍ଶ୍ୱିକ ପରିସ୍ଥିତିକୁ ବଦଳାଇବା ପାଇଁ ସେତେ ଆଗ୍ରହୀ ନୁହଁନ୍ତି । ଅବଶ୍ୟ ନିର୍ଦ୍ଦିଷ୍ଟ ଆଦର୍ଶବାଦୀ କବିଙ୍କୁ ଏଥିରୁ ବାଦ୍ ଦେବାକୁ ହେବ । କାରଣ ଷଷ୍ଠ ଦଶକରୁ ଆଦର୍ଶବାଦ ପ୍ରତି କବିମାନଙ୍କର ସନ୍ଦେହ ଆରମ୍ଭ ହୋଇଯାଇଛି । ତଥାପି ଶୃଙ୍ଖଳିତ ପ୍ରେମର ପ୍ରଭାବ ସମାଜ ଉପରେ ନିଶ୍ଚୟ ରହିଛି ।

ନିଃସ୍ୱାର୍ଥପର ସମର୍ପଣ ପ୍ରେମରେ ଆଣେ ପୂର୍ଣ୍ଣତା । ଦେହ ସର୍ବସ୍ୱ, ସଙ୍କୀର୍ଣ୍ଣ ବାସନା ପ୍ରେମକୁ ନିଃସ୍ୱାର୍ଥପର କହି ପାରିବା ନାହିଁ । ପୂର୍ଣ୍ଣତା ପାଇଁ ଯେପରି ପ୍ରେମରେ ତ୍ୟାଗର ଭୂମିକା ରହିଛି ପ୍ରେମ ପାଇଁ ସେମିତି ଜୀବନ ଭରି ସାଧନାର ପବିତ୍ରତା ଲୋଡ଼ା । କମଳାକାନ୍ତଙ୍କ ପ୍ରେମ କବିତାରେ ଏଇ ଦୃଷ୍ଟିଭଙ୍ଗୀର ଅଭାବ ନାହିଁ । ଯେପରି—

‘ଜହ୍ନ’ ଫୁଲଟିଏ
ସର ତମେ
ହସୁଚ ଦୂରରୁ ,
ଅସଜ୍ଞାଏ ବର୍ଷା ପରେ
ଯେମିତ ଆକାଶରେ
ଜହ୍ନ, କବିତାର
ପୃଥିବୀ । ଝାଟିମାଟି
ଗୃହ ଉପରେ ଭୂସ୍ୱର୍ଗ ।” (କବିତା—ଚିତା ଅଙ୍କା କାନ୍ଥର ଛବି)

ପ୍ରକାଶ ଭଙ୍ଗୀ ସରଳ ଓ ପ୍ରାଣମୟ । ଅର୍ଥକୁ ନେଇ କବିତାର ମାଧୁର୍ଯ୍ୟ ସ୍ୱତଃ ପ୍ରକାଶିତ । ସେମିତ ଆଉ ଗୋଟାଏ କବିତା—

“ହଳଦୀ ଲଗାଇ
ତୁ ଆସିବୁ ନାଇଁ ।
ଚମ୍ପା ଫୁଲଟି
ପକେଟକୁ
ଡେଇଁ ପଡ଼ିବାର
ସମ୍ଭାବନା ଅଛି ।”
(ଇଚ୍ଛାଟିଏ)

‘ସ୍ମରଣ ବିସ୍ମରଣ’ର ପ୍ରିୟତମା, ବସନ୍ତ, ଦୁଇଟି ପ୍ରେମ କବିତା, ପ୍ରେମିକାକୁ, ସମ୍ପର୍କ (୨) କବିତାଗୁଡ଼ିକ ଏହି ଶ୍ରେଣୀର । ଶୃଙ୍ଖଳା ମଣିଷକୁ ସ୍ୱାଧୀନତାର ମହତ୍ତ୍ୱ ଶିଖାଏ । ତେବେ ଜୀବନର ଅସ୍ୱଚ୍ଛନ୍ଦତା, ସ୍ୱାର୍ଥପରତା ଓ ପଶଶୀଳିତ ପ୍ରେମ ଭିତରୁ କେଉଁଟିକୁ ବାଛିବାକୁ ହେବ ତାହା ବ୍ୟକ୍ତି ଉପରେ ନିର୍ଭରଶୀଳ । ପ୍ରେମିକ ଦେଖେ ତାର ବାନ୍ଧବୀ ପଶସ୍ଥିତ ଚହଟରେ ଅନ୍ୟର ଘରଣୀ । ଘରକରଣା ଭିତରେ ବନ୍ଦୀ ବାନ୍ଧବୀଟି ସାଂସାରିକତାକୁ ମାନି ନେଲା ପରେ ବି ଯନ୍ତ୍ରଣାର ସାହାଣ ମେଳ । ସ୍ୱାମୀ ହୁଏତ ଗାଢ଼ ବାରଟାରେ ଘରକୁ ଫେରନ୍ତି । ସ୍ଥିତିର ନୀରବ ସହନଶୀଳତା କବିଙ୍କୁ ସ୍ପର୍ଶ କରେ ।

“ତୁ ବେଶ୍ ମଜାରେ ଅଛୁ । ବେଳେ ବେଳେ ଶୁଣେ ତୋର
ଭଲ ମନ୍ଦ । ସ୍ୱାମୀଙ୍କ ଖବର । ବଡ଼ ଅଫିସର ସିଏ ।
ଦରମା ବି ମୋଟା । ଘୁଙ୍କର ଦାକର
ବୃତ୍ତାନ୍ତ ଖବର ତୋର । ହ୍ୱାନ ଲୁଭ ଯେତେକ ଝମେଲା ।

ଗତ ସନ ପ୍ରମୋଶନ ପାଇବା ଉତ୍ସବେ
ସ୍ୱାମୀ ତୋର ଘରକୁ ଫେରନ୍ତି ନିତି ରାତି ବାରଟାରେ ।
ମୁଁ ବଡ଼ ଆଶ୍ଚର୍ଯ୍ୟ ହୁଏ । ଭାବେ ଦେଖି ତୋଅର ଛନ୍ଦକୁ ।
ତୁ ବା କେମିତି ସହୁ ଏମିତିକା ପୁରୁଷର
ଘରଛଡ଼ା ପ୍ରକୃତି ଓ ନିଲଠା ପଣକୁ ।”
( ସଂପର୍କ—୨ “ସ୍ମରଣ ବିସ୍ମରଣ ”)

ନିଃସ୍ୱାର୍ଥପର ଶୃଙ୍ଖଳିତ ପ୍ରେମର ଏହା ଏକ ସୁନ୍ଦର ଦୃଷ୍ଟାନ୍ତ । ସେହିପରି ‘କାଠ କ୍ୟାବିନ୍‌ରେ ପାନ ଭାଙ୍ଗୁଥିବା ଝିଅଟି’ କବିଙ୍କର ଏକ ସୁଶୃଙ୍ଖଳ ପ୍ରେମାନୁଭୂତିକୁ କ୍ୟାବିନ୍‌ରେ ପାନ ଭାଙ୍ଗିବା ଭିତରେ ଦେଖାଇ ଦେଇଛନ୍ତି । ଦ୍ୱିପ୍ରହର ବେଳେ ପାନ ଦୋକାନରେ ଗରାଖ ନ ଥିଲା ସମୟରେ ନିଜର ସ୍ମୃତି-ଚାରଣ କରେ ସ୍ତ୍ରୀ ଲୋକଟି । ଲାଙ୍ଗୁଳିଆ ପୋକ ପରି ସ୍ମୃତି ତା’ ମନର ପରିତ୍ୟକ୍ତ ଦୁର୍ଗ ଭିତରେ ପ୍ରବେଶ କରିଥାଏ । ତା’ ସାମ୍ନାରେ ଥିବା ଚୂନ ଠେକଟିର ଚାରି-ପାଖରେ ଶୀତଳତା ପାଇବା ପାଇଁ ମନ୍ଦା ମନ୍ଦା ଜନ୍ଦା ବେଢ଼ିଯାନ୍ତି । ସ୍ତ୍ରୀଲୋକଟି ଅନ୍ୟମନସ୍କା ହୋଇ ଗୁଆ କାତିରେ ଗୁଆ କାଟି ଚାଲେ । ନଖ କୋଣରୁ ମଇଳା ଛଡ଼ାଇଲା ବେଳେ, ଅଳିଆ ବାଳକୁ ସଜାଡ଼ିଲାବେଳେ ସ୍ମୃତିକୁ ରୋମନ୍ଥନ କରେ । ଗୁଆକାତିରେ ଗୁଆ ଦାବିଲାବେଳେ ସେ ଯେମିତି ସମୟକୁ ଦାବି ଚାଲେ । ‘ଶୂନ୍ୟତାରେ ଝିଅଟିର ନିର୍ଜନ ଆହ୍ଲାଦ’ ହୋଇଥାଏ । ‘ନଡ଼ିଆକତାର ନିଆଁ ଝୁଲ’ ତା ଯୌବନର ତାତି ଓ ଦହନକୁ ମନେ ପକାଇ ଦିଏ । ପାନ ଭାଙ୍ଗାଳି ସ୍ତ୍ରୀ ଲୋକଟିର ମାନସିକ ଆଲୋଡ଼ନ ଏଠାରେ ବିସ୍ମୟକର ଭାବେ କାବ୍ୟିକ । କବି ଶ୍ରୀ ଲେଙ୍କାଙ୍କର ଏହା ଏକ ଭଲ କବିତା । ସେମିତି “ଚିତା ଅଙ୍କା କାନ୍ଥର ଛବି : ପଞ୍ଚଧି ବାହାରେ ଅପେକ୍ଷାରତ ପୃଥିବୀ”ରେ ଥିବା ‘ଉଚିତ ଅନୁଚିତ’, ‘ବିଲ୍ୱମଙ୍ଗଳ’, ‘ବିଜନମନ୍ତ୍ର’, ‘ଚିଠି’ପ୍ରଭୃତି କବିତା ଏ ପ୍ରସଙ୍ଗରେ ଉଲ୍ଲେଖ-ଯୋଗ୍ୟ । ଏ ସବୁଥିରେ କବିଙ୍କ କଳ୍ପନାପ୍ରବଣତା ଓ ବାସ୍ତବତା ହାତ ଧରାଧରି ହୋଇ ପାଖାପାଖି ଚାଲିଛନ୍ତି । ମୋଟାମୋଟି ପ୍ରେମର ସ୍ୱାର୍ଥହୀନ ଅନ୍ୱେଷଣ ଓ କବି ଦୃଷ୍ଟିର ପରିଚ୍ଛନ୍ନତା ଆମକୁ ଶୃଙ୍ଖଳାବୋଧର ମହତ୍ତ୍ୱ କଥା କହୁଛି ।

## ମାନବବାଦୀ ପ୍ରେମାନୁଭୂତି

ନିର୍ଦ୍ଦିଷ୍ଟ ମାନବବାଦୀ ଦର୍ଶନରେ କବି ଶ୍ରୀ ଲେଙ୍କା ବିଶ୍ୱାସୀ ନୁହନ୍ତି । କିନ୍ତୁ ପ୍ରେମାନୁଭୂତିରେ ମାନବବାଦୀ ଧାରଣାଟି ତାଙ୍କର ଅସ୍ଥିମଜ୍ଜାଗତ । ପ୍ରେମ ତାଙ୍କ ଦୃଷ୍ଟିରେ ବଞ୍ଚିବାର ଏକ ରାହା । ଏକ ବାସ୍ତବ ଅନୁଭୂତି । ‘ଫୁଲବାଣୀ’

କବିତାରେ 'ସାଲେଙ୍କୀ'ର ଗୁଢଫଣ୍ଟା ହସ, 'ଲଜ୍ଜାଶ୍ଳୀନ ସମର୍ପଣର ଭାବ' ଅବିଶ୍ୱାସୀ ମଣିଷ ପାଇଁ ଏକ ଆଶ୍ୱାସନା ।

"ଫୁଲବାଣୀ, ଶାଳବନୀର ଗ୍ରହ୍ମସିକ୍ତ ସ୍ନେହଠାରୁ
ସାଲେଙ୍କୀର ଗୁଢଫଣ୍ଟା ହସ ଏବଂ
ଲଜ୍ଜାଶ୍ଳୀନ ସମର୍ପଣ ଭାବ
ମୋତେ ବେଶି ଭଲ ଲାଗେ ।"

(ସ୍ମରଣ ବିସ୍ମରଣ)

ସହର ଓ ରାଜଧାନୀଠାରୁ ଆଦିବାସୀ ରମଣୀର ସ୍ନେହାଣି ଖୁବ୍ ସ୍ନେହଶୀଳା ମନେହୋଇଛି କବିଙ୍କୁ । କବି ଯେଉଁ ହୃଦୟର ମଣିଷଟି ପାଇଁ ଏତେ ଧନ୍ଦ ହେଉଥିଲେ, ଫୁଲବାଣୀରେ ତାହାର ସାକ୍ଷାତ ପାଇଛନ୍ତି । ସେମାନଙ୍କ ଲୀଳାୟିତ ଭଙ୍ଗୀର ସ୍ୱାଭାବିକତା ଓ ସ୍ୱଚ୍ଛନ୍ଦ ପ୍ରେମାଳାପ ସବୁପ୍ରକାର ହସାବା ବୁଦ୍ଧିର ଶାଳୀନତାକୁ ଟପି ଯାଇଛି ।

"ମୁଁ ତ ଏଠି ଆପଣାକୁ ବିକ ଶ୍ରଙ୍ଗି
ଗଢ଼ିବାକୁ ଚେଷ୍ଟା କରେ ଉମର ଛାଞ୍ଚରେ
ଧୂଳିମଳି ଶୂନ୍ୟ ଏକ ଝିଲ୍ ଝିଲ୍ ହସର ନଅର ।"

ମାନବବାଦୀ ପ୍ରେମାନୁଭୂତିରେ ଭରିଯାଇଛି କବିର ହୃଦୟ । ଏହା ଏକ ଅତୁଳନୀୟ ମାନବୀୟ ସମ୍ପଦର ନିଦର୍ଶନ । 'ଏଠି ସବୁ ଧାନ ବିଲ' କବିତାରେ ପ୍ରେମ ବର୍ଣ୍ଣନାର ଆବେଦନ ଅଦ୍ଭୁତ ମର୍ମସ୍ପର୍ଶୀ ।

"ଏଠି ସବୁ ଧାନ ବିଲ
ପାଣି ଆଉ କାଦୁଅର ଛିଟା,
ପିଚକାରୀ ମାରି ଦେଲା
କିଏ ସେ ଗୋ ଏତେ ଫୁଲ ଗନ୍ଧର ମହକେ ?
କିଏ ପୁଣି ଭରି ଦେଲା
ଜୀବନର ଏତେ ହସ, ଏତେ କାନ୍ଦ
ରସଦର ଭରା ଛନ୍ଦ
ମୁକ୍ତ ଏଇ କ୍ଷେତର ମୂଲକେ ।"

(ଏଠି ସବୁ ଧାନବିଲ— ସ୍ମରଣ ବିସ୍ମରଣ)

ପ୍ରେମିକ ପ୍ରେମିକା ମଧ୍ୟରେ ପାରସ୍ପରିକ ଭାବପ୍ରବଣ ସ୍ଥିତି ଏକ ଶକ୍ତିଶାଳୀ ଭାବାବେଗର କାରଣ । ସବୁଠୁ ଉଲ୍ଲେଖନୀୟ ଏହାର ଚମତ୍କାରିତାବୋଧକ ପ୍ରକାଶ-ଭଙ୍ଗୀ । ସୀମିତ ପରିବେଶ ଭିତରେ, ପ୍ରେମର ଗ୍ରହଣଶୀଳତାର ଭିତ୍ତି ଉପରେ

ନର୍ତ୍ତର କରେ ଆବେଦନର ପ୍ରତିଷ୍ଠା । "କଥାମାନ" କବିତାରେ ଏ ଆବେଦନ ଆହୁରି ଗଭୀର ଓ ଆନ୍ତରିକ । "ପାଇନି ପାଇନି କହି/ଭୁଲିଯାଅ ସବୁ କଥା,/ ହେପାଜତରୁ ନଥ ନାହିଁ/ସାମାନ୍ୟ ଦେହର ।/ବାଧ୍ୟକରେ ପଢ଼ିଗଲେ/କଏ ଅଛି ବୁଝିବାକୁ/ଡମ ଆମ ଭଲମନ୍ଦ ପିଲାଙ୍କ ଖବର ।" (ଟଙ୍କା ଅଙ୍କା କାଙ୍କର ଛନ୍ଦ) । ସ୍ୱାମୀ ବିଦେଶରେ । ସ୍ତ୍ରୀର ଯଥାଯଥ ତତ୍ତ୍ୱାବଧାନ କରି ପାରୁ ନଥିବାରୁ ମନ ତାଙ୍କର ଭୀଷଣ ଦୁଃଖ । ଶ୍ରୀ ଲେଙ୍କାଙ୍କ କାବ୍ୟପୁରୁଷ ଅନ୍ୟକୁ ଖୁସିବାକୁ ସୁଯୋଗ ଦିଏନି ଯେ ସେ ଜଣେ ଚେତନାଶୀଳ ବ୍ୟକ୍ତିତ୍ୱ ।

ଅନ୍ୟ ପକ୍ଷରେ, ପ୍ରେମିକାମାନଙ୍କୁ ସ୍ୱାଧୀନ ଭାବାପନ୍ନା ହେବାକୁ କବି ପସନ୍ଦ କରନ୍ତି । ସାମାଜିକ ନୀତି ନିୟମ ଭିତରେ ସେମାନଙ୍କର ସ୍ୱାତନ୍ତ୍ର୍ୟ, ମୌଳିକ ଜୀବନାଦର୍ଶ ଅକ୍ଷୁଣ୍ଣ ରଖିବାକୁ ପରାମର୍ଶ ଦିଅନ୍ତି । "ହେ ମୋର ବାନ୍ଧବୀମାନେ ! ମନଭରି ଗୀତ ଗାଅ ଝାଉଁର ମର୍ମରେ/ତୁମେ ସବୁ ଏତେ କାହିଁ ଝୁରି ମର ସାମାଜିକ ନୀତିର ଗର୍ଭରେ ?" (ହେ ମୋର ବାନ୍ଧବୀମାନେ—ସ୍ମରଣ ବିସ୍ମରଣ) ।

ସେଇପରି 'ନୂଆଗୀତ' କବିତାରେ କବି କହନ୍ତି—

"ଫୁଲ ଫୁଟୁ ଫୁଲ ଲୋଟୁ
ଗୀତ ଗାଉ ବସନ୍ତର ପକ୍ଷୀ ।
ଆଜିକାର ନୂଆ ଗୀତ
କାଲି ପାଇଁ ନ ରହୁ ଗୋ ବାକି ।।"

(ନୂଆ ଗୀତ– ସ୍ମରଣ ବିସ୍ମରଣ)

ଜୀବନର ପ୍ରତିଟି ମୁହୂର୍ତ୍ତକୁ ନୂତନତାର ସ୍ୱାଦରେ ଭରିଦେବାକୁ କବି ଚାହାନ୍ତି । କୌଣସି ବସ୍ତୁର ପ୍ରାଚୀନତା ବା ତା'ର ସମ୍ଭାବ୍ୟ ପରିଣତି ପ୍ରତି ଗଭୀର ସଚେତନତା ପ୍ରକାଶ ନ କରି ତା'ର ବର୍ତ୍ତମାନତାକୁ କବି ଅର୍ଥମୟ କରିବାକୁ ଇଚ୍ଛା କରନ୍ତି । 'ନାରୀ', 'ବିଜ୍ଞାପନ', 'ପ୍ରେମ' ପ୍ରଭୃତି କବିତାରେ ଏଇ ମାନବବାଦୀ ପ୍ରେମାନୁଭୂତି ଅତି ଉଜ୍ଜ୍ୱଳ । ନାରୀର ସ୍ୱାଧୀନତାକୁ ମାନବୀୟ ସମ୍ମାନବୋଧରେ ଭୂଷିତ କରିବା ଅର୍ଥ ଜୀବନର ପାପ ପୁଣ୍ୟକୁ ସମୁଚିତ ମର୍ଯ୍ୟାଦା ପ୍ରଦର୍ଶନ କରିବା । କାରଣ କବି ବୁଝନ୍ତି—'ନାରୀ ତାଙ୍କ ପାପ ପୁଣ୍ୟର ନିଙ୍କାରିତ ଅଧିବାସ ।' (ନାରୀ) । ଏଇ କବିତାଟିରେ ନାରୀ ପ୍ରତି କବିଙ୍କର ଗଭୀର ସମ୍ମାନବୋଧ ଉତ୍କର୍ଷିତ ହୋଇଛି । ନାରୀ ଯେ କବିଙ୍କ ଅସ୍ମିତାର ପ୍ରତ୍ୟୟର ପ୍ରଥମ ଓ ସର୍ବଶେଷ ସମ୍ବୋଧନ ! ନାରୀ ଯେ ଅନିତ୍ୟ ପ୍ରତି ଅସହିଷ୍ଣୁ ନିତ୍ୟତା ! ନାରୀ ଯେ ଆମ ଜୀବନର ଭଲମନ୍ଦ ଓ ସ୍ୱଚ୍ଛନ୍ଦତାର ପ୍ରତିଚ୍ଛବି ! କବି କହନ୍ତି—

"ସ୍ୱୟଂ ସୃଷ୍ଟିକର୍ତ୍ତାଙ୍କ ସମକକ୍ଷ
ଶକୁନ୍ତିଏ ଭଳି ସ୍ୱର୍ଗର ଆଭରଣସ୍ଥାନ
ମୌନତା। ସୃଷ୍ଟିର ସପତ୍ନୀ। ରହସ୍ୟର
ନକଟତମ, ସକ୍ଷିପ୍ତ ଉତ୍ତର, ଚନ୍ମସ୍ୱୀ।
କବିର ଅଷ୍ଟୋତ୍ତର ଶତ ନାମ,
ବ୍ରାହ୍ମୀ ସରସ୍ୱତୀ।"

(ନାସ୍ତି—ଚନ୍ଦ୍ରା ଅଙ୍ଗା କାନ୍ଥର ଛବି)

ନାସ୍ତିକୁ ବ୍ରାହ୍ମୀ ମର୍ଯ୍ୟାଦା ଦେଉଥିବା କବିର ସୃଷ୍ଟିରେ ନାସ୍ତି ଯେ ଅନନ୍ୟା ଓ 'ମହାକାଳୀ' ରୂପେ କାବ୍ୟନାୟକର ସ୍ଥିତି ବଳସ୍ୱର କାରଣ ହେବ, ଏଥିରେ ବିସ୍ମିତ ହେବାର କିଛି ନାହିଁ। ସେହିପରି 'ବିଜ୍ଞାପନ' କବିତାରେ 'ସ୍ଫୁର୍ତ୍ତି ପଡ଼ିଲିତ/ଘା' ଶୁଣିଲାପାଏ ପାଖରେ ରହୁଥିବା ଅତି ଗୁରୁତ୍ୱପୂର୍ଣ୍ଣ ମାନବିକ ଦୃଷ୍ଟିଭଙ୍ଗୀ। ମଣିଷର ପୂର୍ଣ୍ଣତା ପାଇଁ, ତାର ହତାଶା ଓ ପାପବୋଧକୁ ଦୂର କରିବା ପାଇଁ ପ୍ରେମ ଆବହମାନକାଳରୁ ଅପ୍ରତିହତ ସ୍ୱୀକୃତି ଲାଭ କରିଛି। ଶ୍ରୀ ଲେଙ୍କାଙ୍କ ମାନବବାଦୀ ପ୍ରେମକବିତାଗୁଡ଼ିକ ଏଇ ଧାରଣାର ପରିପୂରକ ହେବା ସଙ୍ଗେ ସଙ୍ଗେ ଅନେକାଂଶ ଆଶ୍ଚର୍ଯ୍ୟଜନକ ସ୍ୱାତନ୍ତ୍ର୍ୟ ଦାବୀ କରନ୍ତି।

**ଉପସଂହାର**

ଶ୍ରୀ ଲେଙ୍କା ପ୍ରେମର ପ୍ରକୃତ ଅର୍ଥ ସନ୍ଧାନରେ ସାରା ଜୀବନର ଅନୁଭୂତିକୁ କବିତାରେ ପ୍ରୟୋଗ କରିବାକୁ ଉଚିତ ମଣିଛନ୍ତି। ଜୀବନ ସହ ଏହାର ଆବଶ୍ୟକତା ନିର୍ଣ୍ଣୟ ତାଙ୍କର ପ୍ରଧାନ ଉଦ୍ଦେଶ୍ୟ। ପ୍ରେମିକା ସହ ନୀରବ ବାକ୍ୟାଳାପ ଭିତରେ ତ କେଉଁଠି ସ୍ୱଗତୋକ୍ତି ମାଧ୍ୟମରେ ତାଙ୍କର କାବ୍ୟଦର୍ଶନର ମହତ୍ତ୍ୱ ଫୁଟି ଉଠିଛି। ଏକ ଜ୍ୱାଳାମୟ ସ୍ଥିତି ଭିତରେ ତାଙ୍କ କାବ୍ୟପୁରୁଷଟି ସତତ ଜାଗ୍ରତ ଓ ସଚେତନ। ପ୍ରାୟ ପ୍ରତିଟି ପ୍ରେମ କବିତାରେ ଏଇ ମନୋଭାବର ସାମାଜିକ ଓ ମନସ୍ତାତ୍ତ୍ୱିକ ଦୃଷ୍ଟିକୋଣର ସମର୍ଥନ ରହିଛି। ତେଣୁ କବି ଶ୍ରୀ ଲେଙ୍କାଙ୍କ ପ୍ରେମ କବିତାର ବିକାଶରେ ତାଙ୍କ କାବ୍ୟ ଆଭିମୁଖ୍ୟଟି ବେଶ୍ ସ୍ପଷ୍ଟ। ମଣିଷ ଯେତେ ବୟସ୍କ ହୁଏ, ତାର ସୁକୋମଳ ପ୍ରେମାନୁଭୂତି ସେତେ କମି କମି ଆସେ। ସୁକୁମାର ପ୍ରେମାନୁଭୂତିରେ ଧନୀ ହୋଇଥିବା ମଣିଷଟିକୁ ରୁକ୍ଷତା କ୍ରମଶଃ ଗ୍ରାସ କରିଯାଏ। ପ୍ରେମ ଭାବନାର ସ୍ୱତଃସ୍ଫୂର୍ତ୍ତିତା ଆତ୍ମଗୋପନ କରେ ଯୁକ୍ତିନିଷ୍ଠତା ଭିତରେ। ଜୈବିକ ପ୍ରେମରେ ଆସେ ଏକ ଉତ୍ତରଣ ଅବସ୍ଥା। ତେଣୁ ଦୈହିକ ପ୍ରେମ ସ୍ଥାନରେ ଦେଖାଦିଏ ଦାର୍ଶନିକ ବିସ୍ମୟ। କମଳାକାନ୍ତଙ୍କ ପ୍ରେମ କବିତାରେ ଏଇ ସତ୍ୟାନ୍ୱେଷୀ

ଧାରାଟିକୁ ଲକ୍ଷ୍ୟ କରି ହେବ । ତାଙ୍କ ପରିଣତ ବୟସର ପ୍ରେମ କବିତାକୁ ବିଚାର କଲେ ବକ୍ତବ୍ୟଟିର ଯଥାର୍ଥ୍ୟ ପ୍ରତିପାଦିତ ହୁଏ । ଶ୍ରୀ ଚିତ୍ତରଞ୍ଜନ ଦାସଙ୍କ ଭାଷାରେ—"ଯିଏ 'ଉତ୍ତରଣ' ପାଠ କରିଥିବ ସିଏ ଏଗୁଡ଼ାକ ଭିତରେ (ବିସ୍ମରଣ-ଧର୍ମୀ କବିତା ଭିତରେ) କଦାପି ଛନ୍ଦ ଯୋଗ ରହିବାକୁ ଇଚ୍ଛା କରିବ ନାହିଁ । ସେ ସିଧା 'ଏଠି ସବୁ ଧାନ ବିଲ' ଓ 'ଫୁଲବାଣୀ' ଯାଏ ଚାଲି ଆସିବ ।" (୩୨)



---

୩୨ । ଦାସ, ଚିତ୍ତରଞ୍ଜନ— 'ସ୍ମରଣ ବିସ୍ମରଣ' : କମଳାକାନ୍ତ ଲେଙ୍କା,—୧୯୭୩—କବି ଶ୍ରୀ ଲେଙ୍କାଙ୍କଠାରୁ ପ୍ରାପ୍ତ ଶ୍ରୀ ଦାସଙ୍କ ଚିଠି ( ତା ୧୭ । ୭ । ୧୯୭୦ ) ।

# ପଞ୍ଚମ ଅଧ୍ୟାୟ

## ଇହଲୌକିକରେ ପରକାଳ ଓ କବି କମଳାକାନ୍ତ

"ଆଉ କେତେ କାଳ ?
ମୁଁ ତ ଯିବି ଶୋକାଙ୍କର କୋକେଇରେ
ଘୋଡ଼ି ହୋଇ ହସର ଚଦର
ମଶାଣିକୁ । ପୂର୍ବ ପୁରୁଷଙ୍କ
ଦାଢ଼ିଆ ମୁହଁରେ ମୁହଁ ମିଳାଇବି,
ଆଉ କେତେ କାଳ ?
ସମୟର କବ୍‌ଜା ତଳେ ମୁଁ ସାମାନ୍ୟ
ଘାସର ପତର ।"

( ସମୟ ପ୍ରତୀକ୍ଷମାଣ—ଅନ୍ତତଃ ନଷ୍ଟୁପ )

ସମୟର ପରିବ୍ୟାପ୍ତ ପରିଧି ଭିତରେ ମଣିଷର ଭାଗ୍ୟ ସୂତା ଖିଅରେ ବନ୍ଧା । ଏ ବିରାଟ ସୃଷ୍ଟି ମଧ୍ୟରେ ତାର ଅସ୍ତିତ୍ୱ ବିନ୍ଦୁ ପରି ନଗଣ୍ୟ । ଏହା ଜାଣିଥିବା ହେତୁ ସେ ହୁଏତ ମୃତ୍ୟୁ ସମ୍ପର୍କରେ ଏତେ ସଚେତନ । ଜନ୍ମ-ମୃତ୍ୟୁର ସୀମିତ ଆୟୁଷ୍କାଳ ଭିତରେ ସେ ବନ୍ଦୀ । ତେଣୁ ଜନ୍ମ କାଳରୁ ସେ ମୃତ୍ୟୁ ପଥର ଯାତ୍ରୀ । ତାର ପ୍ରତ୍ୟେକଟି ମୁହୂର୍ତ୍ତ ଜୀବନ ସହ ମୃତ୍ୟୁର ଲୁଚକାଳି ଖେଳ । ବୟସ ଗଡ଼ିଯିବା ମାତ୍ରେ ସେ ଚିନ୍ତା କରେ 'ଆଉ କେତେ କାଳ' ? ମୃତ୍ୟୁର ସେହି ହୃଦୟ କୋଳକୁ ଡେଇଁବା ପାଇଁ ? ସଜାଗ ହେବାର ଅଭ୍ୟାସରୁ ଏହି ଅଣାୟତ୍ତ ଇଚ୍ଛାର ଜନ୍ମ । ସୁତରାଂ, ଇହଲୌକିକରେ ପରକାଳର ଭାବନା ଦୁର୍ନିବାର । ଅନ୍ଧାର ଗହ୍ୱର ଅତଳ ବାହୁଟିଆ ପରି ମୃତ୍ୟୁ ମଣିଷକୁ ସବୁବେଳେ ଜଗି ରହିଛି । ତା'ଠାରୁ ବର୍ତ୍ତିବାର ସକଳ ଚେଷ୍ଟା ପରିଶେଷରେ ବ୍ୟର୍ଥତାରେ ପର୍ଯ୍ୟବସିତ ହୋଇଯାଉଛି । କବି ଶ୍ରୀ ଲେଙ୍କା ତେଣୁ କାଲ କାଲ ପାଇଁ ପ୍ରସ୍ତୁତ ମୃତ୍ୟୁର ଏଇ ସୁଡ଼ଙ୍ଗ ଭିତରେ ପଶିବାକୁ ବାଧ୍ୟ । ପ୍ରତିଟି ମୁହୂର୍ତ୍ତରେ ମୃତ୍ୟୁର ସାମ୍ଭାବ୍ୟ ଉପସ୍ଥିତି । ହାଇଡ଼ଗାର୍‌ଙ୍କ ଭାଷାରେ—"Man is always old enough to die." ସାର୍ତ୍ରେ, ଏକଥା ମାନିବାକୁ ପ୍ରସ୍ତୁତ ନୁହନ୍ତି । ତାଙ୍କ ମତରେ, ମୃତ୍ୟୁ ସମ୍ଭାବନା ହୋଇ ନ ପାରେ । କାରଣ ତାହା ସମ୍ଭାବନାରେ ଯବନିକା ଟାଣି ଦିଏ । ତେଣୁ ତାହାକୁ ପ୍ରତ୍ୟାଶା (Expect) ନ କରି ଅପେକ୍ଷା (wait) କରିବା

ଉଚତ । (୧) କମଳାକାନ୍ତଙ୍କ ମୃତ୍ୟୁର ଦର୍ଶନ ଠିକ୍ ସାର୍ତ୍ରେଙ୍କ ଭଳି । କିନ୍ତୁ ତାଙ୍କ ମୃତ୍ୟୁର ଭାବନା ଆସେ ବନ୍ଧନବୋଧ କାରଣରୁ । ଘୋର ନୈରାଶ୍ୟ, ବିଷାଦ, ଅମୂଳ ଅନ୍ତଃଶୂନ୍ୟତା, ବିଚ୍ଛିନ୍ନତା, ଆଧ୍ୟାତ୍ମିକ ନିଷ୍ଫଳତାରେ ଜର୍ଜରିତ ହେଉଥିବେଳେ ଏବଂ ଉତ୍ତରଣ ପ୍ରୟାସରେ ବିଫଳ ସମ୍ମୁଖୀନ ହେଉଥିବେଳେ ମୃତ୍ୟୁ ତାଙ୍କ ଆଡ଼କୁ ମାଡ଼ି ଆସେ କରାଳ ମୁଖ ବିସ୍ତାର କରି । ଜୀବନକୁ ଭଲ ପାଇବା ଭିତର ଦେଇ ତାଙ୍କର ଏ ଅନୁଭୂତିଟି ଆସେ । ତେଣୁ ତାଙ୍କ କାବ୍ୟଦର୍ଶନ ହେଉଛି ଆଗ ଜୀବନକୁ ଭଲ ପାଅ । ପରେ ତାର ଭିତର ରହସ୍ୟ ଖୋଜ । ଭଲ ଖୋଜୁ ଖୋଜୁ ଭେଳ ବାହାରିଲେ ଯନ୍ତ୍ରଣାର ଶ୍ଲଥ ବାହୁ ବନ୍ଧନ ଓ ସ୍ନେହର ରଜ୍ଜୁରୁ ଆପଣାକୁ ମୁକ୍ତ କରି ଅପେକ୍ଷା କରି ରହ । କାରଣ ମୃତ୍ୟୁଭଳି ନିରାପଦ ଆଶ୍ରୟ ଜଗତରେ ଦୁର୍ଲଭ । ହିଂସା ବୃତ୍ତିର ଫାଶରୁ ନିଜକୁ ଉନ୍ମୁକ୍ତ କରି ଜଗତକୁ ଭଲପାଇବାବେଳେ ଛିନ୍ନପକ୍ଷ ହୋଇ ଯଦି ଫେରି ଆସିବାକୁ ହୁଏ, ଥୋପା ଥୋପା ରକ୍ତରେ ଯଦି ପ୍ରାୟଶ୍ଚିତ କରିବାକୁ ହୁଏ, ତେବେ ଜୀବନରେ ରୂପାନ୍ତର କାମ୍ୟ ହୋଇ ଉଠେ । ପ୍ରେମ, ଶ୍ରଦ୍ଧା ଓ ଭଲ ପାଇବାର ଇଚ୍ଛା ସ୍ୱର୍ଗୀୟ ରୂଜ ନାରଟାର ହୋଇଯାଏ ।

"ସ୍ୱର୍ଗୀ ପଡ଼େ ବୃକ୍ଷ ଶାଖା, ଆକାଶ ଓ
ନିବୁଜ ଅରଣ୍ୟ, ଇତସ୍ତତଃ ଯୋଗସ୍ଥ ଫୁଲର
ଅଦୃଶ୍ୟ ସାମ୍ରାଜ୍ୟ । କନ୍ଦାକଟା
ଦୃଶ୍ୟ କେଉଁ ଗ୍ରାମ୍ୟ ଶବାଧାର
ପାଖେ ପାଖେ ଝଗଡ଼ ଓ ମଲ୍ଲୀର
ଆସର ! କନ୍ଦିବା କାହାକୁ ତେବେ ?
ଉଡ଼ନ୍ତ ପକ୍ଷୀକୁ ନା ତାର
ଛିନ୍ନ ଡେଣା, ଥୋପା ଥୋପା ରକ୍ତ
ପ୍ରାର୍ଥନାର ।"

( ରୂପାନ୍ତର- ଅନ୍ତତଃ ନିଷ୍ଟୁପ )

ଏଇ ରୂପାନ୍ତରିତ ଚେତନାରେ ସବାର ହେଉ ପରେ କବି ଖ୍ୟାପନ୍ତି, ରକ୍ତାକ୍ତ ମାନସିକତା ପାଇଁ କାହାକୁ ଦାୟୀ କରିବା କଷ୍ଟ; ବରଂ ସେହି ଘଟଣାଟା ବୁମେରାଂ ଭଳି କବିଙ୍କ ନିକଟକୁ ଫେରି ଆସେ । ହୁଏତ ବୁମେରାଂର ଏଇ ଫେରି ଆସିବା ଭିତରେ ଲୁଚି ରହିଥାଏ କବିଙ୍କର ଯନ୍ତ୍ରଣାକାତର ମନ । ମାତ୍ର ଧାହାରକୁ ଅନ୍ତଃପୁରର ଏସବୁ ସମ୍ବାଦ ସହଜରେ ଆସେ ନାହିଁ । ତେଣୁ ବାହ୍ୟତଃ

୧ । ମହାନ୍ତି, ଶରତକୁମାର—ଜାଁ ପଲ୍ ସାର୍ତ୍ରି, ୧୯୭୩, ପୃ. ୬୬ ।

ମୃତ୍ୟୁଟା ମନେ ହୁଏ ଜୀବନର ଶୂନ୍ୟସ୍ଥାନ ଭଳି । ନଚେତ୍ କବି କାହିଁ ପାଇଁ ନ ଥାନ୍ତେ—"ଜୀବନ ମାନେ ଗୋଟେ ଭୂଇଁ ଯେଉଁଠି/ ବଞ୍ଚିବା ଓ ମରିବା ଭିତରେ ବିଶେଷ କିଛି/ ତଫାତ୍ ନ ଥିବାବେଳେ ମଣିଷ ବେକୁବ୍ ଭଳି/ ଶ୍ୱାସ ପ୍ରଶ୍ୱାସରେ ଯୁଦ୍ଧ କରୁଥାଇ ।" (ତୁମେ ଯେଉଁମାନେ ଆମୃତ—ଗୀତ ଗା' ନା ରେ ପକ୍ଷୀ) । କବିଙ୍କର ଭାବନା ଏଠି ସ୍ଥିତିବାଦୀ । ମରିବାଟାକୁ ଯେତେବେଳେ ସେ ଏକ ରୂପାନ୍ତର ବୋଲି ଗ୍ରହଣ କରନ୍ତି, ସେତେବେଳେ ମୃତ୍ୟୁ ପ୍ରତି ଗୁରୁତ୍ୱ ଆପଣାଛାଏଁ କମିଯାଏ । ଜୀବନ ଓ ମୃତ୍ୟୁ ପ୍ରତି କବିଙ୍କର ଏହା ଏକ ସ୍ଥିତପ୍ରଜ୍ଞ ଦୃଷ୍ଟିଭଙ୍ଗୀ । ଜୀବନ ସହ ମୃତ୍ୟୁର ସୁନିଶ୍ଚିତ ବନ୍ଧନ ତାଙ୍କର ଏଇ ଆତ୍ମନିଷ୍ଠ କାବ୍ୟ ଚେତନାର ଉତ୍ସ । ମୃତ୍ୟୁ ଚେତନାକୁ ଏଇ ସ୍ତରରେ ରଖି ପାରିଲେ କବିଙ୍କ କାବ୍ୟଚେତନାର ଉତ୍ତରଣ ଆଁଣ ପାରି ଥାଆନ୍ତା, ମାତ୍ର ଏଇ ଆତ୍ମନିଷ୍ଠତା ମୃତ୍ୟୁର ଭସ୍ମାଭୂତରୂପ ପରିକଳ୍ପନାବେଳେ ପରିନଷ୍ଟ ହୋଇ ଯାଏ । ମଣିଷ ଉପରକୁ ଯେତେ ଆତ୍ମସ୍ଥ ଓ ନିର୍ବିକାର ହେବାକୁ ଚାହିଁଲେ ବି ମୃତ୍ୟୁର ଭୟ ପଦେ ପଦେ ତାକୁ ଜଗିଥାଏ ।

> "ଆମେ ସବୁ ଯିବା ଆସ ଦସ୍ତମାସ୍କ ଜୀବନ ଗଳାରେ
> ବଞ୍ଚିବାର ବ୍ଲେଡ୍ ଦାଢ଼ ଆଜି ପରଖିବା,
> ଆମେ ସବୁ କମିତ ବଞ୍ଚିବା ?"
>
> (ମରଣ ଜାତକ—ସ୍ୱୋତର ନାମ ରୁତ)

ମାତ୍ର 'ବଞ୍ଚିବାର ବ୍ଲେଡ୍ ଦାଢ଼' ପରଖ କରିବା ଭିତରେ ମୂହୂର୍ତ୍ତିକ ପାଇଁ ମୃତ୍ୟୁକୁ ବେଖାତିର କରି ବଞ୍ଚିବାର ଦୃଢ଼ତା ପ୍ରକାଶିତ ହେଲେ ମଧ୍ୟ ମନେହୁଏ ମୃତ୍ୟୁ ଯେପରି ଏଭଳି ମଣିଷର ପଶ୍ଚାତ୍ ଭାଗରେ ରହି ଯାଇଛି । ନିଜସ୍ୱ ସତ୍ତାକୁ ଜାହିର୍ କରି ରଖିବାର ଦୁର୍ଦ୍ଦମନୀୟ ପ୍ରବଣତାରୁ ମୃତ୍ୟୁର ଛାପୁଡ଼ିକୁ ଚାଙ୍କି ରଖିବାର ଏହା ଏକ ସହଜ, ପ୍ରସନ୍ନ ପ୍ରୟାସ । ଏଠି କବିଦୃଷ୍ଟିରେ ମୃତ୍ୟୁ ଆପାତତଃ ଅସ୍ୱୀକୃତ, କିନ୍ତୁ ସମ୍ଭାବନାହୀନ ନୁହେଁ । ହାଇଡ଼େଗାର୍‌ଙ୍କ ଦୃଷ୍ଟିଭଙ୍ଗୀର ପ୍ରତିଫଳନ ଏଠି କେତେକାଂଶରେ ଲକ୍ଷ୍ୟ କରି ହେବ । 'ନିତ୍ୟ ନୟମିତ'ର କବିତାରେ ଏଇ ଦୃଷ୍ଟିକୋଣ ବେଶ୍ ସ୍ପଷ୍ଟ ।

> "ଜୀବନଠାରୁ ମୃତ୍ୟୁ
> ଏତେ ନିକଟସ୍ଥ, ଆତ୍ମୀୟ ସୁହୃଦ
> ବୋଲି ଜାଣି ପାରେ ନା,
> ବୁଝି ପାରେନା ସାଧାରଣ ମଣିଷ ।"
>
> (ନିତ୍ୟ ନୟମିତ—୯୧)

ମୃତ୍ୟୁ ବ୍ୟର୍ଥତାର ନ୍ୟୂହଭିତରୁ ମଣିଷକୁ ମୁକ୍ତି ଦେଇଥାଏ । ସେଥିପାଇଁ ସେ ମଣିଷର ଆତ୍ମୀୟ ସୁହୃଦ । କିନ୍ତୁ ବ୍ୟର୍ଥତାକୁ ବାସ୍ତବତାର ଅନ୍ୟ ନାମ ବୋଲି କାବ୍ୟନାୟକ ଯେତେବେଳେ ଗ୍ରହଣ କରି ନ ଥାନ୍ତି, ସେତେବେଳେ ମୃତ୍ୟୁର ଏଇ ଅର୍ଥବୋଧ ବଦଳିଯାଏ । ମୃତ୍ୟୁଠାରୁ ଜୀବନ ହୋଇ ଉଠେ ମହାର୍ଘ୍ୟ । ତେଣୁ କବିଙ୍କର ମନୋବୃତ୍ତିକୁ ନେଇ ଚାଲେ ମୃତ୍ୟୁ ଓ ଜୀବନର ଛକାପଞ୍ଝା ଖେଳ । କେତେବେଳେ ମୃତ୍ୟୁ ତାଙ୍କ ଜୀବନର ସବୁ ଅର୍ଥ ନେଇଯାଏ ତ କେତେବେଳେ ଜୀବନକୁ ଅର୍ଥପ୍ରଦ କରିଦିଏ । ଅନୁଭୂତିର ବିଭିନ୍ନତାରେ କବିଙ୍କର ମୃତ୍ୟୁ ଚେତନା ତାର ସଜ୍ଞା ନିର୍ଦ୍ଧାରଣ କରୁଥାଏ ।

କମଳାକାନ୍ତଙ୍କ କାବ୍ୟପୁରୁଷ ବାର୍ଦ୍ଧକ୍ୟର ନିକଟବର୍ତ୍ତୀ । ଅନୁଭୂତି ବି ଜରାଗ୍ରସ୍ତ । "ମୋ ରକ୍ତ ହେଲଣି ବୁଢ଼ା । ସ୍ୱପ୍ନ ମୋର ବୁଢ଼ୀ ହୋଇଛି ।" (୨) କବି ଏଭଳି ବୃଦ୍ଧଙ୍କ ଶରୀରରେ କାୟା ପ୍ରବେଶ କରି ଦେଖିଛନ୍ତି ଜୀବନର ଧୂ ଧୂ ମରୁଭୂମି, କାରୁଣ୍ୟର ଆର୍ତ୍ତନାଦ । ଅତୀତ ଯୌବନର ଉଚ୍ଛ୍ୱାସ ନାହିଁ କି ପ୍ରେମରେ ନାହିଁ ତାରୁଣ୍ୟ । କେବଳ ମୃତ ପ୍ରେମର ଭଗ୍ନସ୍ତୂପ ଉପରେ ବସି ଅତୀତର ସ୍ମୃତି-ଚାରଣ ଭିନ୍ନ ଅନ୍ୟ ଉପାୟ କାବ୍ୟନାୟକର ନାହିଁ । ସମୃଦ୍ଧିଶୀଳ ଜୀବନର ମୋହ ଛିନ୍ନ ହୋଇଗଲା ପରେ ପ୍ରେମିକାର ଶେତାମୁହଁ କେବଳ ମୃତ୍ୟୁର ବିଭୀଷିକାମୟୀ ରୂପ ଦେଖାଇବାରେ ବ୍ୟସ୍ତ । ପ୍ରେମିକାର ସମତଳ ଗ୍ରୀବାର ଅଗଣାରେ କେବଳ କୋହ ଓ ଲୁହର ଢେଉକୁ କାବ୍ୟନାୟକ ସ୍ୱାଗତ ଜଣାଉଛି । ବାର୍ଦ୍ଧକ୍ୟର ଆଗମନରେ ପ୍ରେମିକର ମଧ୍ୟ ମୃତ୍ୟୁ ଘଟିଛି । କାବ୍ୟନାୟକ ତେଣୁ ବେଦନା ଜର୍ଜରିତ କଣ୍ଠରେ କହୁଛି—"ହେ ମୋର ରକ୍ତର ଶବ ! ହେ ମୋର ରକ୍ତର ସ୍ମୃତି ! /ଆହେ ମୋର ଝାପସା ମଣିଷ !" ଅତୀତର ସ୍ମୃତି ସ୍ମୃତି ବସ୍ତୁତାକୁ ଫିଙ୍ଗି ଦେଇ ନିଃସ୍ୱ ହେବାର ଯନ୍ତ୍ରଣାରେ ଅତିଷ୍ଠ କାବ୍ୟନାୟକ ପାଇଁ ସାନ୍ତ୍ୱନାର ରାସ୍ତା ଭୁଲ । ପ୍ରେମ ମୃତ୍ୟୁକୁ ଅସ୍ୱୀକାର କରିବା କଥା । କିନ୍ତୁ ପ୍ରେମ ଯେଉଁଠି ଉନ୍ମାଦନାହୀନ ସେଠାକୁ ମୃତ୍ୟୁ ତ ଆପଣାଛାଏଁ ଚାଲି ଆସେ । ଏପରିକି ପ୍ରେମରେ ଦୀର୍ଘଦିନର ବ୍ୟବଧାନ କାବ୍ୟନାୟକ ପକ୍ଷେ ସ୍ପୃହଣୀୟ ନୁହେଁ । ବ୍ୟବଧାନଟା ମୃତ୍ୟୁ ସହ ସମାନ । ଆଜୀବନ-କାରାଦଣ୍ଡର ନିଃସଙ୍ଗତା ଭିତରେ ଜୀବନ କଟାଇବାକୁ ପ୍ରସ୍ତୁତ ହୋଇଥିବା ମଣିଷ ହଠାତ୍ ମୁକ୍ତି ପାଇଗଲେ ଯେପରି ଆନନ୍ଦରେ ଉଲ୍ଲସିତ ହୋଇ ଉଠେ, ସେହିପରି ଦୀର୍ଘଦିନର ବ୍ୟବଧାନ ପରେ ପୁନର୍ମିଳନର କୌଣସି ସମ୍ଭାବନା ନ ଥିଲାବେଳେ କେଉଁ ଏକ ରେସ୍ତୋରାଁରେ ପ୍ରେମିକାସହ ଅଚାନକ ସାକ୍ଷାତ ହୋଇଗଲେ କାବ୍ୟନାୟକ ପୁନର୍ଜନ୍ମର ଆନନ୍ଦ ଅନୁଭବ କରେ । (୩) ପ୍ରେମ ଯେ

---

୨ । 'ଛବି : ଶିମୁଳି ଓ ପଳାଶ ଫୁଲକୁ'—'ସ୍ମରଣ ବିସ୍ମରଣ' ।

୩ । 'ପ୍ରେମିକାକୁ'—'ସ୍ମରଣ ବିସ୍ମରଣ' ।

ମୃତ୍ୟୁକୁ ଅସ୍ୱୀକାର କରେ ଏହା ତାହାର ଜ୍ୱଳନ୍ତ ପ୍ରମାଣ । କିନ୍ତୁ ହୃଦସ୍ପାବେଗ ବନ୍ଦୀଭୂତ ହୋଇଗଲେ ଅମୃତର ପ୍ରତ୍ୟାଶା ଅପେକ୍ଷା ମୃତ୍ୟୁର ପଦଧ୍ୱନି ସୁସ୍ପଷ୍ଟ ହୋଇ ଉଠେ । 'ଶଠି : ଶିମୁଳି ଓ ପଳାଶ ଫୁଲକୁ' କବିତାରେ ମୃତ୍ୟୁର ଏଇ ଗଭୀର ଅନୁଭବ ପ୍ରକଟିତ । ରୂପବତୀ ନାରୀର କଙ୍କାଳ ପ୍ରତି ପୁରୁଷର ଦୁର୍ବଳତା ଯୁଗ ଯୁଗର । ଚିରକାଳ ଆଲିଙ୍ଗନ ଓ ସଦେ ମଧୁର କଥା ଶୁଣିବା ପାଇଁ ପୁରୁଷକୁ କେତେ ଯତ୍ନ କରିବାକୁ ନ ପଡ଼େ ! ଅଥଚ ମଣିଷର ଏଇ ସବୁ ପ୍ରେମ ପଶ୍ଚାତରେ ରହିଥାଏ ମୃତ୍ୟୁ ଚେତନା । ମୃତ୍ୟୁରେ ସୃଷ୍ଟି ହୁଏ ଏ ସବୁ କ୍ଷଣିକ, ସ୍ନେହ ସୌହାର୍ଦ୍ଦ ମିଥ୍ୟା । (୪)

ତଥାପି ଜୀବନ ଓ ମୃତ୍ୟୁର ଦ୍ୱନ୍ଦ୍ୱାତ୍ମକ ଅବସ୍ଥାରେ କାବ୍ୟନାୟକ ସବୁବେଳେ ଛଟପଟ । ଜୀବନର ଦାମ୍ଭିକତାମୁଖୀ ଦୃଢ଼ତା ଭିତରେ ଭୟାବହ ମୃତ୍ୟୁଚିନ୍ତା କାବ୍ୟନାୟକକୁ ଜୀବନ୍ତ ମରଣ ତୁଲ୍ୟ ଯନ୍ତ୍ରଣାରେ ନିକ୍ଷେପ କଲାବେଳେ ସେ ଜୀବନର ବିଚିତ୍ର ମାନଚିତ୍ର ସମ୍ପର୍କରେ ସଚେତନ ହୋଇଯାଏ । ପ୍ରେମ, ସୌନ୍ଦର୍ଯ୍ୟର ଅପରୂପ ବିଭୂତିକୁ ଗ୍ରାସ କରିଦେବାପାଇଁ ମୃତ୍ୟୁକୁ ମୁହୂର୍ତ୍ତେ ବି ଲାଗେ ନାହିଁ । କବିଙ୍କ ମନରେ ତେଣୁ ପ୍ରଶ୍ନବାଚୀ—ଜୀବନ ନା ମୃତ୍ୟୁ କେଉଁଟା ମଣିଷର ଶ୍ରେୟ ?

"ଜୀଇବାଠାରୁ ମରଣ ଭଲ
ମରଣଠାରୁ ଜୀଇବା ଭଲ
ଭଲ ବା ଭେଲ
କହିବ କିଏ ?"

(ଭିନ୍ନ ସ୍ୱାଦର କବିତା—ସ୍ୱୋତର ନାମ ରୂତ)

ମଣିଷ ପକ୍ଷରେ ଏହାର ଉତ୍ତର ଦେବା ବଡ଼ କଷ୍ଟସାଧ୍ୟ । କବି ମଧ୍ୟ ନିଜର ଅସାମର୍ଥ୍ୟ ଜଣାଇଛନ୍ତି । ଯୁଗ ଯୁଗ ଧରି ଏହା ଏକ ଅନୁତ୍ତରିତ ପ୍ରଶ୍ନ । ମଣିଷ ଭିତରେ ଥିବା ଚୈତନ୍ୟହିଁ କେବଳ ଏ ପ୍ରଶ୍ନର ଉତ୍ତର ଦେଇ ପାରେ । ପୁଣି ଏ ଉତ୍ତର ବ୍ୟକ୍ତି ଭେଦରେ କେବେ ସମାନ ହୋଇ ପାରିବ ନାହିଁ । ମଣିଷର ଜୀବନ ବଡ଼ ଅଦ୍ଭୁତ । ତେଣୁ ତାର ଗତି ପରିଣତି ସମ୍ପର୍କରେ କୌଣସି ବିଧିବଦ୍ଧ ଧାରଣା ପୋଷଣ କରିବା ମଧ୍ୟ ମାରାତ୍ମକ । କାହାକୁ ଯଦି କଅଁଳ-ଖରା, ନେଳୀ ଆକାଶ, ନରମ ଘାସ, ଉଚ୍ଚ ଉଚ୍ଚକା ପାହାଡ଼, ଚଢ଼େଇର କିଚିରି ମିଚିରି ଗୀତ, କଳା ଯୁବତୀର ଛଳ ଛଳ ଆଖି ଭଲ ଲାଗିଲାଣି ତ କିଏ ଏସବୁକୁ ଅଳୀକ ଅର୍ଥହୀନ କହି ନିଜ ଜୀବନର ପରିଧିକୁ ଭିନ୍ନ ଭାବେ ଗଢ଼ିବାକୁ ଇଚ୍ଛା ପ୍ରକାଶ କଲାଣି । ପ୍ରତିଟି

୪ । 'ଗୋଲକ ଧନ୍ଦା'—'ସ୍ୱୋତର ନାମ ରୂତ' ।

ମଣିଷ ତେଣୁ ନିଜ ଦୃଷ୍ଟିଦର୍ଶନରେ ଆପଣାର ପରିବେଶ ଗଢ଼ିବାରେ ଆଗ୍ରହୀ । ଏପରି ଆଗ୍ରହ ଆସେ ମଣିଷର ଅପୂର୍ଣ୍ଣତା ହେତୁ । ମାତ୍ର ସୀମିତ ସମସ୍ତ ସୀମା ଭିତରେ ମଣିଷର ଏଇ ବିପ୍ଳବ ଇଚ୍ଛା କାର୍ଯ୍ୟକାରୀ ହୋଇ ପାରେ ନାହିଁ । ନିଜର ଅବଦମିତ ଅନେକ କାମନାକୁ ଚରିତାର୍ଥ କରିବା ପାଇଁ ସେ ସିସିଫସ୍ ଭଳି ମୃତ୍ୟୁଞ୍ଜୟ ହେବାର ଅସମ୍ଭବ ଆଶା ପୋଷଣ କରେ । ଗ୍ରୀକ୍ ଶବ୍ଦ ଏଇ 'ସିସିଫସ୍'ର ଅର୍ଥ 'ଅତି ବୁଦ୍ଧିମାନ' । ସିସିଫସ୍ ନିଜର ସମସ୍ତ ବୁଦ୍ଧି ଖଟାଇ ମଣିଷର ଅନିବାର୍ଯ୍ୟ ପରିଣତି ମୃତ୍ୟୁ ବିରୁଦ୍ଧରେ ଲଢ଼ିବାର ଯେଉଁ ପ୍ରତିଜ୍ଞା କରିଥିଲା, ତାହା ଦେବ ଶାପ ଯୋଗୁଁ । ଦେବ ଅଭିଶାପ ହେତୁ ସିସିଫସ୍ ଗୋଟାଏ ଗୀଖ ଭଳି ପାହାଡ଼ର ଅଗ୍ରଭାଗକୁ ବିରାଟ ପଥର ଖଣ୍ଡେ ଉଠାଏ । କିନ୍ତୁ ପାହାଡ଼ର ଅଗ୍ର-ଭାଗରେ ପଥରଟି କେତେବେଳେ ରହିପାରେ ନାହିଁ । ସିସିଫସ୍ ତଳେ ପହଁଞ୍ଚିବା ବେଳକୁ ପଥର ମାଟିକୁ ଛୁଇଁ ସାରିଥାଏ । ଗ୍ରୀକ୍ ପୁରାଣର ଏଇ ଘଟଣାଟିକୁ ନେଇ ଆଲବର୍ଟ କାମ୍ୟୁ ବିଖ୍ୟାତ ଦାର୍ଶନିକ ଗ୍ରନ୍ଥ "The Myth of Sisyphus" ରଚନା କରିଛନ୍ତି—ଯେଉଁଥିରେ ମଣିଷ ଜୀବନର ସୀମାବଦ୍ଧତା ବିଭିନ୍ନ ଦୃଷ୍ଟି-କୋଣରୁ ଆଲୋଚିତ । ମଣିଷ ନିଜ ଜୀବନ ପ୍ରତି ଦୁର୍ବାର ମମତା ନେଇ ମୃତ୍ୟୁକୁ ଘୃଣା କରେ । କିନ୍ତୁ ଶେଷରେ ସେହି ମୃତ୍ୟୁହିଁ ତାର ଶିରୋଧାର୍ଯ୍ୟ ହୁଏ । ଏଇ ମୃତ୍ୟୁକୁ ସ୍ୱୀକାର କରି ନେବା ଭିତରେ ଥାଏ ସିସିଫସୀୟ ଉଦ୍ୟମ । ମାତ୍ର ସେ ଉଦ୍ୟମ ନୈରାଶ୍ୟ ଜର୍ଜରିତ ହେଲେ ବି ଆଶାଶୂନ୍ୟ ନୁହେଁ । କେହି କେହି ସିସିଫସ୍‌ର ଅବିରତ ପଥର ଟେକିବା କାର୍ଯ୍ୟକୁ ଆଶାଶୂନ୍ୟ କାର୍ଯ୍ୟ ବୋଲି କହନ୍ତି । (*) କିନ୍ତୁ ଆଶା ନ ଥିଲେ ସିସିଫସ୍ ସେଇ କଠୋର କାର୍ଯ୍ୟକୁ ଏତେ ନିଷ୍ଠାପର ଭାବେ କରିପାରି ନ ଥାନ୍ତା ।

ମଣିଷ ତାର ଜୀବନକୁ ବିଭିନ୍ନ ଦିଗରୁ ଦେଖି ସାରିଲା ପରେ ବି ଗଳଦ୍‌ଘର୍ମ ହୋଇ ସେଇ ଜୀବନର ଜୟଗାନ କରେ । ତଥାପି ମୃତ୍ୟୁ 'କାଳୀ ବିଲେଇ' ଭଳି ପଲ ପଲ ମୂଷା ପରି ମଣିଷଙ୍କର ସୁଖ ସ୍ୱପ୍ନକୁ ଲୁଟି ନେଇଯାଏ । ତାର ନଖ ଖୁବ୍ ମୁନିଆ । ସେଥିରେ ସେ ବିଦୀର୍ଣ୍ଣ ହୁଏ ମଣିଷର 'କୃଷ୍ଣଚୂଡ଼ାର ଓଠ ।' କବି ଶ୍ରୀ ଲେଙ୍କାଙ୍କ ଭାଷାରେ—"ଗୋଟାଏ କାଳୀ ବିଲେଇର /ଆଖି, ନିବୁଜ ଅନ୍ଧାରର /ଉକାଳ କୋଠରୀରେ/ ପିଇ ଯାଉଛି ଖେଦର କ୍ଷୀର, /ପିଇ ଯାଉଛି ସବୁ/ ଦୀର୍ଘଶ୍ୱାସ ଗ୍ଳେଟ ଗ୍ଳେଟ /ଚୈକୁର ବାସ୍ନାର ଢକ୍ତେଢୋଳ ।" ( ଦୁଇଟି କବିତା : ମୃତ୍ୟୁ—ସ୍ରୋତର ନାମ ରକ୍ତ ) । କାଳୀ ବିଲେଇ ମୃତ୍ୟୁର ବିସ୍ମରଣଶୀଳତାର ଅଭାବକୁ ସୂଚେଇ ଦିଏ । ଜିଦ୍‌ଖୋର୍ ମୃତ୍ୟୁ କାହାର୍ କି ଅତଥ୍ୟା

---

* । ମହାନ୍ତି, ଶରତ କୁମାର—ଅସ୍ତିତ୍ୱବାଦର ମର୍ମକଥା—ପୃ. ୩୧୧ ।

ବିଶ୍ୱର କରିବାକୁ ଉଚିତ ମଣେ ନାହିଁ । ଜୀବନ ଗୋଟାଏ ଅଭ୍ୟାସ, ଗୋଟାଏ ଗତାନୁଗତିକତାର ସୃଷ୍ଟି ହୋଇ ସାର୍ଥକତାର ଅନ୍ୱେଷଣରେ ପ୍ରମତ୍ତ ଥିବାବେଳେ ମୃତ୍ୟୁଲୋକରୁ ଆସେ ଅକସ୍ମାତ୍ ଆମନ୍ତ୍ରଣ । ଜୀବନକୁ ଜାଣିବା ପାଇଁ ବ୍ୟାକୁଳ ମଣିଷ ଜଗତକୁ ସଠିକ ଭାବେ ଚିହ୍ନି ପାରେ ନା । ମୃତ୍ୟୁର ଅନୁପ୍ରବେଶ ତାକୁ ଭଳୁଆ କରିଦିଏ । ପ୍ରକୃତ ଜ୍ଞାନର ସ୍ୱରୂପ-ଅବବୋଧ ତା' ପକ୍ଷରେ ସମ୍ଭବ ହୋଇ ପାରେ ନା । କାମୁଂଙ୍କ ଭାଷାରେ "ଯଦି ମାନବ ଚିନ୍ତାର ଏକମାତ୍ର ତାତ୍ପର୍ଯ୍ୟପୂର୍ଣ୍ଣ ଇତିହାସ ଲେଖାଯାଏ, ତେବେ ତାହା ନିମାନ୍ତ୍ୱୟରେ ମଣିଷର ପଶ୍ଚାତାପ ଓ କ୍ଳୀବତ୍ୱର ବିବରଣୀ ହେବ ।" (୭) ତଥାପି ଆପଣାର ସ୍ୱାତନ୍ତ୍ର୍ୟ, ବିଶ୍ୱରବୁଦ୍ଧି, ଚିନ୍ତା ଚେତନାକୁ ମଣିଷ ମାରିଦେବାକୁ ଚାହେଁ ନାହିଁ । ତାର ସୀମିତ ବିଶ୍ୱରବୁଦ୍ଧି ବଳରେ ସେ ଜଗତର ସବୁ ସମସ୍ୟା ସମାଧାନର ଉଦ୍ଭଟ ଆଶା ପୋଷଣ କରିଥାଏ । ସ୍ତ୍ରୀ, ଜୁଆ, କ୍ଷୀର, ପରିଜନ କାବ୍ୟନାୟକର ଅସ୍ମିତା ଦାବୀ କରି ପାରନ୍ତି ନାହିଁ । ମୂଢ଼ ସମାଜ ବକଟେ କାଳିଆ ମେଘ ପରି ତାର ବିଶ୍ୱର ବିଭ୍ରାନ୍ତି ପାଇଁ ଯଡ଼ଯନ୍ତ୍ରୋନ୍ମୁଖ ଉଦ୍ୟମ କଲେ ବି ବିଦ୍ରୋହୀ କବି ଧାରଣାରେ ଅଟଳ । ତା' ବୋଲି ଉଦ୍ଭଟତା ନାଁରେ ଜୀବନର ଶେଷ ସୀମାରେଖା ଟାଣି ଦେବା କଦାପି ବାଞ୍ଛନୀୟ ନୁହେଁ । ସ୍ଥିତିବାଦୀ କବି ସଂଗ୍ରାମଶୀଳ ଭୂମିକାରେ ଅବତୀର୍ଣ୍ଣ ହୋଇ କହନ୍ତି—"କେ କାହାର ? କେହି ନୁହେଁ/ ଏକାନ୍ତ ନିଜର/ ନିଜର ବଞ୍ଚିବା ଲୋଭ /ଦୟନୀୟ, କରୁଣ ଓ ନିର୍ଯ୍ୟାତିତ/ ନୁହେଁ ବୋଲି ମୁଁ ସମ୍ପର୍କ-ହୀନ !" ( ନିଜ ସପକ୍ଷରେ—ସ୍ରୋତର ନାମ ରକ୍ତ ) । ଛଳନାର ଘୂର୍ଣ୍ଣାବର୍ତ୍ତ ଭିତରେ ଆପଣାର ସ୍ୱାଧୀନତା ରକ୍ଷା କରିବାକୁ କାବ୍ୟନାୟକ ସବୁବେଳେ ସଚେଷ୍ଟ । ହେଉ ପଛେ ତାହା ମମତାବିହୀନ ନିର୍ମମ ନିଷ୍ଠୁରତା । ନିଜ ଭାଗ୍ୟର ନିୟନ୍ତା ସେ ନିଜେ । ସମସ୍ତ ସଙ୍କଟରେ ପରାଜିତ ସୈନିକ ଭଳି ଗୋଡ଼ ଭାଙ୍ଗି ଠିଆ ହେବାକୁ ସେ ପସନ୍ଦ କରିବ କାହିଁକି ? କବିଙ୍କର ପ୍ରତ୍ୟୟଶୀଳ ମନ ସ୍ୱୀକାର କରିବାକୁ ପ୍ରସ୍ତୁତ ନୁହେଁ ଯେ ମୃତ୍ୟୁ ଭିତରେ ନିହିତ ସତ୍ୟର ଗୁପ୍ତରଣ । ଯେବେ ଜୀବନ କାଳରେ ସତ୍ୟର ସାମସଙ୍ଗୀତ ଶୁଣି ନ ହେଲା, ତେବେ ମୃତ୍ୟୁ ପରେ ଯେ ତାର ସୌରଭ ବିଚ୍ଛୁରିତ ହେବ, ଏପରି ଅନୁମାନର କୌଣସି ସାରବତ୍ତା ନାହିଁ । କବିଙ୍କ ଭାଷାରେ—"ଘୁମନ୍ତ ଚିନ୍ତାମାନଙ୍କ ପଞ୍ଜୁରି/ ସତ୍ୟ କ'ଣ ନିଆଁ ଝୁଲ ମୃତ୍ୟୁର/ ସ୍ତବ୍ଧ ଉଚ୍ଚାରଣ ବା ଯାବତୀୟ/ ଦୁଃଖଙ୍କର ସ୍ଥିର ବନ୍ଦୀ ଜୀଇବାର/ ଲୋଭ କ୍ଷତ ମିଶିଣ ଫେଡ଼ାଣ ।" (କୁହୁଡ଼ି—ସ୍ରୋତର ନାମ ରକ୍ତ) । ପର-ମୁହୂର୍ତ୍ତରେ କବି ଦୃଷ୍ଟିରେ ସତ୍ୟହିଁ ଶବ ରୂପରେ ଆବିର୍ଭୂତ ହୁଏ ।—"ସତ୍ୟ

---

୭ । ମହାନ୍ତି, ଶରତ କୁମାର—ଅସ୍ତିତ୍ୱବାଦର ମର୍ମକଥା— ପୃ. ୧୦୨ ।

ଏକ ବାସି ମଲ୍ଲି ବାସି ଫୁଲେ /ପୋଢ ହଅ ତା' ଶେତା ମୁହଁକୁ ।'' ମୃତ୍ୟୁର କାରୁଣ୍ୟ ରୂପ କବି ଦୃଷ୍ଟିରେ ବେଶ୍ ସତେଜ ।

ମରଣକୁ 'ଶ୍ୟାମ' ବୋଲି ଭାବିବାର ଗ୍ରହଣ ବା ବୈଷ୍ଣବୀୟ ମୋହ କମଳାକାନ୍ତଙ୍କର ନାହିଁ । ମୃତ୍ୟୁକୁ ଯେତେ ଆବେଗର ଉଷ୍ଣତା ଦେଇ ଅସ୍ୱୀକାର କଲେବି, ମୃତ୍ୟୁଲୋକର କାଲନାଗ ଜୀବନକୁ ପଣ୍ଡୁହାସରେ ଉଡ଼ାଇ ଦେଲେ ବି ମଣିଷ ମୃତ୍ୟୁ ଆଡ଼କୁ କ୍ରମଶଃ ଆକର୍ଷିତ ହୋଇ ଚାଲିଥାଏ । କାମ୍ୟୁଙ୍କ ଭାଷାରେ— ''ଆମେ ସବୁ ଫାଶି ଆସାମୀ'' ( ଦ ମିଥ୍ ଅଫ୍ ସିସିଫସ୍ ) ଅକାରଣରେ ହେଉ ବା ଅନ୍ୟାୟରେ ହେଉ ମଣିଷକୁ ଫାଶିଖୁଣ୍ଟର କଳା ପରଦା ଭିତରେ ଲୁଚାଇ ଦେବା ଭାଗ୍ୟର ବିଡ଼ମ୍ବନା । କେବଳ କଳା ପରଦା ଭିତରେ ଲୁଚିଯିବାର ଘଟଣାଟି ଆମର ଅଜ୍ଞାତ ଥିବାରୁ ମୃତ୍ୟୁ ସମ୍ପର୍କରେ ଏତେ ଯୁକ୍ତିତର୍କ, ଏତେ ପ୍ରକଳ୍ପ (Hypothesis)ର ଭାବନା ଭିତରେ ବୁଡ଼ିଯିବାର ସୁଯୋଗ ମିଳେ । ଏଇଥିପାଇଁ ହୁଏତ କମଳାକାନ୍ତଙ୍କ ମୃତ୍ୟୁଚେତନାର ଗୋଟାଏ ସ୍ଥିର ଧାରଣା ନାହିଁ । ମୃତ୍ୟୁ ତାଙ୍କ ଦୃଷ୍ଟିରେ କେତେବେଳେ ମୁଗ୍ଧ ତ କେତେବେଳେ କ୍ଷୁବ୍ଧ । କେତେବେଳେ ଅସ୍ଥିର ତ କେତେବେଳେ ସ୍ଥିରତାର ଏକକ ବିନ୍ଦୁରେ ଉଭା । ମୃତ୍ୟୁରୂପୀ ମହାରାଜାଙ୍କ ଅଚିହ୍ନା ରାଜବାଟୀ ଦେଖିଲାବେଳେ ଆନନ୍ଦରେ କାବ୍ୟନାୟକର ଛାତି ଉଲୁସି ଉଠେ । ମୃତ୍ୟୁକୁ ଏକ ନିର୍ଭର ବସନ୍ତର ସୌଭାଗ୍ୟ ଦେବାକୁ ସେ ତତ୍ପରତା ପ୍ରକାଶ କରେ ।

> ''ରେ ମହାରାଜା, ତୋର ଆଖି ବନ୍ଦ କର ଏବଂ ତୋର
> ବଳଟେ ଛାଇର କବାଟରେ
> ମୋତେ ବନ୍ଦୀ କରି ଦେ, ଜଡ଼ା କରି ଦେ,
> ଧ୍ୱଂସ କରିଦେ, କାଳି କରି ଦେ ।
> ଆଉ ଅଧିକ କ'ଣ ବା ।।''
>
> ( ମହାରାଜାଙ୍କୁ ଗୋଟିଏ ପ୍ରାର୍ଥନା—''ଅନ୍ତତଃ ନିଃଶ୍ବୁପ'' )

ନିଃସ୍ୱତା, ନିଷ୍ଫଳତା, ଅଚରିତାର୍ଥତାମୁକ୍ତି ଜୀବନ ମୃତ୍ୟୁ ପର୍ଯ୍ୟାୟବାଚୀ । ସେଠି ମୃତ୍ୟୁଂକୁ ସ୍ୱାଗତ କରିବାରେ କୌଣସି ଅସଙ୍ଗତି ରହିଛି ବୋଲି କହି ହେବ ନାହିଁ । ମାଛ ବିନା ନଦୀ ଏବଂ ନଦୀ ବିନା ମାଛ ଯେପରି ଅକଳ୍ପନୀୟ ସେହିପରି ମଣିଷ ବିନା ଜୀବନ ଏବଂ ଜୀବନ ବିନା ମଣିଷର ସ୍ଥିତି ଅଚିନ୍ତନୀୟ । ସେଥିପାଇଁ କବି ହୁଏତ କହିଛନ୍ତି—''ମୃତ୍ୟୁରେ ସମସ୍ତ ହଜେ । /ସମସ୍ତରେ ମୃତ୍ୟୁ ହୁଏ ଲୀନ !'' (ଗାର୍ହସ୍ଥ୍ୟ— କବିତାର ମୁହଁ ) । ସୁଙ୍କ୍ ଦୁଃଖର ଲୋଟଣି ପାରି ପରି

ଜନ୍ମ ଓ ମୃତ୍ୟୁର ଖେଳ କବି ମନରେ କେଉଁ କୌଣସି ନିର୍ଦ୍ଦିଷ୍ଟ ଭାବୋଦ୍ରେକ କରାଏ ନାହିଁ । ଏହା ଏକ ପ୍ରକାର ଉଦ୍ଭଟତା । କାରଣ ଉଦ୍ଭଟ ମଣିଷ ମୃତ୍ୟୁ ସଚେତନ, ପୁଣି ମୃତ୍ୟୁକୁ ମଧ୍ୟ ଅସ୍ୱୀକାର କରେ । (୭) ଭବିଷ୍ୟତର ଆଧ୍ୟାତ୍ମିକ ଜୀବନ ପ୍ରତି ଲୋଭ ରଖି ବର୍ତ୍ତମାନର ସର୍ବନାଶ କରିବାକୁ କମଳାକାନ୍ତ ହାତ ଟେକି ଦେଇ ପାରିବେ ନାହିଁ ।

"ମୋର କୌଣସି ନିର୍ଦ୍ଦିଷ୍ଟ ଅଭିଯୋଗ
ଅଛି ଯେ : ତୁମକୁ ନେତୃତ୍ୱ ହୋଇ
ପଦ୍ଧତିଏ ଉଚ୍ଚାରିବି : ହେ ପ୍ରଭୁ,
ଝିଙ୍କଚମଟର ଭଉଁରୀରୁ ବା
ଆଇଁଷିଆ ମାଟିର ହୃଦରୁ
ନେଇ ଯାଅ ଶୂନ୍ୟ ଗୋଲକକୁ ;
ବା କେଉଁ ଶ୍ଳୋକ ଶୋଷ ସ୍ୱନ
ଚେତନାର ଶେଷ ଦିନ, ଶେଷ ଦଣ୍ଡ, ଶେଷ ଲଗ୍ନ
ବନିତାର ପ୍ରାର୍ଥିତ କୋଳକୁ ॥"

( ଜଣାଣ—ଅନ୍ତତଃ ନିଷ୍କୁପ )

ଏ କବିତା ସହ 'ଗୀତ ଗା' ନାରେ ପକ୍ଷୀ'ର 'କି ଯାଏ ବଞ୍ଚେ ଅବା ମରେ କବିତାଟିକୁ ମିଳାଇ ପଢ଼ା ଯାଇପାରେ । "ମୋ ପୁଣ୍ୟର ତୁମେ ଅଂଶୀଦାର ।/ମୋ ପାପର ମୁଁ ଅଧିକାରୀ ।/ମୁଁ ବଞ୍ଚେ ଅବା ମରେ, ମରେ ଅବା ବଞ୍ଚେ/ କି ଯାଏ ତୁମର, ହେ ନବୀନ ସୁନ୍ଦର ଶ୍ୟାମ, /ବଂଶୀଧାରୀ ।" ନିଜର ପାପ ପାଇଁ ମଣିଷ ଯେତିକି ଶାସ୍ତି ପାଏ, ପୁଣ୍ୟ ପାଇଁ ସେପରି ଦାବୀ ସି ଯାଏନା । ସୁତରାଂ ଜୀବନକୁ ମୋହମୁକ୍ତ ଭାବେ ଈଶ୍ୱରଙ୍କ ବିରୁଦ୍ଧରେ ପରିଚାଳିତ କରିବାହିଁ କମଳାକାନ୍ତଙ୍କ କବିତାର ଉଦ୍ଦେଶ୍ୟ । ତାଙ୍କ ଦୃଷ୍ଟିରେ ଈଶ୍ୱର କେବଳ 'ଖାନ୍‌ଜରର ଜଗୁଆଳି,' ପାପ ଓ ମୃତ୍ୟୁର ଫେରାରୀ ସର୍ବସ୍ୱକାର । ଯେଉଁଦିନ ମୃତ୍ୟୁକୁ ଦାସାନୁଦାସ ରୂପେ ବେଠି ଖଟାଇବାର ଔଦ୍ଧତ୍ୟ କାହାରିକାରି ହେବ, ସେଦିନ ହୁଏତ ମଣିଷର ମୃତ୍ୟୁଯାତନାରେ ପୂର୍ଣ୍ଣଚ୍ଛେଦ ପଡ଼ିବ । ମାତ୍ର ସାଧାରଣ ମଣିଷ ପକ୍ଷରେ ଏହା ସମ୍ଭବ କି ? ହୁଏତ ନିର୍ଦ୍ଦିଷ୍ଟ ଧର୍ମବିଶ୍ୱାସ, ସାଧନା ବଳରେ ଏପରି ମୃତ୍ୟୁ ବିଜୟୀ ହେବାର ସୌଭାଗ୍ୟ ମିଳିପାରେ; କିନ୍ତୁ ଆଧିବିଦ୍ୟକ (Metaphysical) ଆସ୍ଥା ବିହୀନ ମଣିଷ ପକ୍ଷରେ ଏହା ଏକ କଳ୍ପିତ ଆଟୋପ ବା ସ୍ତମ୍ଭିତ ଆବେଗର କାମୁ ତକମାକାର ରୂପ ନୁହେଁ କି ?

୭ । ଉନ୍ମେଷ—ପୃ. ୩୮ ।

ଅନ୍ୟ ପକ୍ଷରେ, ବଞ୍ଚିବାର ଆଗ୍ରହକୁ ସର୍ବୋଚ୍ଚ ସମ୍ମାନ ନ ଦେଇ ସନାତନ ସତ୍ୟର ଧାରଣା ଭିତରେ ବୁଡ଼ିଯିବା ଏକାନ୍ତଭାବେ ଅର୍ଥହୀନ । ବଞ୍ଚିବାର ପ୍ରତିଟି ମୁହୂର୍ତ୍ତ ଆତ୍ମସମୀକ୍ଷାର ଅଭିପ୍ରେତ ସମସ୍ୟ । ସକ୍ରେଟିସ୍ କହନ୍ତି—ନିଜକୁ ପରୀକ୍ଷା ନକରି ଚିନ୍ତାଶୂନ୍ୟଭାବେ ବଞ୍ଚିଥିବା ମଣିଷ ପଶୁ ତୁଲ୍ୟ ତାର ଆଗ ପଛ ଦେଖି ପାରେ ନା । ନିଜସ୍ୱ ଜୀବନଧାରା ବଜାୟ ରଖିବା ମଣିଷ ଜୀବନର ପ୍ରଥମ ସର୍ତ୍ତ । 'ଜ୍ୱଳ୍' କବିତାରେ ଶ୍ରୀ ଜେନା ଏହାର ସ୍ୱାକ୍ଷର ରଖିଛନ୍ତି । "ଯେ ସତ୍ୟଟିଏ ଖୋଜେ ତାକୁ ବୁଡ଼ି ମରିବାକୁ ହୁଏ/ଶବ୍ଦ ଶବ୍ଦ ଦେଖଣାହାରୀଙ୍କ ସାମ୍ନାରେ, ଯେ ପ୍ରତିବାଦର/କ୍ଷୀଣ ସ୍ୱରଟିର ଧଙ୍ଗୁର ପିନ୍ଧା ପାଗକୁ/ ଉଡ଼ାଇ ଦିଏ ନୀଳ ଆକାଶ ତଳେ ତାକୁ ତ/ ଭୋଗିବାକୁ ହୁଏ ଚଉରାଶି ନର୍କ ! ରେ ଦଣ୍ଡଧାରୀ,/ତୋ ରୁଦ୍ରାକ୍ଷମାଳାକୁ ଉଟେଇ ଦେବାକୁ କହୁ ନାହିଁ,/ ମଶାଣି ପାଢ଼ରେ, ସାପୁଆ ନଈର ଗଣ୍ଡରେ; ମାନ/ ଜାଣି-ରଖ କାହାରିକୁ କ୍ଷମା ଦିଏ ନାହିଁ,/ ବନ୍ଧୁଜାଇ ଭୁଲାଇ ରଖେ ନାହିଁ ଦର୍ମାଧାରୀ ବୁଢ଼ୀ/ ବେଶି ଦିନ ।" (ଗୀତ ଗାଁ ନାରେ ପକ୍ଷୀ) ।

କାବ୍ୟନାୟକ କିପରି ବଞ୍ଚିଛି, ସେ ବଞ୍ଚିବାରେ କେତେ ପରିମାଣରେ ସଫଳତା ଓ ବିଫଳତା ଅଛି ତାହାଇବା ସବୁଠାରୁ ବଡ଼ କଥା । କମଳାକାନ୍ତଙ୍କ କବିତାରେ ବଞ୍ଚିବାର ଏଇ ବିଶ୍ୱସ୍ତତା ସର୍ବତ୍ର ପରିଲକ୍ଷିତ । 'କେମିତି ବଞ୍ଚିତ ମୁଁ' (୮) କବିତାରୁ ଏହାର ପ୍ରମାଣ ମିଳିବ । ଏଇ ବଞ୍ଚିବା ଅର୍ଥ ମୃତ୍ୟୁ ସହ ହାତାହାତି ହେବା । ଅନୁଭବର ଏଇ ସୋପାନ ଭିତର ଦେଇ ଆସିବାବେଳେ କାବ୍ୟନାୟକ ହଠାତ୍ ଆବିଷ୍କାର କରେ 'ଜବର ଫୁଲ ଗୁଙ୍ଗୁଡ଼ାରେ କାହାର କଟାମୁଣ୍ଡ' (ନିଜସତ୍ତ୍ୱ ଗୋଟେ ସାକ୍ଷାତକାର— ପୃ. ୨୫-୨୬) । ସେ କଟା ମୁଣ୍ଡଟି ସ୍ୱୟଂ କବିଙ୍କର । ନ୍ୟାୟ, ଶୃଙ୍ଖଳା, ଓ ମୂଲ୍ୟବୋଧର ପ୍ରତିଷ୍ଠା ପାଇଁ କବିଙ୍କର ଏହା ହୁଏତ ଏକ ବ୍ୟର୍ଥ ଉଦ୍ୟମର ସ୍ମାରକୀ । ତେଣୁ ବ୍ୟର୍ଥତା ଭୂତ ପରି କବି ହୃଦୟରେ ପ୍ରବେଶ କରିଯାଏ । କବି ନିଜକୁ ସମ୍ପୋ. ଦମ୍ପେ ଓ ଠେଲିବାକୁ ଆରମ୍ଭ କରେ । ତାହାହିଁ କବିର ମୃତ୍ୟୁ । ମୃତ୍ୟୁର ଏହା ଏକ ଶୃଙ୍ଖଳିତ ରୂପ । ତେଣୁ କବି କହନ୍ତି—

"ମୃତ୍ୟୁ ବୋଲି କିଛି ନାହିଁ : ଯାହା ଖାଲି ପ୍ରଚଳିତ
ବିଶ୍ୱାସର ଚୁକ୍ତିର ମଲାଟ ! ଅରେ ତାକୁ ବନ୍ଦ ଦେଲେ
ଯାକି ନେଲେ, ଆଶ୍ଳେଷିଲେ ମନେ ହୁଏ
ବସନ୍ତ କି ଲେଉଟାଣି ଫେରୁଛି ପୁନଶ୍ଚ

---

୮ । 'ଗୀତ ଗାଁ ନାରେ ପକ୍ଷୀ' (୧୯୮୨) ପୃ. ୬୫ ।

କବିର ରାଜ୍ୟକୁ, କବିତାର ସୁନାର କ୍ଷେତକୁ,
ଈଶ୍ୱରଙ୍କ ଶ୍ମଶାନକୁ, ଈଶ୍ୱରୀଙ୍କ ଶିଙ୍ଗାର ଦେଶକୁ ।" (୯)
( ନିଜ ସହ ଗୋଟେ ସାକ୍ଷାତକାର )

କବି ହୃଦୟ ସର୍ବସ୍ୱ ମଣିଷଟିଏ । ହୃଦୟର ଦାବୀ ନେଇ ସେ ନିଜର ଲେଖନୀ ଚଳାଏ । ଭଦ୍ରତାର ଅନୁରୋଧରେ ନୀରବ ରହି ହୃଦୟ ବିପକ୍ଷରେ ଲେଖିବାଟା ଆକ୍ରମଣ କରିବା ତା' ପକ୍ଷରେ ମାନବିକତା ବିରୋଧୀ କାର୍ଯ୍ୟ । ଝବୁତା ଆତ୍ମବୀକ୍ଷଣକୁ ସ୍ୱୀକୃତି ଦେଉଥିବା କାବ୍ୟନାୟକର ଆଚରଣ ଉତ୍ତେଜନାପୂର୍ଣ୍ଣ ହୋଇ ଉଠେ । —"ଅର୍ଥାତ୍ ମୁଁ ଅବିକା ବୁଢ଼ା ହୋଇ ଯାଇଚି ଯେ ନିଜକୁ ବଞ୍ଚିବା ଛଡ଼ା/ନିଜକୁ ଶୋଧିବା ଛଡ଼ା/ ଦେଶ ନେଶର ପାଣ୍ଡୁଲିପିଟାର/ବସ୍ତାନି ଫିଟାଇବା ଦରକାର ନାହିଁ,/ କୌଣସି ଚୁଟିକଟା ବୁଢ଼ା ବ୍ରାହ୍ମଣ ସହ, ଜ୍ୟୋତିଷ ସହ/ଅବଶିଷ୍ଟ ଦିନଗୁଡ଼ାକର ଜନ୍ମମରଣର ହାତୀ/ଛନ୍ଦିବାକୁ ମନ ଡାକୁ ନାହିଁ ।" (ପ୍ରକୃତତ୍ତ୍ୱ—ଗୀତ ଗା' ନାଚେ ପକ୍ଷୀ) । ଦନ୍ତବିହୀନ ବୁଢ଼ାଟି ମୃତ୍ୟୁର ଆସନ୍ନ ଛାଇଛିକା ଦେଖି 'ନାରାୟଣ' 'ନାରାୟଣ' ଚିତ୍କାର କରେ । ଅଜାମିଳ ପରି ଯାବତୀୟ ଜୀବନର ପାପ ଛଡ଼ାଇବାକୁ ବେଶ୍ ଏକ ଚତୁର ଉପାୟ ! କବି ବ୍ୟଙ୍ଗ ବାଣରେ ଏ ମନୋବୃତ୍ତିର ତୀବ୍ର ବିରୋଧ କରନ୍ତି ।

"ନାରାୟଣ ଶବ୍ଦରେ ଉଭା ହୁଏ ନାରଦ ।
ନାରାୟଣ ଶବ୍ଦରେ ଫେରିଯାଏ ମୃତ୍ୟୁ ।
ମୃତ୍ୟୁର ନାଁ ଧରି ଡାକିଲେ ହାତରେ
ନିହଳା ବେତ ଧରି ଠିଆ ହୁଏ ଜୀବନ ।"
(ଅରକ୍ଷକୁ ରଖ ନାରାୟଣ—'ଖସିବାର ବେଳ')

ନାରାୟଣ ସହ ନାରଦ ଶବ୍ଦ ଯୋଡ଼ିବା ଭିତରେ ଆସନ୍ନ ମୃତ୍ୟୁ ସହ ଈଶ୍ୱରଙ୍କୁ ସଂଯୁକ୍ତ କରାଯାଇଛି । ନାରଦ ଏଠି ଦ୍ୱୈତ ଅର୍ଥସମ୍ପନ୍ନ । ନା—ରଦ=ନାରଦ, ଅର୍ଥାତ୍ ଦନ୍ତହୀନ ବୃଦ୍ଧ । ଅନ୍ୟ ପକ୍ଷରେ, ନାରଦ—ଦେବର୍ଷି । ଦେବର୍ଷି ନାରଦ ଯାବତୀୟ ଦୁଷ୍କର୍ମ (ଅର୍ଥାତ୍ ବିନା କାରଣରେ କଳିଗୋଳର ସୂତ୍ରପାତ କରିବା) ରେ ଲିପ୍ତ ଥାଇ ସବୁବେଳେ ଯେପରି 'ନାରାୟଣ' 'ନାରାୟଣ' ଜପ କରନ୍ତି, ବୁଢ଼ା ମଣିଷଟି ଜୀବନର ବହୁବିଧ ଦୁଷ୍କୃତିର କ୍ଷାଳନ ପାଇଁ 'ନାରାୟଣ' ନାମକୁ ଜପ କରେ । ବାର୍ଦ୍ଧକ୍ୟର ମରୁଦେଶରେ ନାରାୟଣ ନାମ

---

୯ । ଏହା ସହିତ 'ନିତ୍ୟ ନୈମିତ୍ତ'ର ୪୪ ନମ୍ବର କବିତା ଏବଂ 'ଖସିବାର ବେଳ'ର 'ଚୁପ୍‌କିନା ସମୟ' କବିତାଟିକୁ ମିଳାଇ ପଢ଼ାଯାଇ ପାରେ ।

ଯେ ଶାନ୍ତି ବାରି ବର୍ଷଣ କରିବ, ଏ ବିଷୟରେ କବି ମୋଟେ ଆସ୍ଥାବାନ୍ ନୁହନ୍ତି । କବି ପରିହାସ କରି କହନ୍ତି—"ମରିବାକୁ ଯଦି ଏତେ ଡର ସୋଫାର ଭିତରେ/ ଘର କର । ନିଜକୁ ଫାଙ୍କିବାକୁ ଯଦି ମନ/ସମୟ ସାଥେ ବାଜି ଧର ।" (୧୦)

ମଣିଷର ପୁରୁଷାର୍ଥ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ । ସମସ୍ତ ଜ୍ୱାଳା ଊର୍ଦ୍ଧ୍ୱେ ଯନ୍ତ୍ରଣାର ମନସ୍ୱିଙ୍କ ପୁରୁଷାର୍ଥକୁ । ତେଣୁ ଏଠି ମୃତ୍ୟୁର ଆଗମନରେ ଦୁଃଖ ନାହିଁ, ନାହିଁ ଅନୁଶୋଚନା । ପୁରୁଷାର୍ଥ ରକ୍ଷା ପାଇଁ ଯେଉଁ ମୃତ୍ୟୁକୁ ଗ୍ରହଣ କରିବାକୁ ହୁଏ, ତାହା ଉତ୍କୃଷ୍ଟ ହେଲେ ବି କରୁଣାମୟ । (୧୧) ଗୃହ କଙ୍କାଳରେ ବନ୍ଦିତ କାବ୍ୟନାୟକ ସାମୟିକ ଅସ୍ୱସ୍ତି ହେତୁ ମୁକ୍ତି ପାଇଁ ମୃତ୍ୟୁକୁ ଅପେକ୍ଷା କରେ । କିନ୍ତୁ ଏଇ ଅପେକ୍ଷା ପୁରୁଷାର୍ଥ ହାନିକାରକ ନୁହେଁକି ପଳାୟନପନ୍ଥୀ ଦୁର୍ବଳ ଭାବନା ନୁହେଁ ! ତାହା ବରଂ ଜୀବନ ପ୍ରତି ଗମ୍ଭୀର ଆକର୍ଷଣ । ରୋଗ, ଶୋକ ବ୍ୟାଧି, ବାର୍ଦ୍ଧକ୍ୟରେ ପୀଡ଼ିତ ମଣିଷକୁ ମୃତ୍ୟୁ ପଛେ ଟାଣି ନେଉ କିନ୍ତୁ ଜୀବନର ନିଃଶ୍ୱାସଟା ନ କଟିବା ଯାଏଁ ମୃତ୍ୟୁ ମଣିଷର ହାତଧରି ଟାଣିବା ବାସ୍ତବିକ୍ ମର୍ମନ୍ତୁଦ । (୧୨) ଚେତନଶୀଳ କବି ଏକଥା ସହନ୍ତେ ବା କିପରି ? ନିଜର ସଙ୍କୋଚ ଅଭିପ୍ରାୟକୁ ଦେଖାଇଦେବା କବିର ସତତା ନୁହେଁ କି ? "ମୋ ମୃତ୍ୟୁ ପ୍ରତି କେତୋଟି ମୁହୂର୍ତ୍ତ" (କବିତାର ମୁହଁ) ଜୀବନର ସନ୍ଧି ଅନୁଭବର ନିକଷ ରୂପାୟନ । କମଳାକାନ୍ତଙ୍କ ସମଗ୍ର ମୃତ୍ୟୁ ଚେତନାର ଭ୍ରୂଣ ଏଇ କବିତା ଭିତରେ ସନ୍ନିକ । ନିଜ ଭିତରେ କିଛି ଗୋଟାଏ ଭାଙ୍ଗିବାର ଶବ୍ଦ କବିଙ୍କୁ ବିଚଳିତ କରୁଛି । ହୋ ହଲ୍ଲା, ହଟ୍ଟଚମକ ଭିତରେ ବି ସେଇ ଭଙ୍ଗାରୁଜାର ଶବ୍ଦ ସ୍ପଷ୍ଟ । ରାମଚନ୍ଦ୍ର ଓ କୈକେୟୀ ମାଧ୍ୟମରେ କାବ୍ୟନାୟକର ବକ୍ତବ୍ୟ ବେଶ୍ ଶାଣିତ—

'ହୈ ଚୈ ହୋ ହଲ୍ଲା ହଟ୍ଟଚମକରେ
ରାମଚନ୍ଦ୍ର ବନବାସ ଗଲେ । ଆଳାପିତ ଗତର ବିଳମ୍ବ ପୂର୍ବରୁ
କଇକେୟୀ ଚଢ଼ି ପହଞ୍ଚିଲେ । ଏବଂ ଜମୁଛି ଗଜଲ ଗୀତ :
"କେତେ ଦିନକୁ ମନ ବାନ୍ଧିବୁ ଆଉ ।
କି ଦେଖି ଯିବୁ ତୋର ଛୁଟିଲେ ଘଟ ।"

---

୧୦ । 'ଏକାକାର' (ଖସିବାର ବେଳ) ଏବଂ 'କବି ଉବାଚ' ('ଗୀତ ଗା'ନାରେ ପକ୍ଷୀ') କବିତା ଦୁଇଟି ଏଇ ପରିପ୍ରେକ୍ଷିତରେ ଦ୍ରଷ୍ଟବ୍ୟ ।

୧୧ । 'ଏକକ'— ଖସିବାର ବେଳ ।

୧୨ । ନିତ୍ୟ ନୈମିତ୍ତିକ—୧୯୭୮—୩୨ ନମ୍ବର କବିତା ଦ୍ରଷ୍ଟବ୍ୟ ।

"ନକଲ୍ଲ ନକେ କେତେ ଖଟାଇ ହେଲ୍ଲ।
ନକର ହାତ ଖୋଲା ଗାତରେ ଶୋଇ୍ଲ।"

(ମୋ ମୃତ୍ୟୁ ପୂର୍ବରୁ କେତୋଟି ମୁହୂର୍ତ୍ତ)
—"କବିତାର ମୁହୂର୍ତ୍ତ"

କାବ୍ୟନାୟକ କାଳୁ ଯାବତୀୟ ଅସ୍ଥିରି ଓ ଦୁଃଖର ବୋଝ ଭଳି ମୃତ୍ୟୁକୁ ହାଲକା ଅର୍ଥରେ ଗ୍ରହଣ କରି ନଥ। କାରଣ ଏହା ଭିତରେ ନିହିତ କବିଙ୍କର ଉତ୍ତରଣ ନିଶା। ସେଥିପାଇଁ ସେ କହି ପାରୁଛନ୍ତି—"ଆଉ ପୂର୍ଣ୍ଣ କେତେ ବାଟ ମୋ ମୃତ୍ୟୁରୁ ମାଆର ଗର୍ଭକୁ?"—"ଯାବତ୍ ଜନନଂ ତାବତ୍ ମରଣମ୍/ତାବତ୍ ଜନନୀ ଜଠରେ ଶୟନମ୍"—ଶଙ୍କରଙ୍କ ଏଇ ବାକ୍ୟ ପ୍ରତି ଶଙ୍କର ବିଶ୍ୱସ୍ତତା ଅକପଟ। ଶ୍ରୀ ପ୍ରମୋଦ ପଣ୍ଡାଙ୍କ ମନ୍ତବ୍ୟ ଏଇ ପରିପ୍ରେକ୍ଷିତରେ ଗ୍ରହଣୀୟ। "× × × 'କବିତାର ମୁହୂର୍ତ୍ତ' କବିଙ୍କ ଭାବବୋଧର ଗୁରୁଗମ୍ଭୀର ମନସ୍ଥିତି ମଧ୍ୟରେ ବ୍ୟକ୍ତିଗତ ଏବଂ ତତ୍‌ସଂଲଗ୍ନ ସାମାଜିକ ଜୀବନର ନିର୍ମାଣ ଅବସ୍ଥା ଓ ତଜ୍ଜନିତ ଅସ୍ଥିରି ମଧ୍ୟରୁ ମୁକ୍ତି ପାଇଁ ଏକ ଅନ୍ୱେଷୀ ମନର ପଥ ଖୋଜିବାର ଉଦ୍ୟମ।" (୧୩) ଶରପଞ୍ଜର ବନ୍ଦୀଥିବା ପୃଥିବୀର ଜନଯୁକ୍ତ ଭିତରେ କବିଙ୍କର ମାନସିକତା ନିର୍ମିତ ହୋଇ ବନ୍ଧୁ ଊର୍ଦ୍ଧ୍ୱରେ। ତେଣୁ ତାଙ୍କର ମୃତ୍ୟୁଚେତନା ଅନ୍ୟମାନଙ୍କଠାରୁ ସ୍ୱତନ୍ତ୍ର।

ଉପଭୋଗର ପର୍ବ ଶେଷ ହେଲା ପରେ ତେଣୁ ମୃତ୍ୟୁ ପ୍ରାର୍ଥିତ ହୋଇ ଉଠେ।—"ମୁଣ୍ଡର ଚନ୍ଦନ କାଠ ସଜଡ଼ା ହେଲାଣି।/ ମହକର ଜହ୍ନଘର ଧୁଇଁ ଧୁଇଁ ଧୂଳି କଳାଲଣି। ତେବେ ଆଉ ବିଳମ୍ବର ପ୍ରୟୋଜନ କାହିଁ?" ରମାକାନ୍ତ ରଥଙ୍କ 'ମରିବାକୁ ଯାଉଥିବା ଲୋକର'ର ଦୃଷ୍ଟିଭଙ୍ଗୀ ସହ କମଳାକାନ୍ତଙ୍କର ଚିନ୍ତାର ସାଦୃଶ୍ୟ ଲକ୍ଷଣୀୟ। ବିପନ୍ନ ପୌରୁଷକୁ ନେଇ ବଞ୍ଚିବା ବଡ଼ ଦୁଃସହ କାବ୍ୟନାୟକ ପକ୍ଷରେ। ପୁତ୍ରକନ୍ୟାଙ୍କ ଭିଡ଼ ଭିତରୁ ସାମୟିକ ନିଷ୍କୃତି ପାଇଁ ସେ ମୃତ୍ୟୁ ଛଡ଼ା କାହାକୁ ବା ପ୍ରାର୍ଥନା କରି ପାରନ୍ତି? ଶ୍ରୀ ଲେଙ୍କାଙ୍କ ଭାଷାରେ—

"ହେ ମୋର ସ୍ନେହଜ ପୁତ୍ରକନ୍ୟାଗଣ!
ମୁଁ ଗୁଲଲି ମୋ ଡେଣାରେ କୋଡ଼ି ତୁମ ପ୍ରାଣରେ ଉଦ୍ୟତ ଲୁହ।
ବର୍ତ୍ତମାନ ମୁଁ ଗୁଲଲି ମୋ ମାଂସ, ହାଡ଼ ଓ ରକତର

୧୩। ପଣ୍ଡା, ପ୍ରମୋଦ—'ସମାବେଶ' (ସଂଖ୍ୟା ?) 'ସ୍ରୋତର ନାମ ଋତ' ଗ୍ରନ୍ଥର 'ସ୍ରଷ୍ଟା, ସୃଷ୍ଟି : ମତ, ଅଭିମତ, ଭିନ୍ନମତ ଓ ପ୍ରତିକ୍ରିୟା-ପ୍ରତିକ୍ରିୟା' ଦ୍ରଷ୍ଟବ୍ୟ।

ଯୋଖାଡ଼ ଓହ୍ଲାଇ । ତୁମ ପାଇଁ ସ୍ମୃତିଗଳ
ଏ ପିଙ୍ଗଳ ମାଟି ଆଉ ଅଗ୍ନାଗ୍ନି ବନସ୍ତ ଓ
'ରାମ ନାମ ସତ୍ୟ'ର ସ୍ୱୀକୃତ ।

( ମୋ ମୃତ୍ୟୁ ପୂର୍ବରୁ କେତୋଟି ମୁହୂର୍ତ୍ତ )

ଦୁଃଖୀ ମଣିଷ ପାଇଁ ମୃତ୍ୟୁର ଆତ୍ମୀୟତାର ଦୃଷ୍ଟାନ୍ତ ରୂପ । "O Death ! the poor man's dearest friend/the kindest and best" (Burns; Man was made to Mourn) । 'ସୁନା ଫସଲ'ର 'ମରଣ ହେ ତୁମେ ସାଥୀ ମୋର' ଏବଂ 'ପ୍ରୀତି ଓ ପ୍ରଶାନ୍ତି'ର କ୍ଷୁଧା କବିତା କବିଙ୍କ ଏଇ ମୃତ୍ୟୁଚେତନାର ଉପସ୍ଥାପକ ରୂପ । କାହିଁ ଏ ଭଦ୍ର ମୃତ୍ୟୁ ଭିତରେ ଭୟାବହତା ? ବରଂ ହେମନ୍ତ ଟଗର ଫୁଲ ପରି ମୃତ୍ୟୁ ଏଠି ସୁନ୍ଦର ଓ ଲୋଭନୀୟ । (୧୪) ଜନ୍ ଡନ୍ କହନ୍ତି—"Death be not proud, though some have called Thee /Mighty and dreadful, for Thou art not so ।" (୧୫) ରବୀନ୍ଦ୍ରନାଥଙ୍କ କାବ୍ୟ ସ୍ୱର ସହ କଣ୍ଠ ମିଳାଇ କବି ଶ୍ରୀ ଲେଙ୍କା ମୃତ୍ୟୁକୁ ତାଙ୍କ 'ଜୀବନର ଶେଷ ପରିପୂର୍ଣ୍ଣତା' ରୂପେ ଗ୍ରହଣ କରି ନେବାରେ କୌଣସି ବିରୋଧ ସୃଷ୍ଟି ହୁଏ ନାହିଁ । କାବ୍ୟନାୟକ କିନ୍ତୁ ନିଜକୁ ଅପୂର୍ଣ୍ଣ ଭାବୁଥିବା ପର୍ଯ୍ୟନ୍ତ ଶାନ୍ତ ଶୀତ ହସ୍ତ ଦୂରରେ ଥାଏ । 'ମୋ ମା' ପ୍ରତି' ଓ 'ସ୍ୱରଲିପି' କବିତା (କବିତାର ମୁହଁ) ଦୁଇଟିରେ ଏଇ କାବ୍ୟଚେତନାର କ୍ରମପରିଣତି ପରିଷ୍କାର ଲକ୍ଷ୍ୟ କରି ହୁଏ । ମା'ର ମୃତ୍ୟୁ ପରେ ସେ ହାଙ୍କ ସନ୍ତାନ ଉପରେ ଆକାଶ ଭାଙ୍ଗି ପଡ଼ିବାର ଛନ୍ଦରେ ବ୍ୟଥିତ କାବ୍ୟନାୟକ – "ପବନ ନିଶ୍ଚଳ ହେଲା ବର୍ଷା ଗଲା ସରି ।/ଶେଷ ହେଲା ଗାଁର ଆଖଡ଼ା ମା'/ଶେଷ ହେଲା ମେଣ୍ଢା ଘର ପୋଡ଼ା/ଆଉ କି ରହିଛି ବାକି ରାତି ରାତି ହଜାଗର ରହି/ଆପଣାକୁ ବଜାଇବି ଜୁବୁଜ ଓ ମୃଦଙ୍ଗର ତାନେ ।" ହୃଦୟର ଗଭୀର ବେଦନାର ଢେଉରେ ବିପର୍ଯ୍ୟସ୍ତ ହେଉଥିବାବେଳେ ତଥାକଥିତ ହିତାକାଂକ୍ଷୀଙ୍କ ତୁଚ୍ଛ କବିତାର ଶାଣିତ କଣ୍ଟକ କ୍ଷୁଦ୍ର ଉପଦେଶ ।

ଆସ, ଆସ—ତୁମେ ସବୁ ଅନଚ୍ଛୁକ ହିତବାଦୀମାନେ,
ଅନୁଗ୍ରହ କରି ମୋର ଭିତରକୁ
ହାଣି ମାରି ଛିନଛିନ୍ କର,

---

୧୪ । ଅର୍ଥ-ଅନର୍ଥ—"ଝରିବାର ବେଳ" –ପୃ. ୬୭ ।

୧୫ । Donne, John – Holy sonnets. X ।

ଏବଂ ମୋର ଦେହାନ୍ତରେ
ସୌହାର୍ଦ୍ଦ୍ୟର କୋକେଇ କାନ୍ଧେଇ
ହୁଏ ଯଦି ଲୋକାନ୍ତରେ
ଦେଖିବ ବିନ୍ଦୁ ଲୁହ ଢାଳି ମାତ୍ର ।

( ଏଜ୍ରା ରୁମ ମର୍ଜି ଏବଂ ପ୍ରୀତର ନଜର !)

ମୃତ୍ୟୁର ଗତାନୁଗତିକ ଧାରଣାକୁ ପରିବର୍ତ୍ତନ କରିବାକୁ କବିଙ୍କର ଶ୍ଳେଷାତ୍ମକ ଦୃଷ୍ଟି ଉଦ୍ୟତ । ପ୍ରତିଷ୍ଠିତ ସାମାଜିକ ଶୃଙ୍ଖଳାକୁ ଭାଙ୍ଗି ଦେଇ ମୃତ୍ୟୁର ସୁନ୍ଦର ଜଗତ ଗଢ଼ିବା କବିଙ୍କର ଅନ୍ତିମ ଅଭିପ୍ରାୟ ।

"ଭାଙ୍ଗି ଦିଅ ମିନା କରା କୋଠରୀର ଆଭିଜାତ୍ୟ
ଜାଳି ଦିଅ ଦେହ ଓ ରକ୍ତର ଦ୍ୱେଷାନଳ,
ଫିଙ୍ଗି ଦିଅ ମଣି ମୁକ୍ତା ଧୂପଦୀପ ଚନ୍ଦନ କାଠର
ଅପୂର୍ବ ଦାସ୍ତାର ମଠ ସମସ୍ତ ଗର୍ଭଜ୍ଞ ।"

( 'ସନ୍ନ୍ୟାସ'—କବିତାର ମୁହଁ । )

ଜୀବନ ମରଣର ଆବସ୍ଥାର ମଧ୍ୟରେ କାବ୍ୟନାଟ୍ୟକ ଆଶା ରଖିଛନ୍ତି ମୃତ୍ୟୁଞ୍ଜୟର ଜୀବନ ସତ୍ତାରେ । 'ଖର୍ପରକୁଦ ଜୀବନର ସଫଳତା ଖର୍ପର' (ଯା ଦେଖା— ଖସିବାର ବେଳ) ରେ ନୁହେଁ କିମ୍ବା 'ପ୍ରେତାତ୍ମାର ଆସ୍ଫାଳନ' ଭିତରେ ମୃତ୍ୟୁର ପୂର୍ଣ୍ଣତା କବିର ଅଭିପ୍ରେତ ନୁହେଁ । ମୃତ୍ୟୁର ସର୍ବବ୍ୟାପୀ ସତ୍ତାର ଅନୁଭବ କବିଙ୍କର ବଡ଼ ବିଶେଷତ୍ୱ । ଶେଲିଙ୍କ ପରି ସେ ଦେଖନ୍ତି— Death is here and death is there, Death is busy everywhere." (Death —1820) । ମାତ୍ର ଶେଲି ମୃତ୍ୟୁକୁ ଶୁଭ୍ରସୁନ୍ଦର ଜୀବନବୋଧର ପରିଣତି ରୂପେ ଦେଖିବାରେ ଅଭ୍ୟସ୍ତ ନୁହନ୍ତି । କବି ଶ୍ରୀ ଲେଙ୍କା ମୃତ୍ୟୁରେ ଶୁଭ ଦର୍ଶନ କରିଥିବା ହେତୁ ବୋଧହୁଏ ମୃତ୍ୟୁ ପାଇଁ ଏତେ ଶୋକ କରନ୍ତି ନାହିଁ । କାରଣ "ଶବ ପାଇଁ ଗାତ ଖୋଳୁଥିବା ଲୋକଙ୍କ ଜାଣେ : ଫେରସିବାର ସହଜ ସୂତ୍ର ('ଖଣ୍ଡସତ୍ୟ'— ନିର୍ମୋଚନ) ।

ନିଜକୁ ଧ୍ୱଂସ କରିବାକୁ ମଣିଷ ପାଗଳ । ମାତୃଗର୍ଭରୁ ମଣିଷ ଯେପରି ଏ ଜୀବନର ସ୍ୱାଭାବିକ ପ୍ରାଣେ ପ୍ରାଣେ ଅନୁଭବ କରିଥାଏ । କେଉଁଠି ପୂର୍ଣ୍ଣତାର ପ୍ରତ୍ୟାଶା ତ କେଉଁଠି ଅପୂର୍ଣ୍ଣତାର ବନ୍ଧ୍ୟାତ୍ୱ ମୃତ୍ୟୁଆଶ୍ରିତ । ପ୍ରେମ ଓ ଜୀବନ ସହ ମୃତ୍ୟୁ ତାଙ୍କ କବିତାରେ ସମତାଳରେ ଗତିମାନ୍ । ଫ୍ରୟେଡଙ୍କ ମତରେ ଯୌନ ଆବେଗ ବିନା ମୃତ୍ୟୁରେ ନାହିଁ ପୂର୍ଣ୍ଣତା । ଅନ୍ୟ ପକ୍ଷରେ, ଘୋର

ନୈରାଶ୍ୟ, ବିଷାଦ, ବ୍ୟର୍ଥତା ଓ ନିଃସଙ୍ଗତାରୁ ତାଙ୍କ ମୃତ୍ୟୁଚେତନାର ଅଭ୍ୟୁଦୟ ଘଟିଛି । ମୃତ୍ୟୁ ତାଙ୍କ କବିତାର ଖିଆଲ୍ ମେଜାଜ୍ ଲୁଦ୍ଧେଁ କି ଅନ୍ୟ ଉପରେ ପ୍ରତିଶୋଧ ନେଇ ପାରୁ ନ ଥିବାର ଅପାରଗତାରୁ ଜନ୍ମ ନେଇ ନାହିଁ । ବରଂ ନିଜ ଉପରେ ପ୍ରତିଶୋଧ ନେବା ତାଙ୍କ ମୃତ୍ୟୁର ଅବ୍ୟର୍ଥ ଔଷଧ ଓ ବିସ୍ମରଣଶୀଳତା ତାଙ୍କ କାବ୍ୟଚେତନାର ମୁଖ୍ୟ ବିଷୟ —ଯାହାକୁ ଭିତ୍ତି କରି କମଳାକାନ୍ତଙ୍କ ମୃତ୍ୟୁଚେତନାର ପରିଧି ଓ ପରିସର ନିର୍ଣ୍ଣୀତ ।



# ଷଷ୍ଠ ଅଧ୍ୟାୟ

## ନୀତିଚେତନା ଓ କାବ୍ୟାନୁଭବ

ଭାରତ ଏକ ଆଧ୍ୟାତ୍ମିକ ଭୂମି । ଏହାର ମାଟି, ପାଣି, ପବନର ବାସ୍ନା ଆଘ୍ରାଣ କରୁଥିବା କବି କବି ଏକ ଭିନ୍ନ ଚେତନାରେ ଅଧିଷ୍ଠିତ । ସେ ଯେବେ ଈଶ୍ୱରଙ୍କୁ ବିଶ୍ୱାସ କରେ, ତାହା ଭକ୍ତିକବିତା ବିଚାରିତ ଆଧ୍ୟାତ୍ମିକତାର ନାମାନ୍ତର ବୋଲି କହିବାକୁ ହୁଏ । ତା' ନିଜ ଦେଶରେ ଆଜି ଧର୍ମର ବିପର୍ଯ୍ୟୟ । କେବଳ ସେତିକି ନୁହେଁ, ଧର୍ମ ନାମରେ ଧର୍ମାନ୍ଧତା, ଈଶ୍ୱର ବିଶ୍ୱାସ ନାମରେ ଅନୈତିକତାର ପ୍ରବଳ ପ୍ରବାହ ଆଜି ମଣିଷ ଜାତିଟାକୁ ପଙ୍ଗୁ କରି ଦେବାକୁ ବସିଛି । ପୁଣ୍ୟର ପବିତ୍ର ସ୍ଲୋଗାନ ଭିତରେ ପାପର ଧର୍ମରାଜ୍ୟ ଆଜି ମୁଖରିତ । ଧର୍ମଯାଜକ, ତଥାକଥିତ ବାବାଜୀ, ମାତାଜୀ, ମୋହାନ୍ତଙ୍କ ଅଧର୍ମୋଚିତ ଆଚରଣରେ ସମାଜର ଅଧିକାଂଶ ମଣିଷ ଈଶ୍ୱରଙ୍କ ଉପରୁ ଆସ୍ଥା ହରାଇବାକୁ ବାଧ୍ୟ ହେଉଛନ୍ତି । ଧର୍ମକ୍ଷେତ୍ରରେ ଧର୍ମନୀତି ପରିବର୍ତ୍ତେ ରାଜନୀତି, ପ୍ରେମଚର୍ଯ୍ୟା ପରିବର୍ତ୍ତେ କାମଚର୍ଯ୍ୟାର ଅଶ୍ଳୀଳ ବାତାବରଣ ପ୍ରାପ୍ତ ଆଜି ମନ୍ଦିରଠି । ବାହାରୁ ଦେଖିଲେ ପ୍ରତିଟି ମଣିଷ ଯେପରି ଈଶ୍ୱରଙ୍କ ମୂର୍ତ୍ତିମନ୍ତ ଅବତାର, ଅଥଚ ଭିତରଟା କି ନାରଖାର ! ଭଡ଼ା ଢଳକ, ଚୌରଙ୍ଗ ବସନର ଆଟୋପ ଆଡ଼ମ୍ବର ଭିତରେ ଆଜି ଈଶ୍ୱର ହୁଅନ୍ତେ ଅନ୍ତର୍ହିତ । ଗୋଟାଏ ଦିଗରେ ଚାଲିଛି ଅଗଣିତ ଧର୍ମସଭା, ଠାକୁର ପୂଜା, ଅନ୍ୟ ଦିଗରେ ଧର୍ଷଣ, ହତ୍ୟା, ଅତ୍ୟାଚାର, ଶୋଷଣର କରୁଣ ହାହାକାର । ଯେମିତି ଗୋଟାଏ ବିରୋଧାଭାସ ମଧ୍ୟରେ ଛନ୍ଦି ହେଉଛି ଆଜିର ସମାଜ । ଧର୍ମ ଜଗତରେ ଏପରି ବିପର୍ଯ୍ୟୟ ସ୍ୱାଭାବିକ ବୋଲି ଶାସ୍ତ୍ରବାଣୀ ଅଛି ସତ, କିନ୍ତୁ କବି ଏଥିରୁ ବିଶ୍ୱାସ କରିବାକୁ ପ୍ରସ୍ତୁତ ନୁହେଁ ।

ଶ୍ରୀ ଲେଙ୍କାଙ୍କ କାବ୍ୟାନୁଭବ ତେଣୁ ଏଇ ବ୍ୟବସ୍ଥା ବିରୁଦ୍ଧରେ ପ୍ରତିବାଦୀ ସ୍ୱାଶୀଳ । ଜଣେ ସମାଜ ସଚେତନ ବ୍ୟକ୍ତି ଭାବରେ ସେ ଦେଖନ୍ତି ସମାଜସ୍ଥ ଧର୍ମଗୁରୁମାନଙ୍କ ଭିତରେ ଅନୈତିକ କାର୍ଯ୍ୟକଳାପ, ଅନସ୍ପୃଷ୍ଟିତ ଆଚରଣ । "ଯେ ମନ୍ଦିରଟିଏ ତୋଳେ, /ତା'ର ସିଂହାସନ ମଦଭାଟିର ଗଦିରେ ।" (ମୋ ଛଡ଼ା ପ୍ରତିଟି ମଣିଷ— ଗୀତ ଗା' ନାହିଁ ପକ୍ଷୀ) (୧) ମଦ୍ୟପ ଓ ମନ୍ଦିର ଦୁଇଟି ସ୍ୱତନ୍ତ୍ର ଭାବମଣ୍ଡଳର

---

୧ । 'ଉନ୍ମୋଚନ'ର ଶୁହାଳ କବିତାରେ ଅବିକଳ ଏଇ ଚିନ୍ତାର ପ୍ରତିଫଳନ ଘଟିଛି । "ମନ୍ଦିର ଯାହା, ମଦିରା ତାହା ।"

ପଡନ୍ତି । ତେଣୁ ମଦ୍ୟପଟିଏ ମନ୍ଦିର ଗଢ଼ିଲାବେଳେ ଆଧ୍ୟାତ୍ମିକତାର ଅସଲ ଉଦ୍ଦେଶ୍ୟ ଚରିତାର୍ଥ ହୁଏ କି ? ସେଇପରି ତଥା, ଝାଳକଧାସି ବୁଢ଼ୀଟିଏ ପଡଦେଶିମା ଷୋଡ଼ଶୀ ବଧବାଟିକୁ ଭାଗବତର ଏକାଦଶସ୍କନ୍ଧ ପଢ଼ି ଶୁଣାଇଲାବେଳେ ତାଙ୍କ ମାଂସ ଗନ୍ଧରେ ବିବ୍ରତ ହୁଏ ନାହିଁକି ? ଏଠି ଆଧ୍ୟାତ୍ମିକ ଅସ୍ପୃହାଠାରୁ ଜୈବିକ ଆସ୍ପୃହା ବଡ଼ ହୋଇ ଉଠେ । ନାରୀ ଓ ଈଶ୍ୱରଙ୍କ ଦୂରତା ତେଣୁ ଯୋଜନ ଯୋଜନ । (୨) କବି ବ୍ରଜେନ୍ଦ୍ର କିଶୋର ପଣ୍ଡାଙ୍କ ବକ୍ତବ୍ୟ ଏଇ ପରିପ୍ରେକ୍ଷିତରେ ଖୁବ୍ ମୂଲ୍ୟବାନ : "କମଳାକାନ୍ତ ଏ ସମସ୍ତର ଅନ୍ୟତମ ଶକ୍ତିଶାଳୀ କବି । ଉଚ୍ଚାରଣରେ ସେ ଦାମ୍ଭିକ ଓ ଦୃପ୍ତ । He cares two hoots for conventions । ଈଶ୍ୱର ହେଉ ବା ନାରୀ, ସ୍ଥଳ ବିଶେଷରେ ଜିଭ ଦେଖାଇ ଧାଏଁନ୍ତ କମଳାକାନ୍ତ ଉତ୍ତରର ନାରଖାର । ସେ ଅକ୍ଳାନ୍ତ ସନ୍ଧାନୀ ଓ ଏକ ସତ୍ କବି ।" (୩)

ମଣିଷ ନିଜକୁ ଠିକ୍ ଠିକ୍ ଏତେ ବଡ଼ ପ୍ରବଞ୍ଚକ ହେଲାଣି ଯେ କାଷ୍ଠ ମାଷାଣର କଳାଠାକୁର ଆଡ଼କୁ ଆଉ ଆଙ୍ଗୁଳି ଆଙ୍ଗୁଳି ପ୍ରତାରଣାର ଦାଗ ଫିଙ୍ଗିବାକୁ ସାହସ କରୁ ନାହିଁ । ଜଳ ସ୍ଥଳ, ଅନ୍ତରୀକ୍ଷ ତା' ପାଇଁ ଯେପରି ପ୍ରବଞ୍ଚନାର ଗୋଟେ ଗୋଟେ ଶୂନ୍ୟମଣ୍ଡଳ । ତେଣୁ ନିତ୍ୟ ବୃନ୍ଦାବନ ତା' ଦୃଷ୍ଟିରେ କେବଳ କପଟ ବୃନ୍ଦାବନ । (୪) ଆଉ ଈଶ୍ୱର ଫେରାର୍ ଆସାମୀ ! "ହାତକୁ ଛଡ଼ାଇ ଖାଇବା ମହାପ୍ରସାଦଟୁ/ଆଉ କ'ଣ ବଡ଼ବଡ଼ିମା, ବଡ଼ପଣିଆ ଅଛି ଯେ ବଡ଼ଠାକୁରର" ( ଗୋଟେ ଶୁଖିଲା କବିତାର ନକ୍ସା—ଶୀତ ଗା'ନାରେ ପକ୍ଷୀ ) । ଏଇ ମନୋବୃତ୍ତି ଆଧ୍ୟାତ୍ମିକ ଅତୃପ୍ତିକୁ କୌଣସି ପ୍ରକାରେ ପ୍ରଶମିତ କରିପାରେ ନା କିମ୍ବା ଆତ୍ମିକ ଅଶାନ୍ତିକୁ ଦୂର କରିବାରେ ସହାୟକ ହୁଏ ନା । ଜାତି, ବର୍ଣ୍ଣ, ବୟସ ନିର୍ବିଶେଷରେ ମହାପ୍ରସାଦ ଏକାଠି ସେବନ କରି ଦେଲେ ସାମ୍ୟବାଦର ପ୍ରତିଷ୍ଠା ହୁଏ ନାହିଁ କି ଆଧ୍ୟାତ୍ମିକ ମହିମା ଉପଲବ୍ଧ ହୁଏ ନାହିଁ । ଯୁଗ ଯୁଗ ଧରି ବସୁଧାକୁ ଗୋଟାଏ କୁଟୁମ୍ବ ବୋଲି କୁହାଯାଉଥିଲେ ବି ବସ୍ତୁତଃ ତାହା ସମୃଦ୍ଧ ହୋଇଛି ବୋଲି ଦୃଢ଼ୋକ୍ତି କରିଯାଇ ନ ପାରେ । ତେଣୁ ଏଇ କାନ୍ଦପ୍ରଚେଷ୍ଟା କବିଙ୍କ ମନେ ହୋଇଛି ପାଗଳର ମନ୍ତ୍ର ପାଠ ପରି । (୫) ଗୋଟାଏ ମନ ନିକୁଞ୍ଜ

୨ । 'ନାରୀ ଓ ଈଶ୍ୱର'— ହରିଶ ବସୁରଣ—ପୃ. ୮୭ ।

୩ । ପଣ୍ଡା, ବ୍ରଜେନ୍ଦ୍ର କିଶୋର—'ଯୁଗରଶ୍ମି' ( ଲେଖକ ବିଶେଷାଙ୍କ ), ମାର୍ଚ୍ଚ, ୧୯୮୩ ।

୪ । 'ନିତ୍ୟ ବୃନ୍ଦାବନ'—ଶୀତ ଗା' ନାରେ ପକ୍ଷୀ ।

୫ ।' ପାଗଳ କହୁଛି ପାଗଳକୁ ଯେ'—ତନ୍ତ୍ରୈକ ।

ବୈରାଗ୍ୟର ଖୋଳ ଭିତରେ ଆଶ୍ରୟ ନେବା ପାଇଁ ଏଇ ପୃଥିବୀର ମଣିଷଗୁଡ଼ା ଯେପରି ବ୍ୟଗ୍ର, ବୈରାଗ୍ୟର ଗଭୀରତା ସେମାନଙ୍କଠାରେ ପ୍ରାୟତଃ ଅନୁପଲବ୍ଧ । ଅବଶ୍ୟ ଭଲ ସାଧୁ, ସଚ୍ଚୋଟ ଈଶ୍ୱରବିଶ୍ୱାସୀ ନାହାନ୍ତି ବୋଲି କୁହାଯାଇ ନ ପାରେ । କିନ୍ତୁ ସେମାନଙ୍କ ଅନୁଗାମୀମାନେ ଧାର୍ମିକତାର ଘୋଢ଼ଣୀ ଭିତରେ ନିଜର ମିଥ୍ୟାସ୍ୱରକୁ ଲୁଚାଇବାକୁ ଖୁବ୍ ତତ୍ପର । କବି ଶ୍ରୀ ଲେଙ୍କା ଏଇପରି ଆତ୍ମାମ୍ବିକ ସ୍ତରର ଶୃଙ୍ଖଳ ଭିତରୁ ମୁକ୍ତ ରହିଛନ୍ତି । ନିତ୍ସେଙ୍କ ସହ କଣ୍ଠ ମିଳାଇ କବି ଘୋଷଣା କରିଛନ୍ତି ଈଶ୍ୱର ମୃତ । (୬) ଏହା କିନ୍ତୁ ଈଶ୍ୱରଙ୍କ ଅନସ୍ତିତ୍ୱର ପ୍ରମାଣ ନୁହେଁ । ବରଂ ଈଶ୍ୱରଙ୍କ ପାଇଁ କବି ହୃଦୟର ବ୍ୟାକୁଳତା ଅଧିକ ସୁସ୍ପଷ୍ଟ । ମୂଳ ସମସ୍ୟା ହେଉଛି—ମଣିଷମାନେ ଭୁଲ୍ ରାସ୍ତାରେ ଯାଇ ମିଥ୍ୟା ଈଶ୍ୱରଙ୍କ ପାଖରେ ପହଞ୍ଚି ଯାଆନ୍ତି ବୋଲି କବି ତାହାଙ୍କୁ କହି ଦିଅନ୍ତି "ମୃତ ଈଶ୍ୱର" । ଧର୍ମ ମଣିଷକୁ ଯେପରି ଅଥର୍ବ କରିଛି, ଏଇ ଘୋଷଣା ପଶ୍ଚାତରେ ସେଇ ମନୋଭାବଟିକୁ ଦୂର କରିବାର ପ୍ରବଳ ବିଶ୍ୱାସ କବିଙ୍କର ଅଛି । ଅନ୍ୟ ପକ୍ଷରେ, ଶାସ୍ତ୍ର ପ୍ରଚଳିତ ବାକ୍ୟକୁ ବିଶ୍ୱାସ କରି ମୃତ୍ୟୁ ପରେ ଅଖଣ୍ଡ ଶାନ୍ତି ରାଜ୍ୟରେ ପ୍ରବେଶ କରିବାର ପ୍ରଲୋଭନ ଭିତରେ ଲୁକ୍କାୟିତ ଥାଏ ଇହଲୋକର ଜୀବନ ଓ ଜଗତ ପ୍ରତି ପ୍ରଚଣ୍ଡ ଅବିଶ୍ୱାସ ଓ ଘୃଣା । ଆମେ ଦେଖୁଥିବା ଜଗତଠାରୁ ଭିନ୍ନକରୁଥିବା ବସ୍ତୁମାନଙ୍କର ସାମ୍ୟ ନ ଥିବାରୁ ମନରେ ଉଦ୍ରିକ୍ତ ହୁଏ ସଂଶୟ । ତେଣୁ ସବୁ ମନ୍ଦିର, ମସ୍‌ଜିଦ୍, ଗିର୍ଜାକୁ ଈଶ୍ୱରଙ୍କ ସମାଧି ବା କବର ସ୍ଥାନ ରୂପେ ଭାବିବାର ଯଥେଷ୍ଟ କାରଣ ରହିଛି । କବି/ମଣିଷର ଦୀର୍ଘଶ୍ୱାସରେ ଚଳନ୍ତି ଦେବତାର ବ୍ୟବହାରିକ ଔଚିତ୍ୟ ଆଜି ବିସ୍ମୃତ । ମଣିଷର ପୁଞ୍ଜୀଭୂତ ବେଦନା ଓ ହାହାକାରର ପ୍ରତିକାର ପାଇଁ ଈଶ୍ୱର ତାଙ୍କର ସିଂହାସନ ଛାଡ଼ି ଆସିପାରୁ ନାହାନ୍ତି । ସେ ଦୟାନିଧି ନୁହନ୍ତି, ନିର୍ଦ୍ଦୟ ନିଧି । ନଚେତ୍ ଅତି ଆପଣାର ସନ୍ତୁ-କଣିକୁ ଧ୍ୱଂସ କରିବାକୁ ଏବଂ ପୃଥିବୀକୁ ଅପାଣ୍ଡବା କରିବାକୁ ସେ କେବେ ସାହସ କରି ନ ଥାନ୍ତେ । କବି ସେଥିପାଇଁ ଅତ୍ୟନ୍ତ କ୍ଷୁବ୍ଧ ହୋଇ 'ଈଶ୍ୱର'ଙ୍କୁ 'ଖାନ୍‌ନଗର ଜଗୁଆଳି' (୭) ବା ଚଣ୍ଡାଳ କହିବାକୁ ଦ୍ୱିଧାବୋଧ କରି ନାହାନ୍ତି ।

କମଳାକାନ୍ତ ନିର୍ଦ୍ଦିଷ୍ଟ ଧର୍ମ ସମ୍ପ୍ରଦାୟ ପ୍ରତି ବିଦ୍ବେଷ ମନୋଭାବ ପୋଷଣ କରି ନାହାନ୍ତି । କିନ୍ତୁ ମଣିଷର ଭୀରୁତା ଓ ଦୁର୍ବଳତାକୁ ଲୁଚାଇ ଦେବା ପାଇଁ ଯେଉଁ ଉଦ୍ୟମ ହୋଇ ଆସୁଛି, ସେ ତା'ର ବିରୁଦ୍ଧାଚରଣ କରିଛନ୍ତି । ନିଜର ସ୍ଥିତିକୁ ବଜାୟ ରଖି ପୁରୁଷ ସାଜିବାର ଦୂରନ୍ତ ଆଶାକୁ କବି ଶ୍ରୀ ଲେଙ୍କା ତୀକ୍ଷ୍ଣ ସମାଲୋଚନା କରି କହନ୍ତି—

---

୬ । 'ପଦାକୁ କାଢ଼ିଲେ ଗୋଡ଼'—'ଇମ୍ପିବାର ବେଳ' ।

୭ । 'କି ହାଏ କଷ୍ଟେ ଅବା ମରେ'—'ଗାଁଚ ଗା' ନାଚରେ ପକ୍ଷୀ' ।

"ଯେଉଁମାନେ ଗୋଡ଼େ ଗୋଡ଼େ ଜଗନ୍ତି
ମୂର୍ଖଙ୍କୁ, ଧର୍ମିଙ୍କୁ, ଧର୍ମାତ୍ମାମାନଙ୍କୁ
ଉର୍ମିଳ ମଣିର ଶୁଭଚାଙ୍କୁ, ମୋର ଗୋଟେ
ଦୁର୍ଗନ୍ଧିତ ବିଶ୍ୱାସ ଯେ : କଳା କଟମଟି,
ମାଉଣା, ଅଉଣା ଅଙ୍ଗାଳୁଆକୁ
ସଜାସ ଠୁଙ୍କି ଠୁଙ୍କି, ଲୋମଶ କାଲୁବାଲୁଆ
କଣ୍ଟାଳିଆ ଉଲଙ୍କ ବୋଥଳର ନାଲି
ପକେଟରୁ ଅଷ୍ଟୋତ୍ତର ଶତ ନାମରେ ଝୁଙ୍କି ଝୁଙ୍କି
ଠିକ ଠିକ୍ ଚହ୍ନନ୍ତି ନିଜକୁ, ନିଜ
ଭିତର ଘରର ବାମ୍ଫୁ ଥିବା ଚତୁର୍ଭୁଜ ମୂର୍ତ୍ତିକୁ
ଯେ : ଏମାନଙ୍କ ନା ଶୁଣିଲେ
କାନ ଝାଁ ଝାଁ ହୁଏ, ଏମାନଙ୍କ ମଙ୍ଗଳାଷ୍ଟକ
ରେ ବିଦାଗ ହୋଇଯାଏ ଅଣାସ୍ପୃଷ୍ଟ ମଣିଷ ।"
( ନବ୍ୟ ନିଯୁମିତ—୪ )

ସାମ୍ପ୍ରଦାୟ ଓ ଜାତ୍ୟନ୍ଧତା ଭିତରେ ଈଶ୍ୱର ଆଜି ବନ୍ଦୀ । ଅହଙ୍କାର ଓ ଈର୍ଷାର ଜାଲ ନୈତିକତାର ବନ୍ଧନକୁ ଭାଙ୍ଗିଦେବାର ଦୃଢ଼ ପ୍ରୟାସ କରୁଛି । ଏଇ ସବୁ ସ୍ୱାର୍ଥପରତାଧର୍ମୀ ପ୍ରବୃତ୍ତି ଈଶ୍ୱରଙ୍କ ଉପରେ ଆରୋପ କରି ମଣିଷ ନିଜର ଈର୍ଷାଚେତନାର ଠିକଣା ସଂଗ୍ରହ କରିବାରେ ବ୍ୟସ୍ତ । ସେଥିପାଇଁ କବି କହନ୍ତି—"ଈଶ୍ୱର : ସମସ୍ତ ବିକୃତ ଚିନ୍ତାର/ ସ୍ୱର୍ଣ୍ଣକାନ୍ତ ମୁନାର ମନ୍ଦିର ।" (ମୁଁ ଓ ଈଶ୍ୱର—ଝସିବାର ବେଳ) । ଅଥବା "ବିଷ ଭାଣ୍ଡରେ ଟୋପେ ଅମୃତ /ଭଳି ନାରାୟଣର ନାଁ । ଅମୃତ କୁଣ୍ଡର/ ଟୋପାଏ ବିଷ ଭଳି ନାରାୟଣ" (ଅରକ୍ଷକୁ ରଖ ନାରାୟଣ—ଝସିବାର ବେଳ) । ତେବେ ସେ ଈଶ୍ୱର ଜଣକ ମଣିଷର ହାତ ଗଢ଼ା ମୂର୍ତ୍ତି ଭିନ୍ନ ଆଉ କେହି ନୁହନ୍ତି । କାବ୍ୟନାୟକ ସେଇ ମଣିଷ ଜାତିର ପ୍ରତିନିଧିତ୍ୱ କଲାବେଳେ କହେ - "ଯେ ଈଶ୍ୱର : ସେ ମୁଁ" (ମୁଁ ଓ ଈଶ୍ୱର) । ଏହା ଆପାତତଃ ବ୍ରହ୍ମବାଦର ବାକ୍ୟ ପରି ଶୁଣାଯାଉଥିଲେ ବି 'ସୋଽହଂ', 'ଅୟମାତ୍ମା ବ୍ରହ୍ମ', 'ବ୍ରହ୍ମବିଦ୍‌ବ୍ରହ୍ମୈବ ଭବତି' ସହ କୌଣସି ସଙ୍ଗତି ରକ୍ଷା କରେ ନାହିଁ । କାରଣ କବିର ହୃଦୟ ଗର୍ବ, ଦମ୍ଭ, ଅଭିମାନର ବଡ଼ ଦେଉଳ ! ନିଜ ଲାଭ କ୍ଷତିର ହିସାବ ବୁଝିଥାଏ କବିର, ଈଶ୍ୱରଙ୍କର ନୁହେଁ । ମଣିଷ ଗଢ଼ା ଈଶ୍ୱର କେବଳ ପୁଣ୍ୟରେ ଭାଗ ବସାନ୍ତି, ପାପରେ ନୁହେଁ । କାବ୍ୟ-ନାୟକ ତେଣୁ ଏପରି ଈଶ୍ୱରଙ୍କୁ ନିଜ ଜୀବନତନ୍ତ୍ରର ମଙ୍ଗୁଆଳ ରୂପେ କପଟ

କା ଗ୍ରହଣ କରିବେ ? ଏହି ଲକ୍ଷ୍ୟଭ୍ରଷ୍ଟ ବାଧାତାର ପ୍ରତି ନାବାଳକମାନଙ୍କର ସମ୍ଭ୍ରମ ବୋଧ ଜାଗ୍ରତ ନ ହେବା ସ୍ୱାଭାବିକ । ତାଙ୍କ କଥା ଶୁଣିଲେ ନାବାଳକଙ୍କର ମୁହଁରେ ତାଳି ପଡ଼ିଯାଏ ନାହିଁ କି ହାଲୁକାହୋଇ ହୋଇଯାଏ ନାହିଁ । କେଉଁ ଅଜଣା ଧୂଳି ଭରା ଗମ୍ଭୀର କନ୍ଦରେ ଥିବା ଠାକୁରାଣୀଙ୍କ ଉଦ୍ଦେଶ୍ୟରେ ସେ ନିଜର ମୁଣ୍ଡ ନୁଆଁଇ ସମ୍ମାନ ଜଣାଇବାକୁ ଆଗଭର ହୋଇପାରନ୍ତି ନାହିଁ । ମଣିଷ ସବୁବେଳେ ନିଜର ସ୍ୱାଧୀନତା ଦାବୀ କରିବାରେ ଏତେ ଅଭ୍ୟସ୍ତ ଯେ ସେ କାହାର ଦାସାନୁଦାସ ହେବା ପାଇଁ ଆଗ୍ରହର ପ୍ରକାଶ କରେ ନାହିଁ । ଈଶ୍ୱରଙ୍କୁ ମୃତ ବୋଲି ଘୋଷଣା କରିବା ମୂଳରେ ଏହା ଅନ୍ୟତମ କାରଣମାନ । ମାତ୍ର ମଣିଷ ଯେଉଁ ସ୍ୱାଧୀନତା ସପକ୍ଷରେ ଯୁକ୍ତି କରେ ତାହା କେବେ ଅବାଧ ନୁହେଁ, ତା' ମୂଳରେ ରହିଛି କିଛିଟା ବନ୍ଧନ, ଯାହାକୁ ମାନି ମଣିଷକୁ ନିଜର କର୍ମପନ୍ଥା ନିର୍ଦ୍ଧାରଣ କରିବାକୁ ପଡ଼େ । ତେବେ ତାର ମୌଳିକ ଗୁଣଗୁଡ଼ିକର ବିକାଶ ପାଇଁ ଯେଉଁ ସବୁ ଜିନିଷ ବାଧା ସୃଷ୍ଟି କରେ, ତାହାକୁ ନିଜ ଚଲାବାଟରୁ ଦୂରେଇ ଦେବାକୁ ଚାହେଁ ମଣିଷ । ଏହି ଦୃଷ୍ଟିରୁ ଦେଖିବାକୁ ଗଲେ କବି ଶ୍ରୀ ଲେଙ୍କା ଜଣେ ବିଦ୍ରୋହଶୀଳ ଶିଳ୍ପୀ । ସେଥିପାଇଁ ସେ ହୁଏତ ଭକ୍ତିକତା ବିପକ୍ଷରେ ସ୍ୱରଉତ୍ତୋଳନ କରନ୍ତି, କିନ୍ତୁ ଅନ୍ତରରେ ସେଇ ବିରାଟ ସତ୍ତା ପ୍ରତି ତାଙ୍କର ଆସ୍ଥା ବେଶ୍ ଦୃଢ଼ଥାଏ । ଦିନସର ଉଜ୍ଜ୍ୱଳ ଆଲୋକରେ ଲଣ୍ଠନଟିଏ ଧରି ଈଶ୍ୱରଙ୍କୁ ଖୋଜିବା ଭିତରେ ନାସ୍ତିବାଦ (Nihilism) ର ସ୍ୱରୂପ ସ୍ପଷ୍ଟଭାବେ ଫୁଟି ପଡ଼ିଯାଏ । ଏତେ ବଡ଼ ନାସ୍ତିବାଦୀ ଦାର୍ଶନିକ ନିତ୍ସେ ଈଶ୍ୱରଙ୍କୁ ଅସ୍ୱୀକାର କରି ହତ୍ୟାକାରୀର ଯନ୍ତ୍ରଣାରେ ସଢ଼ିଥିବା ପରି ଅନୁଭବ କରିବା କିଛି ସାଧାରଣ କଥା ନୁହେଁ । ଶ୍ରୀ ଶରତକୁମାର ମହାନ୍ତି ତାହାର ଏକ ଚମତ୍କାର ବିବରଣୀ ଦେଇଛନ୍ତି । "ବଜାର ଗହଳିରେ ହଜିଲା ଜିନିଷକୁ ଖୋଜିଲା ପରି ପାଗଳ (ନିତ୍ସେ) ଚିତ୍କାର କରୁଥାଏ—'ମୁଁ ଈଶ୍ୱରଙ୍କୁ ଖୋଜୁଛି ! ମୁଁ ଈଶ୍ୱରଙ୍କୁ ଖୋଜୁଛି ।'" ଉପସ୍ଥିତ ଅନେକ ନାସ୍ତିକ ଦର୍ଶକଙ୍କ ମଧ୍ୟରେ ଏହା ହାସ୍ୟରୋଳ ସୃଷ୍ଟି କଲା । ସେମାନଙ୍କ ମଝିରେ ପଶିଯାଇ ପାଗଳ ସମସ୍ତଙ୍କୁ ତରବଟି ଚାହିଁ କହିଲା—"ଈଶ୍ୱରଙ୍କର କଣ ହେଲାଣି ଜାଣିକି ? ଆମେ ତାଙ୍କୁ ହତ୍ୟା କରିଛୁ । ତମେ, ମୁଁ, ଆମେ ସମସ୍ତେ ତାଙ୍କର ହତ୍ୟାକାରୀ । କିନ୍ତୁ ଆମେ ଏହା କଲୁ କିପରି ? ସମୁଦ୍ରକୁ ଆମେ ଶୋଷି ପାରିଲୁ କିପରି ? ଦିଗ୍‌ବଳୟକୁ ପୋଛି ଲିଭାଇ ଦବାକୁ ଆମକୁ ସ୍ପଞ୍ଜ ଦେଲା କିଏ ? ପୃଥିବୀକୁ ତାର ସୂର୍ଯ୍ୟଠାରୁ ଛିନ୍ନେଇ ଆଣି ଆମେ କଲୁ କ'ଣ ? ବର୍ତ୍ତମାନ ଏହାର

୮ । 'ସ୍ୱର୍ଗ ପରେ ହୁଏତ'—'ଖସିବାର ବେଳ' । 'ସ୍ୱର୍ଗ ପରେ ହୁଏତ/ହାଲକ ଶୁଣିଥିବ ଶବ୍ଦମାନଙ୍କର/ରାସ୍ତା ବନ୍ଦ ହୋଇଥିବ/ଈଶ୍ୱର ନାମକ ଚଣ୍ଡାଳର ।'

ଗଢ଼ କୁଆଡ଼େ । × × × ଆମଠାରୁ ଏ ରକ୍ତର ଦାଗ ଧୋଇବ କିଏ ? କେଉଁଠି ଧୋଇ ହେଲେ ଆମେ ପରିଷ୍କୃତ ହେବୁ ?······ଈଶ୍ୱର ମୃତ ! ଈଶ୍ୱର ଆଉ ନାହାନ୍ତି ! ଆମେମାନେ ତାଙ୍କୁ ମାରିଦେଲୁ ! ଆମ ପାଇଁ ଆଉ କି ସାନ୍ତ୍ୱନା ଅଛି" (୯) ।

କମଳାକାନ୍ତଙ୍କ ପରି ଅନ୍ୱେଷାରୁ ଈଶ୍ୱର ପ୍ରଥମେ ନିରୁଦ୍ଦିଷ୍ଟ । (୧୦) ପରେ ତାଙ୍କୁ ଫାଶିଖୁଣ୍ଟରେ ଝୁଲାଇବାର ଇଚ୍ଛା ପ୍ରବଳ । (୧୧) ସେଇ ହଜିଲା ଈଶ୍ୱର ପ୍ରତି ମଣିଷର ଶିଶୁ ପ୍ରଶ୍ନରେ ଲୁକ୍‌କାୟିତ । ପ୍ରତି ମଣିଷ ସେଇ ନିରୁଦ୍ଦିଷ୍ଟ ଈଶ୍ୱର କେନ୍ଦ୍ର ।

"ହଜିଲା ଲୋକର ଚିହ୍ନ, ବର୍ଣ୍ଣ ଏବଂ ଅନ୍ତର୍ନିଳ ଠିକଣା
ଲୁଚିଛି ତୁମର ରକ୍ତ ନଦୀର ମୁହାଁଣେ ।
ତୁମର ବ୍ୟକ୍ତିତ୍ୱ ଖଣ୍ଡେ ବନ୍ଧା ସେଇ ବ୍ୟକ୍ତି,
ତୁମେଇ ତା'ର କେନ୍ଦ୍ର । ତୁମେ ତା'ର
ବିମଳିନ ଅପରାହ୍ନ ଶୀତର ବରଢ ।"

(ନିରୁଦ୍ଦିଷ୍ଟ ବ୍ୟକ୍ତି ସମ୍ପର୍କରେ)

ମଣିଷ ନିଜକୁ ଦେବତାର ସ୍ଥଳାଭିଷିକ୍ତ କରିବା ପାଇଁ ଅକ୍ଳାନ୍ତ ପ୍ରଚେଷ୍ଟା କରୁଛି । ତେଣୁ ଈଶ୍ୱରଙ୍କୁ ପାଗଳ, ବିକୃତ ମସ୍ତିଷ୍କ କହି ପୃଥିବୀରୁ ବିଦାୟ ଦେବାକୁ ସେ ନୀତି ଗ୍ରହଣ କରିଛି । ଈଶ୍ୱରହୀନତାର ସମସ୍ତ ଦିଗକୁ ଚିହ୍ନିକରି ପରୀକ୍ଷିଛନ୍ତି କମଳାକାନ୍ତ ଏବଂ ଈଶ୍ୱରଙ୍କ ସନ୍ଧାନ ପାଇଛନ୍ତି ବରଗଛ ଡାଳ ଓ ଶିମୁଳି ଗଛର ଡାଳରୁ । "ତୁମେ ଯାଙ୍କୁ ଖୋଜୁଅଛ ଦେଖିଛି ତାହାଙ୍କୁ /ଗତକାଲି ଦିନ ଦ୍ୱିପ୍ରହରେ / ଏକ ଝଙ୍କା ବରଗଛ ଡାଳେ/ ବସି ସେ ବଂଶୀ ଫୁଙ୍କୁଥିଲେ, ଓ /କଦବା କେମିତି କେହି ସେଇ ବାଟେ ଗଲେ/ କହୁଥିଲେ—ଆଇ ହୋ, ମୁଁ କ'ଣ ପାଗଳ ଭଳି /ବଂଶୀ ବଜାଉଛି ? ମୁଁ କ'ଣ ଏ ସାରା ଗୋଲକଧାମ ଉନ୍ମୁକ୍ତଶାଳକୁ ସିଧା ସିଧା ଏଠିକି ଆସିଛି ?" ନାସ୍ତିବାଦୀ କବି ଈଶ୍ୱରଙ୍କ ଅସ୍ତିତ୍ୱକୁ ଲୋପ କରିଦେବା ପାଇଁ ଖୁବ୍ ବ୍ୟାକୁଳ । ତେଣୁ ସବୁ କଥାକୁ ଅର୍ଥହୀନ କହି ଈଶ୍ୱରୀୟ ସତ୍ତାର ଅନାବଶ୍ୟକତାକୁ ପ୍ରାଣେ ପ୍ରାଣେ ଉପଲବ୍ଧି କରିଛି । "ହେ ମୁହୂର୍ତ୍ତର ଈଶ୍ୱର, ହେ ପ୍ରତ୍ୟେକ/ଲତା ବଲ୍ଲତାର ସଂସ୍କାର, ଆଜି/ ତୁମର ଫାଶି ପାଇବାର ଦିନ ।"

---

୯ । ମହାନ୍ତି, ଶରତ କୁମାର—ଅସ୍ତିତ୍ୱବାଦର ମର୍ମକଥା—ପୃ. ୧୩୭ ।
୧୦ । 'ନିରୁଦ୍ଦିଷ୍ଟ ବ୍ୟକ୍ତି ସମ୍ପର୍କରେ'—କବିତାର ମୁହଁ ।
୧୧ । 'ଈଶ୍ୱରଙ୍କ ଫାଶି ପାଇବାର ଦିନ'—ଅନ୍ତତଃ ନିଷ୍ପାପ ।

(ଈଶ୍ୱର ଫାଶି ପାଇବା ଦିନ) ଧର୍ମର ଦର୍ଶନ ଓ ତାର ସାମାଜିକ ପ୍ରୟୋଗ ଭିତରେ କୌଣସି ସାମ୍ୟ ନ ଥିବାରୁ କବି ଶ୍ରୀ ଲେଙ୍କା ତାହାକୁ ଆନ୍ତରିକ ଭାବେ ଗ୍ରହଣ କରି ପାରି ନାହାନ୍ତି । ଇହଲୋକର ପୃଥିବୀ ଛାଡ଼ି ପରଲୋକର ପ୍ରଲୋଭନରେ ସାଂପ୍ରତିକ ଜୀବନର ଦୁଃଖ, ଯନ୍ତ୍ରଣା, ଦାରିଦ୍ର୍ୟକଷଣ ଅସ୍ୱୀକାର କରିବାର ସମ୍ଭାବନାକୁ ଶ୍ରୀ ଲେଙ୍କା ଘୃଣା କରନ୍ତି । ଅସାମାଜିକ ଧର୍ମାନୁଷ୍ଠାନ ବିରୁଦ୍ଧରେ କବିଙ୍କ ବିବେକର ସ୍ୱର ଜାଗ୍ରତ ତଥା ବିଚଳିତ । "ତୁମ ଶ୍ରଦ୍ଧାର ଶୂନ୍ୟରେ /ମୁଁ : ଫାଶିଖୁଣ୍ଟରେ ଝୁଲାଇବି/ତୁମ ଅନାତ୍ମୀୟ ଦୁଃଖର ୧୦୬ ଖଣ୍ଡ /ହାଡ଼ର କଙ୍କାଳ ।" ତେବେ ଈଶ୍ୱରଙ୍କଠାରୁ ମୁକ୍ତି ପାଇ କାବ୍ୟନାୟକ ଶୂନ୍ୟତାର କବଳରୁ ଖସି ଯାଇ ପାରନ୍ତି ନାହିଁ । ନିଜର କଣ୍ଟକିତ ଓ ରକ୍ତାକ୍ତ ବ୍ୟକ୍ତିତ୍ୱକୁ ଈଶ୍ୱରଙ୍କ ସର୍ବାଙ୍ଗରେ ବୋଳି ଦେଇ ଅନ୍ତିମ ସାନ୍ତ୍ୱନା ପାଇବାର ଇଚ୍ଛା ଥିଲେ ବି କାବ୍ୟନାୟକ ସେଥିରୁ ବଞ୍ଚିତ । ତେଣୁ ଈଶ୍ୱର ମଣିଷର ଶୂନ୍ୟତାର ଶିକାର ହେବାକୁ ବାଧ୍ୟ ହୋଇଛନ୍ତି ଏବଂ ଏକ ଅମୁହାଁ ଦେଉଳ ଭିତରେ ସେଇ ଈଶ୍ୱରୀୟ ସତ୍ତାକୁ ନିଃସଙ୍ଗ ମହିମ୍ନତା ଭିତରେ ରଖି ଦେବାକୁ କାବ୍ୟନାୟକ ଉଦବିଗ୍ନ । ଏହା ନିତ୍‌ସେଙ୍କ ଧର୍ମଗତ ନିଷ୍ଠୁରତାର ପରମ୍ପରାନୁସାରୀ ।

ତେବେ ଈଶ୍ୱରଙ୍କୁ ଫାଶୀ ଦେଇ କବି କ'ଣ ଏକ ଅପସୃୟମାନ ଶୂନ୍ୟତାର ଆଶା ରଖନ୍ତି ? ଏପରି ସମ୍ଭାବନା ବୋଧହୁଏ ଭ୍ରାନ୍ତିପୂର୍ଣ୍ଣ । ଶ୍ରୀ ଲେଙ୍କା ଈଶ୍ୱରଙ୍କୁ ଫାଶି ଦେବାର ପରୀକ୍ଷାମୂଳକ କାର୍ଯ୍ୟରେ ଅବତୀର୍ଣ୍ଣ ହୋଇଥିବାର ଏହା ଏକ ଚରମ ନିଷ୍ଠୁରତାପୂର୍ଣ୍ଣ ନଜିର୍ ଛଡ଼ା ଆଉ କ'ଣ ହୋଇପାରେ ? କିନ୍ତୁ ଈଶ୍ୱରଙ୍କୁ ମାରି ଦେଇ ତାଙ୍କ ଅନସ୍ତିତ୍ୱର ବୋଝ ନିଜ ମୁଣ୍ଡ ଉପରକୁ ନେଇ ବୁଲିବାର ଦୁଃସାହସ କାହିଁ କବିଙ୍କର ? କବିଙ୍କର ଆନ୍ତରିକତାର ଅଭାବ ତାଙ୍କର ଏଇ ସ୍ୱପ୍ନକୁ ବାସ୍ତବାୟିତ କରିବାର ଅନାଗ୍ରହ ଭିତରେ ସୂଚିତ ହୁଏ ନାହିଁ କି ? ବୋଧହୁଏ ସେଥିପାଇଁ ଈଶ୍ୱରଙ୍କ ପୁନର୍ଜୀବନରେ ସେ ପକ୍ଷପାତୀ । ଈଶ୍ୱରଙ୍କୁ ଫାଶିଖୁଣ୍ଟରେ ଚଢ଼ାଇ ଗ୍ଲାନିମୁକ୍ତ ଜୀବନ ବଞ୍ଚିବାର ପ୍ରୟାସ ବ୍ୟର୍ଥ ହୋଇଯାଇଛି କବିଙ୍କର । କୋକୁଆ ଭୟରୁ ନିଜକୁ ମୁକ୍ତ କରିବା କବିଙ୍କ ପକ୍ଷେ ସମ୍ଭବ ହୋଇ ନାହିଁ ।

"ଈଶ୍ୱରଙ୍କ ଶବାଧାରରେ ତୋର
ଖଇରିଆ ନିଶ୍ୱାସର ମଣ୍ଡଣୀ ।
ଚଡ଼୍ ଚଡ଼୍ କରି ଶବ୍ଦ କରୁଚି
ନିର୍ବେଦତା, ଅକୃପଣ ସନ୍ତୋଷ ।
ଚଡ଼ ନିଆଁ ଜଳୁଚି ଯେ :
ତୋ ଈଶ୍ୱରର ମୃତ୍ୟୁ ନାହିଁ, ମୃତ୍ୟୁ ନାହିଁ ।"

(ପୁନର୍ଜୀବନ—ଖସିବାର ବେଳ)

ନିଜକୁ ଛଳନାଶୀଳ ଭାବେ ଚିହ୍ନିବାର ଆବଶ୍ୟକତାରୁ ଈଶ୍ୱରଙ୍କ ଦୂରେଇ ଦେବାର ଇଚ୍ଛା କାବ୍ୟନାୟକଙ୍କଠାରେ ଜନ୍ମି ଥିଲା । ଈଶ୍ୱରଙ୍କ 'ପ୍ରତାରଣାର ଭିନ୍ନ ନାମ' (କ୍ଷମଣୀୟ— ଝରିବାର ବେଳ) କହି ଅସ୍ୱୀକାର କରିବାର ଅବାନ୍ତର କାମନାରେ ଆଚ୍ଛନ୍ନ ହୋଇଥିଲା କାବ୍ୟନାୟକ । କବି କହିଥିଲେ—"ଯଦି ପାରୁଚ/ନିଜ ବନ୍ଧୁଙ୍କରେ ନିଜେ/ସାକ୍ଷୀ ଦିଅ, ଓ ସାଦେହେଲେ/ଖୁଞ୍ଜ ନାହିଁ ନିର୍ଦ୍ଦେଶ ଆସ୍ଥାନକୁ;/ ଈଶ୍ୱରଙ୍କ କବର ଦିଅନ୍ତୁ ।" (ଯେଉଁଠି ଅଛ ଯେଉଁ ଅବସ୍ଥାରେ— ଗୀତ ଗା' ନା ରେ ପକ୍ଷୀ) । କିନ୍ତୁ କବିଙ୍କର ଏ ଅଦ୍ଭୁତ ଆଶା ଭାଙ୍ଗି ପଡ଼ିଛି । ତା' ସହିତ ଭାଙ୍ଗି ଯାଇଛି ଈଶ୍ୱରଙ୍କ ଅନସ୍ତିତ୍ୱର ପୃଥିବୀ । ଅଥଚ ଈଶ୍ୱରଙ୍କୁ ଭୁଲିବାର ବିପଦ ସମ୍ପର୍କରେ ସେ ଆଦୌ ସଚେତନ ନ ଥିଲେ । ସେଥିପାଇଁ ଆଣ୍ଟୁ ଘର ଅନ୍ଧାରିଆ କୋଣରେ ଗଡ଼ୁଥିବା ଠାକୁରଙ୍କ ଖଣ୍ଡଳିକୁ ସେ ବିଶ୍ୱାସର ପରିମଳ ଦୃଷ୍ଟିରେ ଦେଖିବା ସମ୍ଭବ ହୋଇପାରେ ନାହିଁ । କାବ୍ୟନାୟକ ବୋଉକୁ ପଚାରିଛନ୍ତି—"ଦିନେ ଚୁପ୍ ଚୁପ୍ ବୋଉକୁ କହିଲି : ବୋଉ, କି ଦିଅଁକୁ ନଇଁ ମୁଣ୍ଡ ? ନାଁ ତା'ର କ'ଣ ?/ କେଉଁ ମନ୍ତ୍ର ଜପିଲେ ସେ ଖୁସି ହୁଏ ? କେମିତି ତା'/ଦେହର ଗଢ଼ଣ ? ଥରେ ହେଲେ ଦେଖାନ୍ତୁ ନି./କହନ୍ତୁନି ତୋ ଠାକୁର କି କମିଆ ଜାଣେ :" (ଖୁଜା— ଝରିବାର ବେଳ) । କବି ଅନୁଭବ କରିଥିଲେ, ଈଶ୍ୱରଙ୍କ ସତ୍ତାକୁ ଛୁଇଁବା ପାଇଁ ମଣିଷର ସମଗ୍ର ଜୀବନକୁ ଉତ୍ସର୍ଗ କରିଦେବାରେ ନା ଥାଏ ଈଶ୍ୱର ନା ଥାଏ ଜୀବନ ପ୍ରତି ଚିନ୍ତା । (୧୨) ମାତ୍ର କବିଙ୍କର ଏ ଧାରଣା ବଦଳି ଯାଇଛି । କେବେ ଧର୍ମବିଶ୍ୱାସର ମୂଳଦୁଆ ଯେ ବଦଳି ଯାଇଛି, ଏଥିରେ କବି ସବୁବେଳେ ଏକମତ ।

ବିଜ୍ଞାନ, ଚୈତିକ ବିପ୍ଳବର ଫଳଶ୍ରୁତି ସ୍ୱରୂପ ଧର୍ମାନୁଷ୍ଠାନଗୁଡ଼ିକ ମଣିଷ ଓ ସମାଜଜୀବନର କେନ୍ଦ୍ରସ୍ଥଳରୁ ଅବହେଳିତ ଭାବେ ବିଦାୟ ନେଇଛି । ତଥାପି କବି ମନରୁ ଈଶ୍ୱର ଓ ଧର୍ମର ସ୍ୱପ୍ନ ଯେ ନିର୍ମୂଳ ହୋଇ ଯାଇଛି, ଏପରି ନୁହେଁ । ବିଂଶ ଶତାବ୍ଦୀର ଦୁଇଜଣ କଣିଷ୍ଠ ଚିନ୍ତାବିତ୍ କାର୍ଲମାର୍କସ ଓ ନିତ୍‌ସେଙ୍କ ଦର୍ଶନ ଧର୍ମର ପରାଭୂତ ତଥା ମାନବିକତା ବିରୋଧୀ କାର୍ଯ୍ୟକଳାପ ପ୍ରତି ତୀବ୍ର ବାକ୍ୟବାଣ ପ୍ରୟୋଗକଲେ ବି ଐଶୀଚେତନାର ମହାକାଶରୁ ମଣିଷ ମୁକ୍ତ ହୋଇପାରେ ନାହିଁ । ଋଷିମାନଙ୍କ ନାସ୍ତିବାଦୀ ବକ୍ତବ୍ୟ "ଭସ୍ମୀଭୂତସ୍ୟ ଦେହସ୍ୟ ପୁନରାଗମନଂ କୁତଃ ?"ର ଉତ୍ତର ଆଜି ହୁଏତ ମିଳି ସାରିଛି । ମୃତ୍ୟୁ ପରେ ଜୀବନର ସତ୍ତା ଉପରେ ବହୁ ଗବେଷଣା, ସାଧନାକୁ ଭିତ୍ତି କରି ପୃଥିବୀରେ ଶହ ଶହ ଗ୍ରନ୍ଥ ରଚନା କରାଯାଇଛି; ତଥାପି ସନ୍ଦେହର ମାୟାଜାଳରୁ ମଣିଷ ମୁକ୍ତ ପାଇ ପାରି ନାହିଁ । ଯୁଗେ ଯୁଗେ

---

୧୨ । ମହାନ୍ତି, ରଜନୀକାନ୍ତ—'ଝରିବାର ବେଳ' ଶବ୍ଦ—ଝଙ୍କାର, ଡିସେମ୍ବର —୧୯୮୨ ।

ପ୍ରଗତିଶୀଳ ଚିନ୍ତା ବିଚୁଇଲରେ ଧର୍ମର ବିରୋଧ ସ୍ୱାଧୀନ ମଣିଷ ପ୍ରାଣରେ ଦେଇଛି ଗଭୀର ଆଘାତ । ଗାଲିଲିଓଙ୍କ ମତବାଦକୁ ଖ୍ରୀଷ୍ଟଧର୍ମ ସ୍ୱୀକୃତି ଦେଇ ନାହିଁ । ବାଧ୍ୟ ହୋଇ ତାଙ୍କୁ ଧର୍ମ ନିକଟରେ ମଥା ନୁଆଁଇବାକୁ ପଡ଼ିଛି । କବି ଏସବୁ ଉଗ୍ରମା ପ୍ରତି ଅଶ୍ରଦ୍ଧା ପୋଷଣ କରିବା ସ୍ୱାଭାବିକ । କିନ୍ତୁ ଈଶ୍ୱରଙ୍କୁ ଅବମାନନା କରିବା ଫଳରେ ଯେଉଁ ସାମାଜିକ ମୂଲ୍ୟବୋଧ, ନୈତିକ ଶୃଙ୍ଖଳା, ବ୍ୟକ୍ତି ଜୀବନର ସଂଯମବୋଧ ଭୁସ୍ମୁଡ଼ି ପଡ଼ିଥିଲା ଆଧୁନିକ ସମାଜ ତାର ବିକଳ୍ପ ଭିତ୍ତିଭୂମିଟିଏ ଏପର୍ଯ୍ୟନ୍ତ ଗଢ଼ି ପାରିନି ନାହିଁ । ବରଂ ଆଧୁନିକ କାଳରେ ଏକ ବିଶୃଙ୍ଖଳ ଜଡ଼ସ୍ୱାର୍ଥଗ ଜଗତ ଭିତରେ ଉବୁଟୁବୁ ହେବାକୁ ସେ ଅଧିକ ପସନ୍ଦ କଲା । ଫଳତଃ ଯନ୍ତ୍ରଣା, ନୈରାଶ୍ୟରୁ ମୁକ୍ତି ତା ପକ୍ଷରେ ହେଲା ସ୍ୱପ୍ନ । ତେବେ ଏଥିରୁ ଗୋଟାଏ ଲାଭ ହେଲା ଯେ, ମଣିଷ ଭଗବାନଙ୍କୁ ବିଶ୍ୱାସ ନ କରି ନିଜ ଶକ୍ତି ଉପରେ ବିଶ୍ୱାସ କଲା । କିନ୍ତୁ ପ୍ରଶ୍ନ ଉଠେ, ଏହା ଦ୍ୱାରା ମଣିଷ ଅନ୍ତିମ ବିଜୟ ଲାଭ କରି ପାରିବ କି ? ଏ ଦ୍ୱନ୍ଦ୍ୱରୁ ଆଜିର ମଣିଷ ତଥାପି ମୁକ୍ତି ପାଇ ପାରି ନାହିଁ । କବି ଶ୍ରୀ ଲେଙ୍କା ଏଇ ମଣିଷ ଜାତିରୁ ତ ଏକ ପୃଥକ ସତ୍ତା ନୁହନ୍ତି ! ତେଣୁ ଈଶ୍ୱରଙ୍କ ପ୍ରତ୍ୟାଖ୍ୟାନ ଦ୍ୱାରା ସେ ଏଇ ଦ୍ୱନ୍ଦ୍ୱାତ୍ମକ ଅବସ୍ଥାରୁ ଦ୍ୱନ୍ଦ୍ୱାତୀତ ହେବାର ଆଶା ରଖିଛନ୍ତି କି ? ବସ୍ତୁତଃ, ଏହା ତାଙ୍କ ପକ୍ଷରେ ଏକ ଅସମ୍ଭବ ବ୍ୟାପାର । ହାରିବା ନିଶ୍ଚିତ ଜାଣି ସେ ଈଶ୍ୱରଙ୍କ ବିରୁଦ୍ଧରେ ଲଢ଼ିଛନ୍ତି ବୋଲି କହିବା ଅଧିକ ଯୁକ୍ତିଯୁକ୍ତ । କମଳାକାନ୍ତଙ୍କ ମେଟାଫିଜିକାଲ ଦୃଷ୍ଟିଭଙ୍ଗୀ ବୌଦ୍ଧିକ ଅନ୍ୱେଷଣ ଗଭୀର ଚିନ୍ତାମୂଳକ ଅନୁଭୂତିରେ ପରିପୁଷ୍ଟ । ନୂତନ ମନୋବୈଜ୍ଞାନିକ କୌତୂହଳ ତାଙ୍କର ଏଇ ଧରଣର କବିତାକୁ ଏକ ନୂତନ ଆବେଦନକର ସନ୍ଧାନ ଦେବାପାଇଁ ଅଭିପ୍ରେତ । ଇଂରାଜୀ ସାହିତ୍ୟରେ ଜନ୍ ଡନ୍ଙ୍କ ସବୁଠାରୁ ସ୍ୱତନ୍ତ୍ର ଓ ଚିନ୍ତାଶୀଳ ଅଧିବିଦ୍ୟକ କବି କୁହାଯାଏ । କିନ୍ତୁ ସେ ବୌଦ୍ଧିକ ବିଶ୍ଳେଷଣ ଉପରେ ଏତେଟା ଗୁରୁତ୍ୱ ଦେଇ ନ ଥିଲେ । ମାତ୍ର ବିଂଶ ଶତକର ଉତ୍ତର ପାଦରେ କମଳାକାନ୍ତ ଏ ଚେତନାର ବୌଦ୍ଧିକ ଦିଗଟିକୁ ପରିହାର କରି ପାରି ନାହାନ୍ତି । 'ଉତ୍ତରଣ' (୧୯୬୭) ତାହାର ପ୍ରମାଣ :

"ବର୍ତ୍ତମାନ ସମସ୍ତ ବୃଥା ! (?) ମୋ ଆତ୍ମପ୍ରତ୍ୟୟ ଓ ଚେତନାରେ ବାରମ୍ବାର ଭିତର ପ୍ରତ୍ୟାଘାତ ! ବାରମ୍ବାର ମୋ ଛବିର ବାସନା (?) ଲେଲିହାନର ଶିଖାରେ ଚୈତନ୍ୟମୟ ! ହେ ମହାପ୍ରଭୁ ! ଏ ଉନ୍ମୁକ୍ତ ଅଗ୍ନିକୁଣ୍ଡର ନିମନ୍ତ୍ରଣକୁ ପ୍ରତ୍ୟାଖ୍ୟାନ କିପରି କରିବି ? ହେ ମହାବାହୁ ! ଏ ନୀଳ ହ୍ରଦର ଆସକ୍ତିରୁ ନିଜକୁ ମୁକ୍ତ କରିବି କିପରି ?" (ଉତ୍ତରଣ)—ପୃ. ୫ ।

କବି ଡନ୍ ଐଶ୍ୱରିକ ଚେତନାର ଗ୍ୱର ଚଲିବେଳେ ଗୋଟେ ଚମ୍ରାର ଝସଡ଼ା କମ୍ବା ପତ୍ନୀଙ୍କ ଉଦ୍‌ଭାସିତ ଅନୁଭୂତିର ବିଶ୍ଳେଷଣ ଦେବାକୁ ଅସମର୍ଥ ହେଉଥିବେଳେ ଶ୍ରୀ ଲେଙ୍କା ନିଜର ଗଭୀର ବୈଯକ୍ତିକ ଅନୁଭୂତିକୁ ଭାବଗୃଣ ଓ କଲ୍ପନାବୃତ୍ତିଠାରୁ ଅନେକାଂଶରେ ଦୂରେଇ ନେଇ ବୌଦ୍ଧିକତାର ସୁବିସ୍ତୃତ ପ୍ରାଙ୍ଗଣରେ ସଂସ୍ଥିତ ହେବାର ସୁଯୋଗ ଦେଇଛନ୍ତି । ଡନ୍ ଦୈହିକ ସ୍ତରରେ ଆଧ୍ୟାତ୍ମିକ ଚେତନାକୁ ପ୍ରତିଷ୍ଠା ଦେବାର ଆଶା ରଖନ୍ତି । ଏ କାବ୍ୟଚେତନାକୁ ସେ ଉତ୍ତରାଧିକାର ସୂତ୍ରରେ ଲାଭ କରନ୍ତି ଓ୍ୱାଟ୍ (Wyatt) ଓ ସୁରେ (Surrey)ଙ୍କ ଠାରୁ । ଇଟାଲୀୟ ରେନେସାଁର ପ୍ରଭାବରେ ଏଇ ବିଷୟଟି ପ୍ରଥମେ ଗୁରୁତ୍ୱର ସହ ଆଲୋଚିତ ହେବାକୁ ଲାଗେ । ଡନ୍‌ଙ୍କର ଏଇ ଆଧ୍ୟାତ୍ମିକ ପ୍ରୀତି କ୍ୟାଥୋଲିକ୍ ଏବଂ ବ୍ୟକ୍ତିଗତ—ଏଇପରି ଦୁଇ ଭାଗରେ ବିଭକ୍ତ । ତେଣୁ ସେ ତାଙ୍କର କବିତାରେ କହନ୍ତି—"Show me dear christ, thy spouse, so bright and clear !" (୧୬) ସେଇପରି ଆଣ୍ଡ୍ରୁ ମାର୍ଭେଲ୍ (Andrew Marvell) ଙ୍କ ଅନ୍ତିମ ଭାଷ୍ୟ ଥିଲା "Man ought to have trusted God." କବି ଶ୍ରୀ ଲେଙ୍କା କିନ୍ତୁ ପୁରାତନ ଓ ସମ୍ଭାବିତ ବିଶ୍ୱାସର ଦ୍ୱନ୍ଦ୍ୱରେ ତାଙ୍କ କାବ୍ୟଚେତନାର ସମ୍ପ୍ରସାରଣ କରିବାକୁ ବାଧ୍ୟ ହୋଇଛନ୍ତି । ଶୈଳୀଚେତନା ମଣିଷର ଜୀବନବୋଧକୁ ଉଦ୍ଭାସିତ ହୋଇ ନ ଥାଏ କମ୍ବା କୌଣସି କବି ମେଟା-ଫିଜିକାଲ କବି ଭାବରେ ଜନ୍ମ ହୋଇ ନ ଥାନ୍ତି । ଏଇ ଦୃଷ୍ଟିଭଙ୍ଗୀଟି ଗଢ଼ି ଉଠେ ବାସ୍ତବ ଜଗତର ସଂସ୍ପର୍ଶରୁ । ବ୍ୟକ୍ତିର ମନୋବୃତ୍ତି, ପରିବେଶ ଓ ଜୀବନକୁ ଦେଖିବାର ଭଙ୍ଗୀ ଉପରେ ଏହା ନିର୍ଭରଶୀଳ । କମଲାକାନ୍ତଙ୍କ 'ଗିରଧାରୀ ନାଗର", "ବିନୋଦିଆ", 'କଳାକାହ୍ନୁ' କବିତାରୁ ଏହାର ସତ୍ୟତା ଜାଣି ହେବ ।

କବି ଶ୍ରୀ ଲେଙ୍କା ଐଶ୍ୱରିକ ଚେତନାର ଆବେଶକୁ ଯୌବନ କାଳରେ ସ୍ୱୀକାର କରନ୍ତି ନାହିଁ । କବି କାହିଁକି ଯୌବନହିଁ ସ୍ୱୀକାର କରେ ନାହିଁ ଏଇ ଚୈତ୍ରିକ ମନୋଭାବକୁ । ଯେବେ ଯୁବକ ଏଇ ଚର୍ଚ୍ଚା କରେ, ତେବେ ସେ କେବଳ ଈଶ୍ୱରଙ୍କ ଚରିତ୍ର ପୁରୁଷଙ୍କୁ ହଜାଲେ : "ଯୌବନର ବୁଙ୍କା ଉପରେ ବଂଶୀଟିଏ ପୂରୁଥିଲା ବେଳେ, /ପଥଚ୍ଛଣ୍ଡଟିଏ ଆଉ ଆଖିରେ ସୁରମିଳାଏ ନା/ ତା' ତୁଣ୍ଡଆ ମୂର୍ଚ୍ଛାର ଜରିଦ୍ର ସୁସ୍ୱରରେ ।" (ଗିରଧାରୀ ନାଗର—ଗୀତ ଗା' ନାରେ ପକ୍ଷୀ) । ଗିରଧାରୀ ନାଗରକୁ ଜାଣିବା ପାଇଁ ମନରେ ଯେଉଁ କୌତୂହଳ ଜନ୍ମେ, ତାହା

୧୬ । Griersow, H. J. C. (Edited)—Metaphysical Lyrics and Poems of The Seventeenth Century, London, 1972, P. 88 ।

ନାନାକ୍ଷ୍ମଚାରୀରେ ଭଗ ହୋଇଯାଏ । ଗିରିଧାରୀ ମନେ କରୁଥିଲେ ସତେ ଯେମିତି ଭୁଲ୍ ର ଏକ ବିରାଟ ପାହାଡ଼ । ଅଥଚ ସବୁ ଭୁଲ୍ କୁ ଆଶ୍ରୟ କରି ଜୀବନର ଜୈବିକ ତାଙ୍କ ଉତ୍ତମ ଭାବରେ ଜଣା । ନନ୍ଦ ବେଶରେ ଜଳନ୍ଧରର ପତ୍ନୀହରଣ, ଶିଶୁପାଳ ବଧ, କୃଷ୍ଣାର ସତୀତ୍ୱ ହରଣ, କୁରୁବଂଶର ବିନାଶ ସାଧନ ଏଇପରି ଅନେକ ଅନେକ ଘଟଣାର ନାୟକ କାଳିଆ କୃଷ୍ଣ କବି ଦୃଷ୍ଟିରେ ଏକ ମିଥ୍ୟାଚାରୀ, କୃତଘ୍ନ, ଅହଂକାରୀ ପୁରୁଷଟିଏ । ମାତ୍ର ଏଇ ସବୁ ଘଟଣାର ବିଘଟନକାରୀ କାଳକ୍ରମେ ନରଭୂମାନ ଓ ନର୍ମାଧ୍ୟାରେ ନବାବ୍, ଓ ଜଗନ୍ନାଥ ସିଂହାସନରେ ଆରୂଢ଼ । ଫଳତଃ ଯୁଗେ ଯୁଗେ ତାଙ୍କର ଚରିତ୍ର ଓ ଚରିତ ସବୁ ଗୋପନୀୟତାର 'ତାଲାପ', 'ସବୁ ଉତ୍କ୍ଷିପ୍ତ ତର୍କର କୋଠରୀ', 'ସବୁ ପ୍ରସନ୍ନ ଓ ସରଳ ଭୂମିର ପବିତ୍ରତା', କବିଙ୍କ ପାଇଁ ଗିରିଧାରୀ କୃଷ୍ଣ ସରଳ ବିଶ୍ୱାସ ଓ ପବିତ୍ରତାର ମୂର୍ତ୍ତିମନ୍ତ ବିଗ୍ରହ ନୁହନ୍ତି । ତାଙ୍କର ନିଷ୍ପ୍ରାଣଲାପ ଉତ୍ତେଜନା ବୃଦ୍ଧି ଓ ତର୍କର ସୂତ୍ରପାତ କରେ । ଜଗନ୍ନାଥଙ୍କ କୃଷ୍ଣଙ୍କ ପ୍ରକୃତ ଭାବର ସନ୍ଧାନ କରିବା ପାଇଁ ଗଲାବେଳେ କବିଙ୍କର ସନ୍ଦେହ ଚକ୍ଷୁ ସଜାଗ ହୋଇ ଉଠେ, ହୋଇ ଉଠେ ସକ୍ରିୟ । ସେ ଭାବକୁ ନିକଟ ଓ ଅଭାବକୁ ଦୂର—ଏଇ ସିଦ୍ଧାନ୍ତ କବିଙ୍କର ଗ୍ରହଣଯୋଗ୍ୟ ହୋଇ ପାରେ ନାହିଁ । ଜୀବନର ପ୍ରାଣମୂର୍ଚ୍ଛା ହାହାକାର ଏଇ ଶାସ୍ତ୍ରୀୟ ନ୍ୟାୟକୁ ମାନି ନେଇ ପାରେ ନା ।

> "କେଉଁ ଭାବରେ ଥାଅ ହେ ଜଗନ୍ନାଥ ?
> କେଉଁ ଅଭାବରେ ତୁମେ ନାଚୁଥାଅ, ହସୁଥାଅ,
> କନ୍ଦାଇ କନ୍ଦାଇ ମାରୁଥାଅ, ସଂସାର, ସାଗର
> ଠିଆ ଠିଆ ଉଜାଗରେ ବନ୍ଧଯାଏ,
> ଭାବଟିଏ ଖୋଜୁଥାଏ, ଅଭାବରେ ଅସମ୍ଭାଳ
> ଗଢ଼ିବା ତୁମର ମୂର୍ତ୍ତି ଶୂନ୍ୟତାରେ
> ଭାଙ୍ଗିବା ତୁମର ଡିମ ଜୋକ ଗହ୍ୱରରେ ।"
>
> (ଜଗନ୍ନାଥ—ଦୁଃଖ ସହ କଥାବାର୍ତ୍ତା)

କବି ଜାଣିବାକୁ ଆଗ୍ରହୀ କେଉଁ ଭାବରେ ଜଗନ୍ନାଥ ତୃପ୍ତ ହୁଅନ୍ତି । ପୁଣି କେଉଁ ଭାବରେ ସେ ଅଭାବର ଫୁଲ ଗୁଙ୍ଗୁଡ଼ା ଭିତରେ ଅଦୃଶ୍ୟ କୀଟଟିଏ ହୋଇ ମଣିଷକୁ ଚେତନାର ଝୁରୁଝୁ ମାରନ୍ତି ? ପ୍ରଶ୍ନର ଉତ୍ତର ଦେଇଛନ୍ତି କବି ନିଜେ । ମଣିଷ ଆଜି ଭାବରେ ନାହିଁ କି ଅଭାବରେ ନାହିଁ । ସୁତରାଂ ନିଜ ଅଭାବର ଫୁଲ ଗୁଙ୍ଗୁଡ଼ା ଚଳାଇବା ପ୍ରଶ୍ନ ତାଙ୍କ ପାଇଁ ଅଳୀକ ଏବଂ ଅର୍ଥହୀନ । "ଆଜି ମୋର

ସହିବାକୁ ଅସ୍ୱସ୍ତି ଯାଏ ସଂସାର/ଆଜି ମୋର ଦରବୁଡ଼ା ଗାଁର ଶେଷ ଧାଡ଼ିରେ/ କୁଆ ମଇଁଷି ପରି ଫୁଲି ରହିଥିବା ମୃତ୍ୟୁର ଇଶାରା/ତୁମେ କ'ଣ ଜାଣି ପାର ନାହିଁ ମୁଁ କାହିଁକି/ଦୁମୁଦୁମୁ, ଦୁମୁଦୁମୁ, ଝୁମୁଝୁମୁ ହୋଇ ନାଚିଯିବି ନିଶ୍ଚୁପ/ ତୁମ ଲାଗଡ଼ ଚକଆ ଆଖିର ମେଣ୍ଡିଆ ସନ୍ଧରେ।" (ବିନୋଦିଆ—ଦୁଃଖ ସନ୍ଧ କଥା ଦାଣ୍ଡି)। କବି ଯାନ୍ତ୍ରିକ ଜୀବନର କଷ୍ଟ ପାଇବାକୁ/ସହିବାକୁ ପ୍ରସ୍ତୁତ। କିନ୍ତୁ ପାଖରେ ଥିବା ଦୁଃଖଦାୟୀର ଉପସ୍ଥିତି ତାଙ୍କ ପାଇଁ ଅସହ୍ୟ। ଅନ୍ଧକାର ଓ ଦୁଃସ୍ୱପ୍ନକୁ ସେ କଦାପି ବାସ୍ତବତାର ବମୂର୍ତ୍ତି ଆଲୋକରେ ଉଦ୍ଭାସିତ ହେବାକୁ ଦେବେ ନାହିଁ। ଆପେ ଜଳି ଜଳି ସେଇ ଆଲୋକର ଅନ୍ୱେଷଣ କରିବାରେ କି ଲାଭ? ଏଇ ପ୍ରଶ୍ନ କବି ମନରେ ଉଙ୍କି ମାରୁଛି। 'କଳାକାହ୍ନୁ' କବିତାରେ ଏଇ ପ୍ରଶ୍ନର ସମାଧାନ ହୋଇ ଯାଇଛି। 'କଳାକାହ୍ନୁ'ର ଦୁଇଟି ଶବ୍ଦ କବି ନିକଟରେ ଦ୍ୱୈତ ଅର୍ଥବାଚୀ। 'କଳା' ପ୍ରେମର ଓ 'କାହ୍ନୁ' 'ଆଧ୍ୟାତ୍ମିକତାର ଉଦ୍‌ବୋଧକ। "ନିବୁ ଦୃଷ୍ଟିରୁ ନାଗ ଦଳନ, କ୍ଷୁଦ୍ରପ୍ରୀତି, ଜହ୍ନ ଘର ପୋଡ଼ି, ଶିଆଳି ଲଟାରେ ଛଟପଟ ଯନ୍ତ୍ରଣାସବୁ କୃଷ୍ଣଲୀଳାର ଆକ୍ଷିପ୍ତ ବ୍ୟାଖ୍ୟା କରି କଳାକାରଙ୍କୁ/ଆଧୁନିକ ମନୁଷ୍ୟଙ୍କୁ ଏପରି ଏକ ମନୁଆ, କାହ୍ନୁଆ, ଛଟପଟ ନାଗର ରୂପରେ ଚିତ୍ରଣ କରାଯାଇଛି, ଯେ କି ଜୀବନର ସବୁ ବିଡ଼ମ୍ବନା ମଧ୍ୟରେ ନିଜର ମଜ୍ଜାଗତ ଖେଆଲବଶରେ ହିଁ ଦାନଲୀଳା ଜୀବନ ଓ ସମସ୍ୟାର ଯମୁନା କୂଳରେ ନିଜର ବଂଶୀ ଫୁଙ୍କିବାରେ ମସ୍ତଗୁଲ୍ (୧୪) ଅନ୍ୟ ପକ୍ଷରେ 'କାହ୍ନୁ' ଶବ୍ଦ ବ୍ୟବହାରରେ ଆଧ୍ୟାତ୍ମିକତାର ବିପର୍ଯ୍ୟୟ କିଭଳି ଘଟିଛି, ତାହା ଦେଖାଇ ଦେବା ସଙ୍ଗେ ସଙ୍ଗେ ମଳ ମୂତ୍ର, ପୂଯରକ୍ତ, ଲେପ ଖଙ୍କାରରେ ପରିପୂର୍ଣ୍ଣ ମଣିଷ ପାଇଁ ଏହା କେଉଁ ସ୍ୱପ୍ନର ମିନାର ଗଢ଼ି ପାରିବ ସେ ସମ୍ପର୍କରେ ନିଜର ଅନାସ୍ଥାଭାବ ଦର୍ଶାଇଛନ୍ତି କବି।

"ରେ କାହ୍ନୁ, ତୋ ମୟୂରପଙ୍ଖୀ ସ୍ୱପ୍ନର
ଜହ୍ନଘର, କାଚଦିଆଲ କାଗଜ ଝୋଟିର
ଆକାଶୀ ସ୍ତମ୍ଭ କେମିତି ଜଳୁଚି, କେମିତି
ଜଳୁଚି, କେମିତି କୁହୁଳୁଚି ଦେଖ୍; ଦେଖ୍
ଶିର୍ ଶିର୍ ହୋଇ ପବନର ବ୍ଲେଡ୍ ଦାନ୍ତକୁ
ମଜେଇ ଦଉଚି ତୋ ପାଦର ଅଳତା ବେଢ଼ା।"

('କଳାକାହ୍ନୁ'—ସ୍ରୋତର ନାମ ରତ)

---

୧୪। ମିଶ୍ର, ବିଲୋଚନ—ମୋ ଦୃଷ୍ଟିରେ ସ୍ରୋତର ନାମ—'ସ୍ରୋତର ନାମ ରତ'ର ମୁଖବନ୍ଧ— ପୃ. ୬।

'ମୋହର ନାମ ରତ୍ନ' ରଚନା ପରଠାରୁ କମଳାକାନ୍ତଙ୍କ କବିତାରେ ପ୍ରେମର ବର୍ଣ୍ଣନ ହ୍ରାସପ୍ରାପ୍ତ ହୋଇ ପଡ଼ିଥିଲା । କିନ୍ତୁ ସମସ୍ତ ନୂତନ ମତ ତା' ପାଇଁ ଆସିଛି ଆଧ୍ୟାତ୍ମିକ ଚେତନାର କ୍ରମବର୍ଦ୍ଧମାନ ବିଷୟବସ୍ତୁ । 'ଅନ୍ତତଃ କଷ୍ଟୁପ'ରେ କବି ଯେଉଁ ନାସ୍ତିକ୍ୟବାଦର ପ୍ରତୀକ୍ଷାରେ କାଳଯାପନ କରିଛନ୍ତି, ତାହା ତାଙ୍କ ନୈରାଶ୍ୟର ବାଦଲ ଦଂଶନରେ ନିରନ୍ତର ବ୍ୟାହତ । ନୈରାଶ୍ୟର କଣକ ଏତେ ବ୍ୟାପକ ଓ ବିସ୍ତୃତ ଯେ ଈଶ୍ୱର ବିଶ୍ୱାସ ଓ ଅବିଶ୍ୱାସ ଭିତରେ ଏହାର ସତ୍ତା ସମତୁଲ ବିରାଜମାନ କରେ । ତେବେ ଭଗବତ୍ ବିଶ୍ୱାସୀ ନୈରାଶ୍ୟ ଭିତରେ ଆଶାବାଦର ଫୁଲଙ୍କ ଦେଖିଲାବେଳେ ଅବିଶ୍ୱାସୀ ମଣିଷ ତା' ଭିତରେ ଦେଖେ ଯନ୍ତ୍ରଣାର ହାହାକାର । କମଳାକାନ୍ତଙ୍କ ଆଧ୍ୟାତ୍ମିକ କବିତା ମୂଳରେ ଏହି ଭାବନା ସଂଗୁପ୍ତ । ତେବେ ଧର୍ମଗତ ରହସ୍ୟମୟତା ଓ ଭକ୍ତିବାଦୀତାରୁ ଖସି ଆସିଲାବେଳେ କମଳାକାନ୍ତ ନିଜ ବୌଦ୍ଧିକ ଶକ୍ତିର ପ୍ରଚଣ୍ଡତା ସମ୍ପର୍କରେ ସଚେତନ । 'କଣାଣ' କବିତା ତାହାର ପ୍ରକୃଷ୍ଟ ପରିଚୟ । ଈଶ୍ୱରଙ୍କଠାରେ କୌଣସି ପ୍ରତ୍ୟାଶା ରଖି ନ ଥିବା ଭାବ୍ୟନାତ୍ମକ ନେତୃତ୍ୱ ହୋଇ କ'ଣ ବା ତାଙ୍କୁ ପ୍ରାର୍ଥନା କରିବ ? ନିର୍ଦ୍ଦିଷ୍ଟ ଅଭୀପ୍ସା ତ ତାର ନାହିଁ । ତେଣୁ ସେ କାହିଁକି ବା କହିବ—"ହେ ପ୍ରଭୁ ! /ହଟଚମଟର ଭଉଁରୀରୁ ବା ଆଇଁଷିଆ ମାଟିର ହୃଦରୁ /ନେଇଯାଅ ଶୂନ୍ୟ ଗୋଲକକୁ" (କଣାଣ) । ଯାହାର କିଛି ପ୍ରାପ୍ତିର ଆକାଂକ୍ଷା ଥାଏ, ଦାନର ଇଚ୍ଛା ଥାଏ ଅଥବା କହିବାର କିଛି ଥାଏ ତେବେ "ସେ ସିନା ଝଙ୍କାରୀରେ ବାନ୍ଧିବ ତୁମକୁ ଭୁଲାଇବାର ଗୀତ, /ତୁମକୁ କୁହୁକ କରିବାର ପ୍ରସନ୍ନ ମନ୍ତ୍ର, /ତୁମକୁ ଭକୁଆ କରିବାର ଚାନ୍ଦିକତା !" ଯେବେ ଏକ କ୍ଷଣିକର ମୁହୂର୍ତ୍ତରେ ସେ ଈଶ୍ୱରଙ୍କୁ ଭେଟିବେ ସେତେବେଳେ ସେ ସତ୍ୟ ସ୍ୱରୂପ ଈଶ୍ୱରଙ୍କୁ ଅଙ୍ଗୀକାର କରିନେବେ । ଦୁଃଖ ଯନ୍ତ୍ରଣା ଭିତରେ ଆସୁଥିବା ଅନୁଭବରୁ ପ୍ରକୃତ ଅନୁଭବ । ସେ ଈଶ୍ୱରତ୍ୱର ହେଉ ବା ମନୁଷ୍ୟତ୍ୱର ହେଉ । 'ମହାରାଜାଙ୍କୁ ଗୋଟିଏ ପ୍ରାର୍ଥନା' କବିତାରେ ଏହି ସାମାନ୍ୟ ଭିଲ କାବ୍ୟାନୁଭବ ସୁସ୍ପଷ୍ଟ । "ଏଣିକି ମୋର କଣ୍ଠକର ମୁକୁଟକୁ /ଆସ୍ତେ କରି ଓହ୍ଲାଇଦେ ଓ ତୋ /ଅଙ୍ଗା ଗୋଇଠିର ସନ୍ଧିରେ /ଯାଜକଧର : ଯେମିତି ଢକି ଗଳୁଥିବ /ତ ଗଳୁଥିବ, ଦିନ ପରେ ରାତି, ରାତି ପରେ ଦିନ / ଏକ ଅସନ୍ତ ବ୍ୟସର ଛନ୍ଦକରେ !" (ଅନ୍ତତଃ କଷ୍ଟୁପ) ।

କବି ତାର ଜୀବନକାଳରେ ବହୁ ଅନୁଭୂତ, ବହୁ ପରିବେଶ ସଙ୍ଗେ ଆତ୍ମୀୟତା ସ୍ଥାପନ କରେ । ତେଣୁ କୌଣସି ଗୋଟାଏ ନିର୍ଦ୍ଦିଷ୍ଟ ଦର୍ଶନ /ଭାବନାକୁ ଶେଷ ପର୍ଯ୍ୟନ୍ତ ଅକ୍ଷୁଣ୍ଣ ରଖିବା ଆଦର୍ଶର ସେ ପକ୍ଷପାତୀ ହେବା ସମ୍ଭବ ନୁହେଁ । ଏହି କାରଣରୁ ଜୀବନର ମତ ପରିବର୍ତ୍ତନ ଅବଶ୍ୟମ୍ଭାବୀ ହୋଇଉଠେ ଏବଂ

ପରବର୍ତ୍ତୀ ପର୍ଯ୍ୟାୟରେ ନୂଆ ନୂଆ ଅନୁଭୂତିକୁ ପାଠକ ଆଗରେ ନିଃସଙ୍କୋଚ ଭାବେ ଉପସ୍ଥାପନ କରେ । ଏଥିପାଇଁ କବିର ସତ୍ୟତା, ସତ୍ୟାନୁଭୂତି ଓ ଜୀବନ ପ୍ରତି ବିଶ୍ୱସ୍ତତା । କବି ଶ୍ରୀ ଜେନା ସେଥିପାଇଁ କେତେବେଳେ ଈଶ୍ୱରଙ୍କ ଅନନ୍ତ ଦ୍ୱାର ପ୍ରମାଣ ଦିଅନ୍ତି ତ କେତେବେଳେ ଏକ ମହତ୍ତମ ଶକ୍ତିର ବିଶାଳତା ନିକଟରେ ନିରବରେ ସମ୍ମାନ ଜଣାନ୍ତି । 'ଅପେକ୍ଷା କେବଳ' କବିତାଟି ଜୀବନର ମୁକ୍ତିଦାତାଙ୍କ ପାଇଁ ଭାବ୍ୟନାତ୍ମକର ପ୍ରତୀକ୍ଷାକୁ ସୂଚିତ କରେ । 'ଅନ୍ଧାରିଆ ଗୁମ୍ଫା ଅରଣ୍ୟର ଦୀର୍ଘ ଅପେକ୍ଷା'ରୁ ମୁକ୍ତିକାମୀ ମଣିଷର ଶେଷ ସ୍ୱପ୍ନର ପ୍ରତୀକ୍ଷା । ଯନ୍ତ୍ରଣାକାତର ମଣିଷ ଜୀବନର ସବୁ ବ୍ୟର୍ଥତାକୁ ମଥାରେ ବୋହି ଶେଷ ମୂହୂର୍ତ୍ତ ପାଇଁ ସେ ଅପେକ୍ଷମାଣ ।

> "ସେ ଆସିବାକୁ ଥିଲେ । ସେ ଆସିବ
> କେଉଁ ବେଳାରେ, କେଉଁ ମୁହୂର୍ତ୍ତରେ କେଉଁ
> ଝଟକର ପାଲିଙ୍କିରେ, ଘଙ୍ଗ ସିଂହଳର ଚଉଡ଼ୁଲରେ
> ସେ : ବାଜିବ ଶଙ୍ଖ ମହୁରୀର ନହବତ ।
> କେବଳ ଯାହା ଧୈର୍ଯ୍ୟ ଗଢ଼ାଇ ଦିଏ
> ମୋ ମନସ୍କ ଶୋକର ମୁଦ୍ରା, ଧ୍ୟାନସ୍ଥ
> ଶିଖାର ତପସ୍ୟା ।"
>
> (ଅପେକ୍ଷା କେବଳ—ସ୍ରୋତର ନାମ ରିତ) ।

'କ୍ରୀତଦାସ' କବିତାରେ ସେଇ ବିରାଟ ସତ୍ତା ପ୍ରତି କବି ହୃଦୟର ଆସ୍ଥା କ୍ରମଶଃ ଦୃଢ଼ୀଭୂତ ହୋଇଛି । କାବ୍ୟନାୟକ ସେଇ ବିରାଟ ପୁରୁଷଙ୍କ ଦାସାନୁଦାସ, ଆଜ୍ଞାବହ ଭୃତ୍ୟ । ତେଣୁ ସେ ପ୍ରାର୍ଥନା କରନ୍ତି—"ଏବେ ମୋତେ ମୁକ୍ତ ଦିଅ/ ନିମାଗତ ପଥଗୁଡ଼ିକ ନିର୍ଦ୍ଦିଷ୍ଟ ଅକ୍ଷରୁ/ହେ ପ୍ରାଜ୍ଞ, ସମ୍ରାଟ୍, ଈଶ୍ୱର ।" (ସ୍ରୋତର ନାମ ରିତ) । ଶ୍ରୀ ନିତ୍ୟାନନ୍ଦ ମିଶ୍ରଙ୍କ ମତ ସହ ଏକମତ ହୋଇ କୁହାଯାଇ-ପାରେ ଯେ 'କ୍ରୀତଦାସ' ଓଡ଼ିଆ ଜଣାଣର ଏକ ଆଧୁନିକ ରୂପ । (୧୫) ଶତାବ୍ଦୀ ଶତାବ୍ଦୀ ଧରି ମଣିଷ ତାଙ୍କର ଆଦେଶରେ ଜନ୍ମମୃତ୍ୟୁର ଅସରନ୍ତି ଗହ୍ୱରରେ ପଡ଼ି ଦୁଃଖ କ୍ଳେଶର ମଶାଣିକା ଆଡ଼କୁ କେବଳ ଧାଇଁ ଚାଲିଚି । ଯାହାର ଶେଷ ନାହିଁ କି ଦୁର୍ଭିକ୍ଷର ଅନ୍ତ ନାହିଁ । 'ଜଣାଣ' କବିତା ପରି ଏଠାରେ କବି କ୍ଷୋଭ ଓ ଅବଶେଷରେ ଫାଟି ପଡ଼ିଛନ୍ତି । ପୁଞ୍ଜିବାଦୀ ମାଲିକ ପରି ଈଶ୍ୱର କେବଳ ଏକଦେଶଦର୍ଶୀ ଅତ୍ୟାଚାରରେ ଲିପ୍ତ । ହୃଦୟହୀନତା ଓ ଛଳନା ତାଙ୍କ ସ୍ଥିତି ପ୍ରକୃତିର ମାପକାଠି । କାବ୍ୟନାୟକ ସେଇ ମହାମହିମ ସମାଟଙ୍କ କ୍ରୀତଦାସ ।

୧୫ । ତନ୍ନିବେ—ପୃ. ୧୦ ।

କବି ଜାଣନ୍ତି—ନୀତିବାଦର ଅନୁନୟ ବିନୟ ସମାଜଙ୍କ ହୃଦୟକୁ ତରଳାଇ ପାରିବ ନାହିଁ । ଯାହା ହେଲେବି ପୁରୁଷାନୁକ୍ରମିକ ଆଜ୍ଞାବହ ନୀତି-ବାଦତ୍ୱକୁ ବର୍ଜନ କରିବା ତାଙ୍କ ପକ୍ଷରେ ସମ୍ଭବ ନୁହେଁ । ତେଣୁ କ୍ଳାନ୍ତ, ଅବସନ୍ନ କାବ୍ୟନାୟକ "ବୁଢ଼ା ପରି ଝୋଲାଇଛୁ/ବଟ ବୃକ୍ଷ ଗୁଡ଼ିକର ପାହାଚେ ।" କାବ୍ୟନାୟକ ସୂର୍ଯ୍ୟ ପରି ଦ୍ୟୁତିମାନ୍, ତେଜସ୍ୱୀ ହେଲେବି ତାଙ୍କର ଉଦୟାସ୍ତ ଅଛି ! ତେଣୁ ସେ କହନ୍ତି—"ତେବେ ମୁଁ କି ଅସ୍ତ୍ରିବି/ଅନ୍ତର୍ହିତ ଦୃଶ୍ୟ ଏବଂ ଈଶ୍ୱରଙ୍କ ସନ୍ଧ୍ୟାର ଆସରରେ ।" (ସୂର୍ଯ୍ୟାସ୍ତ—ସ୍ରୋତର ନାମ ରତି) । ଛାୟାଘନ ଅରଣ୍ୟର ଅନ୍ଧକାର ଭିତରେ ହଜିଯିବ ପ୍ରତିଟି ମଣିଷ ପରି କାବ୍ୟନାୟକର ଦୈହିକ ସତ୍ତା । ତେଣୁ କାବ୍ୟନାୟକର ଅନୁଭବ୍ୟ ମୃତ୍ୟୁ ବେଦନା ଅନପନେୟ । କିନ୍ତୁ ମାନବାତ୍ମାର ଏଇ ସର୍ବୋଚ୍ଚ ଆକାଂକ୍ଷା ପ୍ରତି କବି ବିତୃଷ୍ଣ । ଉଦ୍ୟାନର ଲଭର୍ ଅନନ୍ତ ମୃତ୍ୟୁକୁ ଐଶୀଚେତନାର ଅଧିକାରୀ କରିବା ଅସମ୍ଭବ । ସୂର୍ଯ୍ୟକାନ୍ତ ଭିତରକୁ ବଳି ଟର୍ଣ୍ଣେଡୋ ପରି କବି ସେଇ ମୃତ୍ୟୁଚକ୍ରରେ ପ୍ରବେଶ କରେ, କିନ୍ତୁ ମୃତ୍ୟୁଲୋକ ଅମୃତଲୋକକୁ ରୂପାନ୍ତରିତ ହେବାର ବାସନା କବିର ଅବିସମ୍ବାଦିତ ନୁହେଁ ।

କବିଙ୍କର ଏଇ ମାନସିକ ସ୍ଥିତିର ବିଶ୍ଳେଷଣ 'କ୍ରମଶଃ ବର୍ଷା, ଶିଶିର ମନ ଓ ଈଶ୍ୱର' କବିତାରେ ସୁରକ୍ଷିତ । ବର୍ଷାଋତୁର ଏକ କୋହଲ ସାଗରେ ଶୂନ୍ୟ ଭାବନାକୁ ଉଜ୍ଜୀବ୍ୟ କରି ଚଢ଼ି ଉଠିଥିବା ବ୍ୟଙ୍ଗାତ୍ମକ କାବ୍ୟଚେତନାରେ କବି ଈଶ୍ୱରଙ୍କୁ ସାମିଲ୍ କରି ଏକ ହାସ୍ୟକର ଅଥଚ ଭାବଦ୍ୟୋତକ ପରିବେଶର ସଂଯୋଜନା କରିଛନ୍ତି । ଈଶ୍ୱରଙ୍କୁ ଆପଣାର ସାଙ୍ଗର ମର୍ଯ୍ୟାଦା ଦାନରେ କବିଙ୍କ ଲେଖନୀ ପାରମ୍ପରିକ ଆଧିଦୈବିକ ଚେତନାର ବିରୁଦ୍ଧାଚରଣ କରିବା ସଙ୍ଗେ ସଙ୍ଗେ ମନରେ ଆଣେ କୌତୂହଳ ।

"ହେ ପ୍ରଭୁ, ତୁମେ ଆଜି ଗୋଟା ଗୋଟା ଉପାସରେ ଚୁଲି ଫୁଙ୍କୁଥିବ,<br>
ତୁମେ ବୋଧହୁଏ ସଗଡ଼ଟାରେ ହାଣ୍ଡି କୁଣ୍ଡି ସବୁ ଛେଚୁଥିବ, ଓ<br>
ବର୍ଷାଟାରେ ଆତ୍ମାକୁ ଆଉଥରେ ଶୋଧିବା ବ୍ୟତୀତ<br>
ଜନ୍ମଠୁ ମୃତ୍ୟୁକୁ ଏକ ସିଡ଼ି ବାନ୍ଧୁଥିବ ।"

( ସ୍ରୋତର ନାମ ରତି )

କବିଙ୍କର ଐଶ୍ୱରିକ ଉପଲବ୍ଧି ଏକାନ୍ତ ମାନବୀୟ । ନିଜଠାରୁ ବଡ଼ ମଣିଷ ପ୍ରତି ଅପେକ୍ଷାକୃତ ନ୍ୟୂନମନ୍ୟ ବ୍ୟକ୍ତି ସବୁବେଳେ କୌତୂହଳୀ । ତାଙ୍କର ଦୈନନ୍ଦିନ କ୍ରିୟାକଳାପ ସମ୍ବନ୍ଧରେ ଅନେକ ଜିଜ୍ଞାସା ନିମ୍ନସ୍ତରର ବ୍ୟକ୍ତିମାନଙ୍କର ସ୍ୱଭାବୀ

ସୃଷ୍ଟି ବରେ ଏବଂ ପରଶେଷରେ ସେଇ ଉଚ୍ଚ ସ୍ତରର ବ୍ୟକ୍ତିକୁ ନିଜ ସ୍ତରକୁ ଓହ୍ଲାଇ ଆଣେ । କବି ଶ୍ରୀ ଲେଙ୍କା ସେଇପରି ଈଶ୍ୱରଙ୍କୁ ନେଇ ଆସିଛନ୍ତି ନିଜସ୍ୱ ଇଲାକାକୁ । ଯେଉଁଠି ସେ କାବ୍ୟାତ୍ମକ ପରି ପ୍ରାତ୍ୟହିକ ନିତ୍ୟକର୍ମ ସମାପନ କରନ୍ତି ।

"ମୁଁ ଯେମିତି ସକାଳେ ମୋ ରୁଟିନ୍ ସମାପ୍ତ କରୁଛି
ସେମିତି ହୁଏତ ପ୍ରଭୁ ତାଙ୍କ ନିତ୍ୟକର୍ମ କରୁଥିବେ !
ହୁଏତ ମୋଭଳି ବସି କେତେବେଳେ କଫି ପିଉଥିବେ ।
କିମ୍ବା ପୁଣି କେତେବେଳେ ମାର୍କସ ଓ ଏନ୍‌ଗେଲ୍‌ସଙ୍କୁ ପଢ଼ି
ନୂଆ ନୂଆ ଚିନ୍ତାରେ ବି ମଗ୍ନ ଥିବେ ଓ ମାଓଙ୍କ ମତରେ
ଅସମ୍ମତ ଭାବେ ପ୍ରଭୁ ଚିଢ଼ି ଉଠିଥିବେ ।"

ବାହ୍ୟସର୍ବୋଚ୍ଚ ଭିତରେ ଫୁଟି ଉଠିଛି ଦୁଃଖୀରଙ୍କ ପ୍ରତି ସମ୍ବେଦନଶୀଳତା । ପ୍ରବଳ ବର୍ଷାରେ ପ୍ଲାବିତ ଗାଁ ଗଣ୍ଡା, ମଣିଷର ଦୁର୍ଗତବସ୍ଥା ଏହାର ଭିତରେ ପ୍ରତୀକିତ । ବର୍ଷା, ବନ୍ୟା, ମରୁଡ଼ି ହେତୁ ନିର୍ଜଳା ଉପାସରେ ରହିଥିବା କଅଁ ନେଡ଼ଙ୍କାଯୋଗ ଗାଁର ମଣିଷ, ମାଆର ଓହଳା ସ୍ତନରେ ଅଧାମରା ଶୋଇଥିବା ଶିଶୁ, ଖୁଁ ଖୁଁ କାଶୁଥିବା ବୃଦ୍ଧାର ବେଦନାବିଧୁର ଅବସ୍ଥା ଦେଖି ଆସିବାକୁ ଅନୁରୋଧ କରିଛନ୍ତି କବି । "ମୁଁ ତେବେ ଅନୁରୋଧ କରିବି କି ଭଗବାନ ଆଜିର ବର୍ଷାରେ ?/କଦାଚି ଭେଲାରେ ଯିବା ମଫସଲ ଗାଁ ବୁଲି ।" ଈଶ୍ୱର ଯଦି ଅନାଥର ନାଥ, ପତିତପାବନ, ତେବେ କାହିଁ ତାଙ୍କ ଭୁବନ ବିମୋହନ ଦୟାର୍ଦ୍ର ରୂପ ? ଅଳଙ୍କୁଣିଆ ମଣିଷ ଯଦି ବିପଦରେ ତାଙ୍କର ଭରସା ନ ପାଇଲା, ତେବେ କି ଲାଭ ସେଇ ଶାସ୍ତ୍ରୀୟ କଥାରେ ବିଶ୍ୱାସ କରି ! ଦୁଃଖୀମାନଙ୍କ ପ୍ରତି ସମବେଦନାରେ ମାନବବାଦୀ କବି ବିଗଳିତ । ଭାବ ଖୁବ୍ ଶ୍ଳେଷାତ୍ମକ ।

"ଅନ୍ତତଃ ମୁଁ କହି ରଖେ ଭଗବାନ, ତୁମେ ଯଦି ମର
ମୁଁ ମରିବି ଧରି ତୁମ ଅଣ୍ଟା, ବେକ, ହାତ ଓ ଗୋଡ଼କୁ ।"

ଆଲୋଚକ ଶ୍ରୀହୃଷୀକେଶ ମଲ୍ଲିକ କବିତାର ଏ ଭାବଭୂମିକୁ ଲକ୍ଷ୍ୟ କରି ମତ ଦେଇଛନ୍ତି ଯେ, କବି ଯେମିତି ଈଶ୍ୱରଙ୍କ ଫେର ହାତ ଧରି ପାଖେ ପାଖେ ବସିଛନ୍ତି । (୧୭) ମାତ୍ର ବସ୍ତୁବ୍ୟାପି ଯୁକ୍ତିଯୁକ୍ତ ନୁହେଁ କବି ମଣିଷ ପାଇଁ ଅଥବା ନିଜ ପିଲା ଛୁଆ ପାଇଁ ଯେତେ ଚିନ୍ତିତ, ଈଶ୍ୱର ବୋଧହୁଏ ନିଜ ସୃଷ୍ଟି ପାଇଁ ସେତେଟା ଚିନ୍ତିତ ନୁହନ୍ତି । ତେଣୁ ନିଜ ପିଲା କବିଲଙ୍କୁ ଈଶ୍ୱରଙ୍କ ହାତରେ ସମର୍ପଣ

---

୧୭ । ମଲ୍ଲିକ, ହୃଷୀକେଶ– 'ସ୍ରୋତର ନାମ ମୃତ' ସମୀକ୍ଷା—ଇସ୍ତାହାର, ୫ମ ଖଣ୍ଡ, ଜାନୁୟାରୀ—୧୯୭୯ ।

କଲାବେଳେ କବି ଈଶ୍ୱରଙ୍କ ଅପାରଗତାକୁ ସୂଚାଇ ଦେବା ସଙ୍ଗେ ସଙ୍ଗେ ଅପଦସ୍ତ କରିବାର ଗୋପନ ଇଚ୍ଛାରେ ଆହ୍ଲାଦିତ । (''ଆଜିଠୁଁ ତୁମରି ହାତେ ସମର୍ପଣ କଲି × × × କ୍ଷମା ଦିଅ ଆପଣା ଦୋଷରୁ '') ଈଶ୍ୱରଙ୍କ ଯାବତୀୟ ସୁନ୍ଦର ସୃଷ୍ଟିର ଅସହାୟତା ଦର୍ଶାଇବା (ଗୋଲକଧନ୍ଦା) କବି ଶ୍ରୀ ଲେଙ୍କାଙ୍କର ଅସଲ ଉଦ୍ଦେଶ୍ୟ ।

'ସେ୍ତାତର ନାମ ରକ୍ତ' କାବ୍ୟ ଗ୍ରନ୍ଥରେ କବିଙ୍କର ଆଧ୍ୟାତ୍ମିକ ଉତ୍ତରଣ ଅଧିକ ଲକ୍ଷ୍ୟ । ଯିଶୀଚେତନାର ଏକ ନୂତନ ଜଗତ ତାଙ୍କ ବ୍ୟାକୁଳତାର ପ୍ରଶାନ୍ତି ନିମିତ୍ତ କ୍ଷେତ୍ର ପ୍ରସ୍ତୁତ କରିଥିବାର ଅନୁମିତ ହୁଏ । କିନ୍ତୁ 'ନିଜ ସହ ଗୋଟେ ସାକ୍ଷାତକାର' ଗ୍ରନ୍ଥରେ ଅଭଦ୍ର, ପାଗଳ, ମାତାଲ, ଘଣ୍ଟିଆଳ, ଫେସର ଏବଂ ଦଲ୍‌ଦାରମାନଙ୍କ ଦଲ୍‌ ଖୁନ୍‌କାରୀ ଈଶ୍ୱର । 'ସେ୍ତାତର ନାମ ରକ୍ତ' ବେଳକୁ ଆଭିଜାତ ଗମ୍ଭୀରତାରେ ଏକ ପ୍ରକାର ସ୍ଥିତିଧୀ । ଈଶ୍ୱରଙ୍କ ପ୍ରତି ପ୍ରଚଣ୍ଡ କ୍ରୋଧ ଓ ଜିଘାଂସା କବିଙ୍କ କାବ୍ୟଚେତନାର ସଂରକ୍ଷଣ କହିଲେ ଅତ୍ୟୁକ୍ତି ହେବ ନାହିଁ । ନିଜ ସହ ସାକ୍ଷାତକାର ବେଳେ ମନେହୁଏ, ଈଶ୍ୱରଙ୍କ ସହ କବିଙ୍କର ଯେପରି ସାକ୍ଷାତ ହୋଇ ଯାଇଛି । ତା' ନ ହେଲେ ସେ କହି ପାରନ୍ତେ ନାହିଁ—''ଈଶ୍ୱର ମାତାଲ ହବାର ଯିଏ ଦେଖିଚି/ସେ ଜାଣେ ଈଶ୍ୱରୀ ଦିଗମ୍ବରୀ/ଈଶ୍ୱରଙ୍କ ହାକୁଟି ମିଶା ଅଟ୍ଟହାସ୍ୟ/ଯେ ଶୁଣିଚି ସେ ଜାଣେ/ଈଶ୍ୱରୀ ଚଳମ ସଜାଡ଼ିବାରେ ବ୍ୟସ୍ତ ।'' ଈଶ୍ୱର ଏଠାରେ କବି ଏବଂ କବିତାହିଁ ଈଶ୍ୱରୀ । ଈଶ୍ୱର ପରି କବି ସ୍ରଷ୍ଟା । ସବୁ ସୃଷ୍ଟି ଅଶ୍ରଦ୍ଧା, ଅପମାନକୁ ଆମୂଳ ଚୂଳପରି କବି ନିନ୍ଦା ପ୍ରଶଂସାକୁ ତୁଳ୍ୟ ଜ୍ଞାନ କରି ନିଜ ଭିତରେ ହଜମ କରି ଦିଏ । ''କବି ତଳା ପାରେ ଈଶ୍ୱରଙ୍କୁ— ହେ ଈଶ୍ୱର,/ ଈଶ୍ୱରୀ ମାସ୍କାର ସିଂହାସନ, ଈଶ୍ୱରୀ ଏକ/କୁହୁଡ଼ି ଘେରା ସୁନ୍ଦର ପାହାନ୍ତି ପବନ ।'' (ପୃ. ୨୨ — ନିଜ ସହ ଗୋଟେ ସାକ୍ଷାତକାର) ।

'ଖସିବାର ବେଳ' ରଚନା ବେଳକୁ ଏଇ ବଳବତୀ ଈଶ୍ୱରୀସ୍ଥ ଜିଜ୍ଞାସା ପୁଣି ମାଟି ପାଣି, ପବନର ମହକ ଭିତରକୁ ପୁନଶ୍ଚ ଅପସରି ଆସିଛି ।—''ସାପ ଲୁଡ଼ୁରୁ ସିଡ଼ିକୁ ଡେଇଁ ଡେଇଁ ଖସି ପଡ଼ିବାର ଜିଗମୀ ଦୃଶ୍ୟ ।'' (ଅଦ୍ୱୈତ) । ଈଶ୍ୱରଙ୍କ ଯାବତୀୟ ସୁନ୍ଦର ସୃଷ୍ଟିର ଆକର୍ଷଣ କ୍ରମଶଃ ଉନ୍ମୋଚିତ ହେବାକୁ ଆରମ୍ଭ କରିଛି । 'ସମ୍ବର୍ଦ୍ଧନା' କବିତାରେ କବିଙ୍କ ସମ୍ଭାବ୍ୟ ଯାଯାବରୀ ଚିନ୍ତା ବନ୍ୟୀସ୍ତ । ''ଦିନେ/ ଈଶ୍ୱରଙ୍କ ଗଳାରେ/ହଠାତ୍ ଫୁଲ ମାଳଟିଏ/ଝୁଲି ପଡ଼ିଲା ଯେ/ ବେକ ଛିଡ଼ି ପଡ଼ିଲା ଈଶ୍ୱରଙ୍କର ।/ସେଇ କଟା ମୁଣ୍ଡକୁ/ସଭା ମଞ୍ଚରେ ଥୋଇ/ଥୋକାଏ କହିଲେ/ଚାଲ ପାଣି ଛିଟିଦିଅ,/ସନ୍ଦେ ମନ୍ତ୍ର ପଢ଼,/ଈଶ୍ୱର ଜାଗିବ ।'' (ଉନ୍ମୋଚନ) ।

ଦକ ଉତ୍କଳୀୟ । ତେଣୁ ଓଡ଼ିଶାର ପ୍ରାଣପ୍ରିୟ ଠାକୁର ଜଗନ୍ନାଥ ତାଙ୍କ କାବ୍ୟଚେତନାର ନୂତନ ଦିଗଦର୍ଶନ ପାଇଁ କେତେକାଂଶରେ ଦାୟୀ । ତୁଏତ ନୂତନ ଆଧ୍ୟାତ୍ମିକ ସରଣୀର ଉନ୍ମୋଚନ ଶ୍ରୀ ଲେଙ୍କାଙ୍କ କାବ୍ୟଦିଗନ୍ତର ଅଭିପ୍ରାୟ ନୁହେଁ । ତଥାପି ଚୈତନ୍ୟ ଅନ୍ତର୍ଦୃଷ୍ଟିରେ ଏହା ନିଶ୍ଚିତ ଭାବେ ସହାୟକ । ଟଣ୍ଡିଆ ମାଦଳ ଜଗନ୍ନାଥଙ୍କ ଏତାଦୃଶ ଅବସ୍ଥାର ଆଧୁନିକ ବ୍ୟାଖ୍ୟା ଦେଇ କବି କହନ୍ତି— "ଈଶ୍ୱର କଡ଼ା ଚାଲିଚି ଯାଇଛ/ ଦବାଲ ଆଖି ଦ'ଟା ଜଳୁଛ !/କାଳେ କିଛି ଅଘଟଣ ଘଟିଯିବ/ ଏଇ ଅସ୍ଥିରମନକୁ ନ ହାତ/କାହିଁ ଦେଉଚ ଆଜନ୍ମକୁ ?/ ଟାଲ ନୋଡ଼ି କକ୍ଲିଡ଼ି ଢଉଥା'ରେ ଢାଳିଆ ।/ ଟାଲି ଚାଦେଇ ଖଦେଇ ହଉଥା । ଦେ ମାଦଳ ଗୋଡେଇ/ଧଇଁ ପେଲ୍ଲେ ବୁଢ଼ାକୁ 'ତୋ ଛଡ଼ା ଅନ୍ୟ ଗତି ନାଇଁ ।" ("ଜନ୍ତ୍ୟ ନସ୍ମିତି"—୧୩) । ପୁରୀ କବିତାରେ କବିଙ୍କର ଗଭୀର ବିଶ୍ଳେଷଣମୁଖୀ ଦର୍ଶନ ଚମତ୍କାର ଭାବେ ପ୍ରକଟିତ । ପୁରୀ ଆସିବାକୁ ହେଲେ ପାପର ନୌକାରେ ଆସି ପହଞ୍ଚିବାକୁ ହୁଏ ଏବଂ ଜଗନ୍ନାଥଙ୍କ ଉଜ୍ଜ୍ୱଳ ଆଖିର ଦୁଇ ପାଖରେ ଯେଉଁମାନେ ଭିଡ଼ ଲଗାଇ ଥାଆନ୍ତି, ସେମାନେ ପାପର ମୂର୍ତ୍ତିମନ୍ତ ବିଗ୍ରହ ଭିନ୍ନ ଆଉ କିଛି ନୁହନ୍ତି । "ସଯତ୍ନ ସାଇତା ପାପର ପଟୁଆର/ମଝିରେ ଦୁଇଟି ଉଜ୍ଜ୍ୱଳ୍ୟର ଆଖି" ହେଉଛି ପୁରୀର ପ୍ରକୃତ ପରିଚୟ । ଏଠାକୁ ଧର୍ମାତ୍ମାମାନେ ପୁଣ୍ୟ ଅର୍ଜନ କରିବାକୁ ଆସନ୍ତି ନାହିଁ, ଆସନ୍ତି ପାପାତ୍ମାମାନେ ପାପର ନିର୍ମୋକରୁ ଆପଣାକୁ ମୁକ୍ତ କରିବାକୁ । ସାରା ପୃଥିବୀରେ ଉଦ୍‌ଗତ ମାନବକ ଅଭିଯାନର ପରିସମାପ୍ତି ଯେପରି ଏଇଠି । ଅସହାୟ ମଣିଷର ଏହା ପୁଣ୍ୟାର୍ଜନ ସ୍ଥଳୀ ଏବଂ କୃମି ଭଳି ଏହାର ଅପରିବର୍ତ୍ତନୀୟତା ଜୀବନର ପ୍ରକୃତ ରହସ୍ୟ । ତେଣୁ "ପୁରୀ ଯେ ଆସେ ସେ ସହଜରେ/ଫେରେ ନାହିଁ । ପାପର ପ୍ରଲୋଭନକୁ/ଫାଙ୍କି ଦିଏ ଯେଉଁ ଜଗଦ୍‌ଗୁରୁ/ତା'ର ମୂଢ଼ତାକୁ ପରମ ତୃଷାରେ/ତୋଳି ଧରେ ପୁରୀ" (ଉନ୍ମୋଚନ) 'ସ୍ୱର୍ଗ' କବିତାଟି ଏଇପରି ନୂତନ ଭାବ ମଧ୍ୟ ସଞ୍ଚାର କରିଥାଏ । ତେବେ ପୁରୀ ସମ୍ବନ୍ଧୀୟ ଯେତୋଟି କବିତା ଶ୍ରୀ ଲେଙ୍କା ରଚନା କରିଛନ୍ତି ତା' ମଧ୍ୟରେ ଉକ୍ତ କବିତାର ସୌନ୍ଦର୍ଯ୍ୟ ଓ ଚମତ୍କାରିତା ଅନନ୍ୟ । କବି ମାର୍କସ୍‌ବାଦୀ ନ ହେଲେ ମଧ୍ୟ ପ୍ରଗତିଶୀଳ । ନିରବତାର ଭଉଁରି ଭିତରେ ପଶି ସବୁ କିଛି ସହି ନେବା ଓ ନିର୍ଲିପ୍ତରେ ଧ୍ୟାନ ନେବା ତାଙ୍କ ପକ୍ଷରେ ଅସମ୍ଭବ । ଜଗନ୍ନାଥଙ୍କ ଆଖିକୁ ଚକାଡ଼ୋଳା ରୂପେ ବର୍ଣ୍ଣନା କରିବା ଅପେକ୍ଷା ଯୁବତୀର ବକ୍ଷୋଜସହ ତୁଳନା କରିବା ତାଙ୍କ ପକ୍ଷରେ ଯୁକ୍ତିଯୁକ୍ତ (୧୭) ଯୌନତା ଓ ଆଧ୍ୟାତ୍ମିକତାକୁ ଯୋଡ଼ିଥାଏ

---

୧୭ । 'ସମୁଦ୍ର—୧୯୭୫' ଏବଂ 'ସମ୍ପର୍କ : ପୁରୀ—୧୯୭୬' ଦ୍ରଷ୍ଟବ୍ୟ ଏ ସମ୍ବନ୍ଧରେ ୪ର୍ଥ ଅଧ୍ୟାୟରେ ଆଲୋଚନା କରାଯାଇଛି ।

ଧାଡ଼ିରେ ରଖି ତାହାର ଗୋପିତ ରହସ୍ୟ ଅନୁଭବ କରିବା ଏହାର ଉଦ୍ଦେଶ୍ୟ । ଜଗନ୍ନାଥଙ୍କ ଗୁଇ ଗୁଇକା ଜନ୍ମର ତହପଞ୍ଚରେ ନିଜର ଡଖଁ ପୃଥ୍ୱୀର ଯୋଜନାର ଦୃଶ୍ୟ ଦେଖିବା ବାସ୍ତବିକ ଅଭିନବ ।

"ଯେପରିକି ପୋଡ଼ାଜଳା ତୁମ ତହପଞ୍ଚ
ମୋ ନିଜର ଦୃଶ୍ୟାତୀତ, ଭସ୍ମାବୃତ ରାଜ୍ୟର ଖବର ।"
(ସମ୍ପର୍କ : ପୃଷ୍ଠା—୧୧୭୯)

ଇଲିଅଟ୍‌ଙ୍କ ଓ୍ୱେଷ୍ଟଲ୍ୟାଣ୍ଡୀୟ ଚିନ୍ତାଠାରୁ ଏହା ଅଧିକ ବୈପ୍ଳବିକ ଓ ନୂତନ ଭାବଉଦ୍‌ବୋଧକ । 'ତୁମସହ ମୋ ସମ୍ପର୍କ ସର୍ବୋତ୍ତମ ଲୁହର ସ୍ଥାପତ୍ୟ' କହିଲାବେଳେ କାବ୍ୟନାୟକଙ୍କ ବଳିଷ୍ଠ ପ୍ରତ୍ୟୟ ଜଗନ୍ନାଥଙ୍କୁ ପତିତମ କରି ସୁଖଦୁଃଖମୟ ଏକ ମଣିଷ୍ୟାନ୍ ଜଗତରେ ପଦାର୍ପଣ କରିଛି । ପତିତପାବନଙ୍କ ପାଖରେ ପଞ୍ଚୁଣି ସେ ଆଉ ବ୍ୟାଜ ସ୍ତୁତି କରି ପାରୁ ନାହାନ୍ତି । ଜଗନ୍ନାଥଙ୍କ ଘୋଷ ଯାତ୍ରା ପଛରେ ପତିତପାବନଙ୍କ ଜାହିର୍ ଚତୁର ମଣିଷର ଗୋଟାଏ ଆତ୍ମପ୍ରୀଜନକ ଷଡ଼ଯନ୍ତ୍ର ବୋଲି ତାଙ୍କର ଧାରଣା । "ପାଞ୍ଚ ବର୍ଷରେ ଥରେ ତୁମ ସୁନା ପହଁରାର /ଚକ୍‌କଣ ଖଡ଼ିକା ସବୁ /ସିଆଣା ଚୂଟିଆଙ୍କ ଦାନ୍ତକୁ /କେମିତି ପଚାଇ ଦିଏ ଜାଣ ତ ?" (ଛେରା ପହଁରା—ଅନ୍ତତଃ କଷ୍ଟୁପ) । ଏଭଳି ଈଶ୍ୱରଙ୍କ ପାଖରେ ଅନ୍ୟମାନେ ଗଡ଼ଗାଲି ହୋଇ ଶୋଇଯିବାବେଳେ କବି କିନ୍ତୁ ନିଜର ସ୍ଥିତିବାନ୍ ସ୍ୱତ୍ୱକୁ ତାଙ୍କ ଚରଣରେ ଲୋଟାଇ ଦେବାକୁ ଘୋର ଅସମ୍ମତି ଜଣାନ୍ତି । "ହେ ଈଶ୍ୱର, ଯନ୍ତ୍ରଣାର ଅବତାର, /ତୁମରି ଦେହଥୁ ହସ୍ତେ /ମୋ ସୁନାର ମଧାହ୍ନ ଅର୍ପିବା /ଏକ ଭ୍ରମ, ଏକ ଅଶ୍ରୁସ୍ନାତ ମଧ୍ୟ ରାତ୍ରି ।" (ସମର୍ପଣ—ଅନ୍ତତଃ କଷ୍ଟୁପ)

ଭାବରାଜ୍ୟର ସମ୍ରାଟ କାବ୍ୟନାୟକ ନିଜ ଆଖି ଆଗରେ ଦେଖୁଛି ମାଆର ମୃତ୍ୟୁ । ସେଇ ମୃତ୍ୟୁ ସହିତ ଜଳି ଯାଉଛି ସ୍ନେହ, ଶ୍ରଦ୍ଧା ଓ ଭକ୍ତିର ବଶୀଭୂତ୍ୱ । ବହ୍ନିଜ୍ୱାଳାର ଜ୍ୱଳନ ଆଧ୍ୟାତ୍ମିକତାର ଘନ ଘୋର ଭଯ଼ାବହତାକୁ ସ୍ମରଣ କରାଇ ଦେବା ସଙ୍ଗେ ସଙ୍ଗେ 'ଭଗବତର ପୃଷ୍ଠା' ଜୀବନ ପାପର ତେଲରେ ଭିଜିଯାଇଛି । (ମୋ ମା' ମୃତ—କବିତାର ମୁହଁ) । ଈଶ୍ୱରଙ୍କ ଥିବା ନ ଥିବା ମନେ ହୋଇଛି ଏକାପରି । 'ତୁ ଥିଲେ ଯାହା ନ ଥିଲେ ବି /ତାହା : କାରଣ —ତୋ ହସ ଓ କାନ୍ଦ ଭିତରେ ଯେଉଁ ତଫାତ୍ /ତୋ ସ୍ଥିତି ଓ ନାସ୍ତିତ୍ୱ ଭିତରେ /ଠିକ୍ ସେମିତି ଦୂରତ୍ୱର ସନ୍ଦେହ !" (ଥିଲେ ଯାହା ନ ଥିଲେ ବି) । ତେଣୁ ଈଶ୍ୱର ଏବଂ ଈଶ୍ୱର ସମ୍ବନ୍ଧୀୟ ସବୁ କଥାକୁ ଉପହାସର ଚୌହଦୀରେ ରଖି ଦେବା ଶ୍ରୀ ଲେଙ୍କାଙ୍କ କଷ୍ଟୁର କାବ୍ୟଚେତନାର ଅନ୍ୟତମ ଲକ୍ଷଣ । "ଯେତେବେଳେ ତୁମ/ସାନ୍ତ୍ୱନାର

ଭୂତ /ଠିଆ ହୋଇଯାଏ ସାମ୍ନାରେ /ମୋ ବର୍ଣ୍ଣସ୍ପର୍ଶୀ ପାପମାନଙ୍କୁ କହେ : ଜଳ ଆନ ପାଇଥା ପାଟିରେ /ଥୋଇ ଥୋଇ ଲେପରେ ଗାଧୋଇ ଦେଇ ସାରି ଦେହ, /ଯେମିତ ଆଖି ତଳେ/ସୃଷ୍ଟିବା ପୂର୍ବରୁ ଦେଖି ପାରିବ/ରୂପ ଗୋଟେ ନିର୍ଜନ, ଅଥଚ/ଶ୍ୟାମଳା ପୃଥିବୀ ।" (ସବୁବେଳେ ପାଖେ ପାଖେ—ଦୁଃଖ ସବୁ କଥାବାର୍ତ୍ତା )

ମାତୃ ରୂପିଣୀ ଦେବୀଙ୍କୁ ମଧ୍ୟ ଏ ଅଭିଯୋଗ ଶୁଣିବାକୁ ପଡ଼େ । ପାପପୁଣ୍ୟର ଉପଶାନ୍ତିକୁ ନିଜର ଏକଚ୍ଛତ୍ର ଅଧିକାରରେ ରଖିବା ତାଙ୍କର ଏକମାତ୍ର ସତ୍ତ୍ୱ । ସେଥିପାଇଁ ମା' ବରଜାଇଙ୍କୁ 'ଦୁଃଖର ଉଲ୍ଲଙ୍ଘ ଖଡ୍ଗ', 'ପ୍ରପଞ୍ଚ ପୃଥ୍ୱୀର ନିଷ୍ଠୁର ବର୍ଣ୍ଣ', 'ପ୍ରକୃତି ରକ୍ତବନ୍ଧ୍ୟର ମୂର୍ଚ୍ଛାସ୍ତ ସିନ୍ଦୂର' କହିବାରେ ତାଙ୍କର କୌଣସି ଦ୍ୱିଧା ନାହିଁ (୧୮) । 'ମା ଦେବୀ' କବିତାରେ ଏଇ କାବ୍ୟିକ ଅନୁଭବ ମଧ୍ୟ ବେଶ୍ ତୀକ୍ଷ୍ଣ ଓ ଅନ୍ତର୍ଭେଦୀ ।

ଏତେ ଖାଇ ସାରିବା ପରେ<br>
ଏତେ ସୃଷ୍ଟି ନେଲା ପରେ ବି<br>
ତୋର ଭୋକ ? ଖାଇଲୁ ସଦ୍ୟସ୍ନାତ ଯୋଜନର<br>
ପୃଥିବୀ, ଗିଳିଲୁ ଅଜସ୍ର ସ୍ୱପ୍ନର ଯୌବନ,<br>
ଚର୍ବଣ କଲୁ ଚରାଚରର ଅତୃପ୍ତତାର କୋଳାହଳ<br>
ର କନ୍ଦନ । × × ×<br>
ତଥାପି ତୋ ଜିଭ ଲହ ଲହ<br>
ନବୃନ ଅନ୍ଧାରର ବେଦୀରେ, ତଥାପି<br>
ତୋ ହାତ ଶୂନ୍ୟରୁ ଭିକ୍ଷା ଆଣୁଚି<br>
ଖଣ୍ଡିତ ଆକାଶର ଜୀବନ ! କି ଭୋକ ଲୋ<br>
ତୋର, ମା' ।" (୧୯)

କବି ଶ୍ରୀ ଲେଙ୍କାଙ୍କ ମନରେ ଯେଉଁ ସଂଶୟ ଆସିଛି ତାହା ଅଧାର୍ମିକୋଚିତ; ମାତ୍ର ଧାର୍ମିକର ବି ସଂଶୟ ଆସେ । କୌଣସି ମଣିଷ ଏଇ ସଂଶୟର କବଳ ମୁକ୍ତରୁ କହିଁ ପାରନ୍ତି ନାହିଁ । ଏହା ସତ୍ତ୍ୱେ ପ୍ରତ୍ୟେକଟି ମଣିଷ ଏକ ସ୍ୱତନ୍ତ୍ର ବ୍ୟକ୍ତ ସତ୍ତ୍ୱା ଏବଂ ସେଇ ଦୃଷ୍ଟିରୁ ପଥ ବି ଭିନ୍ନ । ଆଜି ବିଜ୍ଞାନ ଯୁଗରେ ଯେଉଁଠି ପରୀକ୍ଷା-ଧର୍ମିତାକୁ ବେଶି ଗୁରୁତ୍ୱ ଦିଆଯାଏ,, ସେଠି ମେଟାଫିଜିକ୍ସ ଉଠେଇବା ବଡ଼

୧୮ । 'ସାଗର ଗର୍ଭ ଉଜାଗର'—ଗୀତ ମା' ନାରେ ପକ୍ଷୀ—ପୃ. ୯ ।<br>
୧୯ । 'ମା' ଦେବୀ,—ଙ୍ଗିବାର ବେଳ—ପୃ. ୬୮ ।

ଦୁରୂହ । ବର୍ତ୍ତମାନର ଜଗତକୁ ନଦୀ ଜଳ ଧରନ୍ତୋନକୁ ପ୍ରଶଂସିବା ଜଳ ମଧ୍ୟରେ ତେଣୁ ଗ୍ରହଣୀୟ ହୋଇ ପାରେ ନାହିଁ । ଧର୍ମ ଓ ଦର୍ଶନର ମୂଳତତ୍ତ୍ୱ ଯାହା ହେଉ ନା କାହିଁକି ? ଜଳ ସ୍ଥିତ ଉପରେ ବଞ୍ଚିବାର ଦାବୀକୁ ସବ ପ୍ରଥମ ଗୁରୁତ୍ୱ ଦିଅନ୍ତି ଶ୍ରୀ ଲେଙ୍କା । ଅନ୍ୟର ଅଭିଜ୍ଞତାକୁ ନିଜର ବୋଲି ମୋହିର ମାତ୍ର ଆପଣାକୁ ସଚେତନ ଭାବେ ଠକିବା ମଣିଷର ଗୋଟାଏ ବଡ଼ ଦୁର୍ବଳତା । ଅନ୍ୟ ଜଣେ ଠାକୁରଙ୍କୁ ପୂଜୁଛି ବୋଲି ମୁଁ ଯେ ପୂଜିବି ଏପରି କଥାର କୌଣସି ମୂଲ୍ୟ ନାହିଁ । ଯେଉଁମାନେ ଧର୍ମର କୈବକେତନ ଉଡ଼ାଇବା ଲକ୍ଷ୍ୟରେ କାର୍ଯ୍ୟ କରନ୍ତି, ସେମାନଙ୍କ ନିକଟରେ ଅନେକାଂଶ ଲୁଚି ରହିଥାଏ ପ୍ରବଞ୍ଚନାର କାଳସର୍ପ । ଏ ପ୍ରକାର ବ୍ୟକ୍ତି କାପର ବରଂ, ତାହା ପ୍ରଥମେ ପରାଶ୍ରୟାସାପେକ୍ଷ । ଭଗବତ୍ ସ୍ୱଭାବାଶ୍ରୟୀ ହୋଇ ଅନ୍ୟୋନ୍ୟାଶ୍ରୟ ବଞ୍ଚିବା ଆମର ଆବଶ୍ୟକତା ବୋଲି ଆମେ ଶାସ୍ତ୍ରରୁ ପଢ଼ୁ, ଅଥବା ବେଦ ଓ ଉପନିଷଦ ପାତ୍ୟନ୍ତିକ ପ୍ରଭାଗ ଧାର୍ମିକମାନଙ୍କୁ ଶୁଣୁ । କିନ୍ତୁ ତାହା କାର୍ଯ୍ୟତଃ ଗୋଟାଏ କାନରେ ପଶି ଅନ୍ୟ କାନ ଦେଇ ବାହାରି ଯାଏ ଏବଂ ଦୈନନ୍ଦିନ ଜୀବନଚର୍ଯ୍ୟା ଭିତରେ ଅଗ୍ନୁନକ ଭାବେ ଈଶ୍ୱର ମନେ ପଡ଼ିଗଲେ ଆମେ ଆବେଗିକ ହ୍ରଦକୁ ନିଜକୁ ଟାଣି ନେଇ ଈଶ୍ୱରବିଶ୍ୱାସର ଅଦୃଶ୍ୟ ମୁକ୍ତି ପିନ୍ଧିବାର ବୃଥା ଛଳନା କରୁ । ତେଣୁ ଆଜିର ଧର୍ମ ହୋଇଛି ଧର୍ମବିନା ଏକ ଧର୍ମପରାୟଣତା (୧୦) ଭାଷାଧର ମହତ୍ତ୍ୱପୂର୍ଣ୍ଣ ଅର୍ଥ କାଳ କବଳରେ କାପର ସଙ୍କୁଚିତ, ତାହା ଦେଖାଇ ଦେବା ହିଁ ଏଠି କବିଙ୍କ ପ୍ରଚ୍ଛନ୍ନ ଉଦ୍ଦେଶ୍ୟ । କବି ଯେଉଁ ଈଶ୍ୱରଙ୍କୁ ଦେଖିବାକୁ ଇଚ୍ଛୁକ, ସେ ବୈଚିତ୍ର୍ୟମୟ ସଂସାରର ସ୍ରଷ୍ଟା । କିନ୍ତୁ ବୈଚିତ୍ର୍ୟ ଭିତରେ ବିଶୃଙ୍ଖଳା ଦେଖିଲେ ସ୍ରଷ୍ଟା ପ୍ରତି ସନ୍ଦେହ ଆସିଯାଏ କବିଙ୍କର । ( ଯଦିଓ ବ୍ୟତିକ୍ରମ ଓ ବିଶୃଙ୍ଖଳା ବିନା ବୈଚିତ୍ର୍ୟର ମହତ୍ତ୍ୱ ନ ଥାଏ । ) 'ମଣିଷ ଓ ସମୁଦ୍ର' କବିତାରେ ବୋଦ୍‌ଲେୟାରଙ୍କ ଦୃଷ୍ଟିଭଙ୍ଗୀ ଠିକ୍ କମଳାକାନ୍ତୀୟ ଦୃଷ୍ଟିଭଙ୍ଗୀ ସହ ସାମଞ୍ଜସ୍ୟ ରକ୍ଷା କରୁଛି । "O Man, so long as you are free you will cherish the sea ! The sea is your looking glass; you contemplate your own soul in the infinite unfolding of its waves, while your mind is a no less bitter gulf." ( Man and the Sea )—1852, ତେବେ ପ୍ରମାଣିତ ବସ୍ତୁନିଷ୍ଠ ଜ୍ଞାନ ପଛରେ ଦଉଡ଼ି ମଣିଷ ହୃଦୟରୁ ଆବେଗ ନାମକ ସୁକୁମାର ବୃତ୍ତି ଯେ କ୍ରମଶଃ ମଉଳିବାରେ ଲାଗିଛି, ଏଥିରେ ସନ୍ଦେହ ନାହିଁ । ସେଥିପାଇଁ ଧର୍ମ ଓ ଈଶ୍ୱର କେବଳ ଜୀବନର ବହିରଙ୍ଗକୁହିଁ ଛୁଇଁ ଯାଉଛି, ଅନ୍ତରଙ୍ଗତା ସ୍ଥାପିତ ହୋଇ ପାରୁନାହିଁ । ଆମର ଏସବୁ ବସ୍ତୁର ଓ ଭାବନା ଭାଷାକରଣର

୧୦ । ମହାପାତ୍ର, ସୀତାକାନ୍ତ—'ନିଃସଙ୍ଗ ମଣିଷ'—ପୃ. ୧୦୯ ।

ହୋଇଥିବାରୁ ଅସଲ ବାଧା ଉପୁଜୁଛି । "ଆମେ ଆମର ଅହଙ୍କାରଗୁଡ଼ିକୁ ନ ଛାଡ଼ିବା ପର୍ଯ୍ୟନ୍ତ ଈଶ୍ୱରଙ୍କୁ ଛୁଇଁ ପାରିବୁ ନ ।" (୨୧) ଏତତ୍‌ସତ୍ତ୍ୱେ ଏହା ମୂଲ୍ୟବାନ ମନ୍ତବ୍ୟସବୁ ଛାଡ଼ି ଦେଇ କମଳାକାନ୍ତ ନିଜ ଅଣୀଚେତନାର ଧାରାକୁ ଏକ ନାଟକୀୟ ଛନ୍ଦରେ ପଦ୍ୟାକାର ଦେଇଥିବାର ମନେହୁଏ ।

"କହିଲି — ପ୍ରଭୁ, ମୋତେ
ଗୋଟେ ଭୂଖାଗ୍ରତ ରାଜ୍ୟକୁ
ନେଇ ଯାଅ । ତୁମେ
ଖାଦ ରାଜ୍ୟରେ
ସମ୍ରାଟ୍ କରି ଦେଲ ।"

( ତୁମର କରୁଣା ପ୍ରଭୁ "ଉନ୍ମୋଚନ" )



---

୨୧ । ମହାନ୍ତି, ଶରତ କୁମାର—ଅସ୍ତିତ୍ୱବାଦର ମର୍ମକଥା—ପୃ. ୬୭ ।

# ସପ୍ତମ ଅଧ୍ୟାୟ

## ପଲ୍ଲୀ ଆତ୍ମୀୟତା : ମାଟି, ପାଣି ପବନର ରଙ୍ଗ ଓ ବାସ୍ନା

ଓଡ଼ିଶାର ପଲ୍ଲୀ କୋଳରେ କମଳାକାନ୍ତଙ୍କର ଜନ୍ମ । ତେଣୁ ପଲ୍ଲୀ ତାଙ୍କର ପ୍ରାଣ । ତାହାର ମାଟି ପାଣି ପବନ ସହ କବିଙ୍କର ଆତ୍ମୀୟତା ଅତି ନିବିଡ଼ । ସବୁଜ ଶସ୍ୟଭରା ଧାନ କ୍ଷେତ, ପ୍ରଶସ୍ତ ଆକାଶର ନୀଳିମା, କାନନ କାନ୍ତାରର ମାଧୁରିମା, ବେଗଗାମୀ ନଦୀ, ବିସ୍ତୀର୍ଣ୍ଣ ପ୍ରାନ୍ତର, ଟାଙ୍ଗର ଭୂମି, ଗୋଠହିଜା ବାଳୁଙ୍ଗାର ଲୁହଭିଜା ଆଖି, ଗାଁର ଲଙ୍ଗଳା, ଖେଳନ୍ତ ଶିଶୁର କରୁଣ ଧ୍ୱନି ସହ କବି ଆଜନ୍ମରୁ ଏକାତ୍ମ । ପଲ୍ଲୀହିଁ ତାଙ୍କ କବିତାର ଜନନୀ । କେବଳ କମଳାକାନ୍ତ କାହିଁକି, ଏହି ପଲ୍ଲୀ ଚେତନା ମାନବୀୟ ପ୍ରାଣ ଗଠନର ସର୍ବପ୍ରଥମ ଉପାଦାନ । ପଲ୍ଲୀ ପ୍ରକୃତିର ସାନ୍ନିଧ୍ୟରେ କବିଙ୍କର ଅନାବିଳ ସାରଲ୍ୟ ସଂଲଗ୍ନ । କିନ୍ତୁ ନନ୍ଦକିଶୋରଙ୍କ ଭଳି ପଲ୍ଲୀ ପ୍ରାଣ କବି ହେବା ତାଙ୍କ କାବ୍ୟଚେତନାର ଉଦ୍ଦେଶ୍ୟ ନୁହେଁ । ପ୍ରକୃତିକୁ ସେ ସବୁବେଳେ ମଣିଷ ଜୀବନ ସହ ଅଙ୍ଗୀକୃତ କରି ଦେଖିବାରେ ଅଭ୍ୟସ୍ତ । ତେଣୁ ପଲ୍ଲୀ ତାଙ୍କ କାବ୍ୟ ଚେତନାର ସ୍ଥିତି, ପ୍ରବୃତ୍ତି, ଓ ପ୍ରଗତି । ପଲ୍ଲୀହିଁ ତାଙ୍କ ପ୍ରାଣର ଆରାମ, ଆତ୍ମାର ଆନନ୍ଦ ଓ ହୃଦୟର ଶାନ୍ତି । ଅନନ୍ତ ଶକ୍ତିର ଅଫୁରନ୍ତ ଉତ୍ସ ଏହି ପଲ୍ଲୀ ବାଲ୍ୟ, କୈଶୋର ଏବଂ ଯୌବନର ପ୍ରଥମ ପାହାଚରେ ଯେପରି ନିତ୍ୟ ନୂତନ ,ଅବଶିଷ୍ଟ ଜୀବନରେ ପଲ୍ଲୀଠାରୁ ଇଟା କଂକ୍ରିଟ୍‌ର ସହର ଭିତରକୁ ଦୂରେଇ ଆସିଥିବା କବି ପକ୍ଷରେ ସେହିପରି ମନୋମୁଗ୍ଧକର । ଜୀବନର ପ୍ରତିକୂଳତାରେ ଠିଆ ହୋଇ ଗ୍ଲାନି ଓ ନୈରାଶ୍ୟରେ କ୍ଳାନ୍ତ ଅନୁଭବ କରୁଥିବା କବି ବାରମ୍ବାର ଚାହିଁଛନ୍ତି ସେହି ପଲ୍ଲୀର ମହନୀୟ କୋଳକୁ ଫେରିଯିବେ ।

ନଗର ସଭ୍ୟତାର ଉନ୍ମେଷ ପଲ୍ଲୀର ପ୍ରାଣ ପ୍ରାଚୁର୍ଯ୍ୟପୂର୍ଣ୍ଣ ଜୀବନସତ୍ତାକୁ ଅପହରଣ କରି ନେଇ ଯାଉଛି । ବିପୁଳ ଐଶ୍ୱର୍ଯ୍ୟର ଶୋଭାସମ୍ଭାର ଏଇ ପଲ୍ଲୀର ବିଶିଷ୍ଟ ଅଂଶ ପ୍ରକୃତି ଆଜି ମଣିଷଦ୍ୱାରା ଧର୍ଷିତା । ତାର ବିକଚ ଯୌବନରେ ଆଜି ହାହୁତାଶର ଛାଇ । ଯନ୍ତ୍ରଣାକାତର ଅସ୍ୱସ୍ତିର ପ୍ରଲେପ । ନଦୀ ସମୁଦ୍ର ଗଛ ବୃକ୍ଷ, ପଶୁ ପକ୍ଷୀ, ମଣିଷ ଆଜି ଯେପରି ଏକ ବେସୁରା ସଙ୍ଗୀତର ଛନ୍ଦହରା, କରୁଣତା । ଭଙ୍ଗା, ଦାଦରା, ହୁଲି ଡଙ୍ଗା ଘର ପଲ୍ଲୀର ଜୀବନ ଆର୍ଥନୀତିକ

ସଂଗ୍ରାମରେ ଯେପରି ପରାଜିତ । "ତେଲ ଲୁଣର କଥା ବନିଆ ଜୀବନ : /ମାଛ ବଜାରେ ନଈ, ହଉଥାଏ, କଳ କଳ,/ ବହୁଥାଏ ଗ୍ଲେଟେଇ ଗ୍ଲେଟେଇ । ଯା' ଭିତରୁ /କ୍ଲୁକ୍ଲୁ ଶୁଭୁଥାଏ ଉଡ଼ନ୍ତିଏ, କୁକୁକୁଳା ପୋକଟିଏ/ ଆଖି ନାହିଁ, କାନ ନାହିଁ, ସଳେଇବା ଝିଅ ନାହିଁ,/ ଏ ମୁଣ୍ଡରୁ ଆର ମୁଣ୍ଡ ଦଉଥାଉ ଆଖି ଯାଏ ନାହିଁ ।" (ଜଳ ସବୁ ଗୋଟେ ସାକ୍ଷାତକାର—ପୃ. ୪) । ମଣିଷ ଗଢ଼ି-ପାରେ ନା ପ୍ରକୃତିକୁ, କିନ୍ତୁ ଧ୍ୱଂସ କରିଦିଏ ସୁଷମା ମଣ୍ଡିତ ପ୍ରାଣ ଶକ୍ତିର ଲକ୍ଷ୍ମୀକୁ । ଯେଉଁଠି ମଣିଷ ନିଜ ହାତରେ ପ୍ରକୃତିର କାଣ୍ଟ ଛାଣ୍ଟ କରି ପାରେନି ନା ସେଠି ସେ ପ୍ରକୃତିକୁ ଖଣ୍ଡ ଭାବରେ ଦେଖି ନିଜର କଥା ପ୍ରକୃତିର ବାହୁଳ ଷଡ଼ ସାଧନ କରେ । ନିଃଶବ୍ଦ ଆକାଶର ତାରାଖଚିତ ଆକାଶ ଅରୂପର ଭାବନା ସଞ୍ଚାର କରିବା ପରିବର୍ତ୍ତେ ଆଣେ ନିଃସଙ୍ଗତାର ବେଦନା । ଧନଧାନ୍ୟଭରା ପଲ୍ଲୀଜୀବନ ନିଷ୍ଠୁର ଭାଗ୍ୟର ଦନ୍ତାଘାତରେ ବିପର୍ଯ୍ୟସ୍ତ, ମେରୁଦଣ୍ଡ ତା'ର ଭଗ୍ନ । ତେଲଲୁଣର ସଂସାରରେ ବ୍ୟତିବ୍ୟସ୍ତ ମଣିଷର ଆଜି ସମୟ କାହିଁ ପ୍ରକୃତିକୁ ଉପଭୋଗ କରିବ ? ନଗର କେନ୍ଦ୍ରିକ ସଭ୍ୟତାର ଆର୍ଥନୀତିକ ପ୍ରତିଯୋଗିତାରେ ପଲ୍ଲୀ ସଭ୍ୟତାର ବିସ୍ମୟକ ଭାବମୂର୍ତ୍ତି ଆଜି ବେଶ୍ ସ୍ପଷ୍ଟ । ଏହି ଅବକ୍ଷୟକୁ ନନ୍ଦକିଶୋର, ପଣ୍ଡିତ ଗୋଦାବରୀଶ ଲକ୍ଷ୍ୟ କରିଥିଲେ, କିନ୍ତୁ ସଚ୍ଚିଦାନନ୍ଦ ରାଉତରାୟ ଏହାର ଗମ୍ଭୀରତାକୁ ଉପଲବ୍ଧି କରିଛନ୍ତି । 'ପଲ୍ଲୀଶ୍ରୀ'ରେ ପଣ୍ଡିତଜୀଙ୍କ ଗାଁଟା ହେଲା /ଉଦ୍ଧରେ ନାଚେ ବାଳୁଆ ପିଲା, /ଉଚ୍ଛନ୍ନ ହେଲେ, ଆମ୍ବାମ ଗଲେ /ଘରେ ତ ଲକ୍ଷ୍ମୀ ନାହାନ୍ତି ।" (ଶ୍ରେଷ୍ଠ ମୋର ଗାଁଟି) । କମଳାକାନ୍ତଙ୍କ 'ସୁନାଫସଲ' (୧୯୫୮), ଓ 'ଗ୍ରୀଷ୍ମ ଓ ପ୍ରଶାନ୍ତ' (୧୯୬୭)ର କାବ୍ୟିକ ଦୃଷ୍ଟିଭଙ୍ଗୀ ଏକ ଶ୍ରେଣୀର । ପଲ୍ଲୀର ଅସ୍ଥି କଙ୍କାଳସାର ମଣିଷଟି ଅଶନ ବସନ ଭିନ୍ନ କପର ମୁଣ୍ଡ ଝାଳ ତୁଣ୍ଡରେ ମାରି ଖଟୁଛି, ହାତରେ କୋଦାଳ ଧରି କ୍ଷେତରେ ପ୍ରାଣପାତ କରୁଛି, କେଉଁଠି ସଭ୍ୟତାର ଅଳିଆ ଆବର୍ଜନାକୁ ମୁଣ୍ଡରେ ବୋହି ସଫା କରୁଛି ତ କେଉଁଠି ସହରର ବଜାର ଅଥବା ସାରକୁଦ ଯାଇ ମୂଲ ଲାଗୁଛି । ତଥାପି ହାହାକାରର ଉପନ କଟୁ ନାହିଁ । (୧) ମାନବବାଦୀ କବି ପ୍ରାଣ ପଲ୍ଲୀ ମଣିଷର ଏ ଦୁରବସ୍ଥାରେ ବ୍ୟଥିତ । ଜଙ୍ଗଲରେ ମାଟି ଘର, ମୁଠା ମୁଠା ରକ୍ତ ଛାଞ୍ଚ, କାକର ବତାସ, ଶୀତ ବର୍ଷା ଏବଂ ସ୍ପୀଚ ଗାଳିକୁ ବେଖାତିର୍ କରି ଗ୍ରାମିଆ ତାର ସୁନ୍ଦର ସଂସାରକୁ ଚଳାଇନିଏ । "ରଜ ପରବ ମକର ଭୋଜି, /ଚକୋଉ ପିଠା, ସାକର ଭଜି— /ଘରଣୀ ଯେବେ ପରଶି ଦିଏ /ପିଲା ଛୁଆଙ୍କ ମେଳେ ରେ /ଏଇ ଗାଁ ଟି ପଡ଼େ ।" (ଗ୍ରାମିଆର ସଂସାର—ସୁନା ଫସଲ) । ସ୍ୱାମୀ ସ୍ତ୍ରୀ ଫୁରସତ୍ ପାଇଲେ ବୁଲେଟି

---

୧ । ଦରିଦ୍ର ନାରାୟଣ—'ସୁନା ଫସଲ', ପୃ. ୪ ।

ଅଭିନବ ଅନେକ କଥା କୁହନ୍ତି ! ସଚ୍ଚିଦାନନ୍ଦଙ୍କ 'ପଲ୍ଲୀଶ୍ରୀ'ର ବାଚ୍ୟାନୁବାଦ ଏହା ହେଉ ବୃନ୍ତବର୍ତ୍ତୀ ନୁହେଁ । 'କଥାଚିଏ' ଓ 'ଶିଳ୍ପୀ' କବିତା ଦୁଇଟି ଯଥାକ୍ରମେ 'ପଲ୍ଲୀଶ୍ରୀ'ର 'ପଦ୍ମଲତିକା' ଓ 'ପଲ୍ଲୀ ହଷ୍ଟ' କବିତା ଦ୍ୱାରା ପ୍ରଭାବିତ । କବି ନେଡ଼େଲେବେଳେ ଲକ୍ଷ୍ୟ କରିଥିଲେ, ଯେବେବି ତାଙ୍କର ଜନ୍ମପଲ୍ଲୀ ପରି ପରିବେଶରେ ବିତୁଥିଲ । ଗ୍ରାମ୍ୟ ଚିତ୍ର ପ୍ରଦାନରେ ସେ ଏଠି କବି ଗୁରୁତରଙ୍କୁ ଅତିକ୍ରମି ଯିବା ସମ୍ଭବ ହୋଇ ନାହିଁ ।

"ମାଛ ଅନ୍ଧାରୁ ଉଠିଛୁ ନାଆକ ଘର ବୋହୁ
ଯତନେ ପାଉଛି ଦେବ ସାର,
ଭଉଣୀ ଗୁଡ଼ାକ ଚଳାଇ ନ ଦେଲେ ବାଟେ ଘାଟେ
ସବାକୁ ସଙ୍ଗେ ଆଖି ମାର ।
ମରମରେ ତାର ସରମ ଭରିଛୁ ଚନ୍ଦ୍ର ବନୁ—
ଶାଶୁ ଘରେ ଯେବେ ପାଦ ଦେଲୁ ।
ଜଅଁଶୀ ଉଗାଶ ଅବଗୁଣ୍ଠ ଖୋଲ ଶୁଣିବାକୁ
ଝିଅକା ରଖନ୍ତୁ ଦରମେଲୁ ॥ (କଥାଚିଏ)

କମଳାକାନ୍ତଙ୍କ 'ଶିଳ୍ପୀ' କବିତାର ବକ୍ତବ୍ୟ ସଚ୍ଚିଦାନନ୍ଦଙ୍କ 'ପଲ୍ଲୀସନ୍ଧ୍ୟା'ର ବକ୍ତବ୍ୟ ସହ ସମତା ରକ୍ଷା ନ କଲେ ବି ଅନୁକରଣ ସୁସ୍ପଷ୍ଟ ଭାବେ ପରିଲକ୍ଷିତ । ସଚ୍ଚିଦାନନ୍ଦଙ୍କ "କାକର ଭିଜଲା ବଣବୃନ୍ଦା ଶିରେ କପୋତ ବାହୁନ ବାଇଲ/ଦେଖ ରଙ୍ଗ ରଙ୍ଗ ଧନ ହେଲ୍ ଗଡସାଥୀ ଯେ ବାହୁଛନ୍ତି ନଇଲ ।" ସ୍ଥଳରେ ଶ୍ରୀ ଲେଙ୍କା ଲେଖିଛନ୍ତି, "କାକର ପଖଳା ସବୁଜ ବାସୁଆ ଯେତେ /କନକ କିରଣ ସ୍ୱରୂପ ଦେଲେ ଗୋ ବୁଣି ।" ତୁଳନୀୟ । କେବଳ ଅନୁକରଣରେ ଯେ ସେ ପଲ୍ଲୀ ଆଡ଼କୁ ଆକର୍ଷିତ, ତା ନୁହେଁ, ବରଂ ଅନ୍ତରଙ୍ଗତାରେ ସେ ପଲ୍ଲୀର ଅତି ନିକଟବର୍ତ୍ତୀ । ଯେଉଁ ପଲ୍ଲୀ କୁଞ୍ଜରେ ତାଙ୍କର ଶୈଶବ କଟିଛି [illegible], ତା' ମଧ୍ୟ କବିଙ୍କର ଘନିଷ୍ଠତା ରହିବା ସ୍ୱାଭାବିକ । ସେଥିପାଇଁ ପଲ୍ଲୀର ଚିତ୍ର ଚିତ୍ର, ଶୋଭା ସମ୍ପଦ ଅତୁଳନୀୟ । ଗାଁ ପାଖ ଦେଇ ଧୀର ଗତିରେ ବହିଯାଉଥିବା ତଟିନୀର ମୃଦୁ ମନ୍ଦ ତାନ, [illegible] ଶୋକ ପାଶୋରି ଅପୂର୍ବ ଭୁବନର [illegible] ସ୍ୱର୍ଗ [illegible] କୌଣସି ଗୁଣରେ କମ୍ ନୁହେଁ (୨) 'କ୍ଷୀର ସାଗର', 'ସୁନା ଫସଲ' କବିତା ପଲ୍ଲୀର ବୈଚିତ୍ର୍ୟମୟ ଜଗତର ସ୍ନିଗ୍ଧତା ଓ ସମତାର ପରିଚାୟକ । ପଲ୍ଲୀର

୨ । [illegible]

ବୈଚିତ୍ର୍ୟହୀନ ପ୍ରଶାନ୍ତ ତଳରେ ବି କବି ଦେଖିଛନ୍ତି ହତଭାଗ୍ୟ ମାଆର ଦୁଃଖ ବେଦନାକୁ, ସେ କି ସମ୍ପୂର୍ଣ୍ଣ ଭାବରେ ସାହା ଭରସାହୀନ । ଯୌବନ ଅସ୍ତମିତ ହେବା ପୂର୍ବରୁ ସ୍ୱାମୀର ମୃତ୍ୟୁ ତା' ପ୍ରାଣରେ ଦେଇଥିଲା କଠୋର ଆଘାତ । ପୁଅ ବଗୁଲାକୁ ଆଶ୍ରା କରି ଘର ଘରେ ପାଇଟି କରି ଜୀବନଟା ବଞ୍ଚିଯିବ ବୋଲି ହୁଏତ ସେ ଆଶାପୋଷଣ କରିଥିଲା । କିନ୍ତୁ ପୁଅର ଅକାଳ ମୃତ୍ୟୁରେ ସବୁ ଆଶା ଭରସା ପାଣି ଫାଟିଗଲା । (୩) ଶେଷରେ ହେବାପାଇଁ ତାକୁ ରୂପବତୀ ହୋଇ ବାଳସିବାକୁ ପଡ଼ୁଛି । କବି ଦୃଷ୍ଟିରେ ଏ ଅନୁଭବ ବେଶ୍ ଗଭୀର ଏବଂ ପଲ୍ଲୀ ଜୀବନର ଦୁରବସ୍ଥା ଏହାର ମଧ୍ୟରେ ପରିସ୍ଫୁଟ ।

କବି ମନରେ ଯେଉଁ ବିଦ୍ରୋହର ସୂତ୍ରପାତ ହୋଇଛି, ତାର ସମାଧାନର ଉପାୟ ଖୋଜି ସେ ପାଇନାହାନ୍ତି । ଏଠି କମଳାକାନ୍ତଙ୍କ ପରିଚିତ ପଲ୍ଲୀର ମୋହଗ୍ରସ୍ତ ମଣିଷ ଭଳିରେ । ପଲ୍ଲୀ ବାହାରର ଜଗତକୁ ସେ ଏହା ପୂର୍ବରୁ ଦେଖି ନାହାନ୍ତି । ତେଣୁ ଯେ କୌଣସି ପରିସ୍ଥିତିରେ ପଲ୍ଲୀ ତାଙ୍କର ଶ୍ରେୟସ୍କ ହୋଇ ଉଠିଛି । 'ପ୍ରୀତି ଓ ପ୍ରକୃତି' (୧୯୬୬) ଶେଷ ପର୍ଯ୍ୟନ୍ତ ତେଣୁ ଏଇ ମୋହଗ୍ରସ୍ତ ସ୍ୱର ବେଶ୍ ପରିଷ୍କାର ଭାବରେ ଶୁଣିବାକୁ ମିଳିଛି ।

> "କୁଞ୍ଜ କାନନ ବଣ୍ଟଲତାର ସବୁଜ ଓଢ଼ଣା ତଳେ
> ଚମ୍ପୟେ ଶୁଣେ— ନିର୍ଜନେ କିଏ ଢାଳିଲା ସୁର ତୋଳେ,
> ତା' ଗୀତେ ଝରଇ ଜୀର୍ଣ୍ଣ ଝରାର ମଗ୍ନଚକା ମିଛ ହାସ,
> ସେଥିପାଇଁ ଅଙ୍ଗ ଅନ୍ତରେ ମମ ଲାଗିଛି ଫାଲ୍‌ଗୁ ବାସ ॥
> ( ବନ ମର୍ମର ଗୀତ—ପ୍ରୀତି ଓ ପ୍ରକୃତି )

ମାତ୍ର 'ସୁନା ଫସଲ'ର ସରଳ କବି ମନ 'ପ୍ରୀତି ଓ ପ୍ରକୃତି'ରେ କ୍ରମଶଃ ଅଭିଘାତର ସମ୍ମୁଖୀନ । ଅଧ୍ୟାପକ ସୁଧାଂଶୁ ଶେଖର ଗସ୍ତ ଯଥାର୍ଥରେ କହନ୍ତି— "କବି ଜୀବନ ଲତିକାରେ ଯେଉଁ ଫୁଲ ଦେଖିଛନ୍ତି, ତାର ଅନ୍ତରରେ—'ବାସ୍ତବର କଳା କଜ୍ଜଳ ମେଘର' ସ୍ପନ୍ଦନ ରହିଛି—ରହିଛି ପୁଣି 'ଛଳନା ଓ ଇନ୍ଦ୍ରଧନୁର ଛଟା' । କବିଙ୍କର ଆଖି ଆଗରେ ଝଡ଼ର ଧୂସର ଘୂର୍ଣ୍ଣି ଭେଦ କରି କଳାମେଘର ଯେଉଁ ଦ୍ୟୁତି କହିଁ ଅସେ ପୃଥିବୀ ବକ୍ଷରେ ତାହାର ପ୍ରଥମ ଚୁମ୍ବନ ହିଁ ତାହାର ସମସ୍ତ ଉତ୍ତାପକୁ ଏକ ଅପୂର୍ବ ଗୌରବ ଦାନ କରେ ।" (୪) "ପ୍ରକୃତି ଓ ଜୀବନ" କବିତାରେ ଏହାର ସ୍ୱାକ୍ଷର ନିହିତ ।

---

୩ । 'ନେଡ଼ି'—ସୁନା ଫସଲ—ପୃ. ୨୫ ।
୪ । 'ପ୍ରୀତି ଓ ପ୍ରକୃତି'ର ମୁଖବନ୍ଧ 'ମୋ ଦୃଷ୍ଟି କୋଣରୁ'— ସୁଧାଂଶୁ ଶେଖର ଗସ୍ତ ।

"ଏଇ ଘୂର୍ମନ୍ତ ମେଘର ଚନ୍ଦ୍ରାଚ୍ଛନ୍ନ ଆଖିରେ
କେତେ ଲୁହ ଜମିଚି
ମୁଁ ଦେଖି ନାହିଁ,
ଏଇ ଚନ୍ଦ୍ରାଲୋକର ଶୀତଳ ତନୁଶ୍ରୀରେ
କେତେ ବ୍ୟର୍ଥତାର ମୁଦ୍ରାଙ୍କ ରହିଚି,
ମୁଁ ପଢ଼ିନି ନାହିଁ।"

( ପ୍ରୀତି ଓ ପ୍ରଶାନ୍ତି—ପୃ. ୧୭ )

ପାଣି, ପବନ, ଆଲୋକ ତଳେ କେତେ ଯେ କାରୁଣ୍ୟର ବେଦନା ରହିଛି, ତାହା କବିଙ୍କୁ ଦିନେ ଅଜଣା ଥିଲା। ମାତ୍ର ସମୟକ୍ରମେ ସେ ଏଥିପ୍ରତି ସଚେତନ ହେବାକୁ ଆରମ୍ଭ କରିଛନ୍ତି। ତଥାପି ପ୍ରକୃତିର ବସ୍ତୁନିଷ୍ଠ ସତ୍ତା ସାମଗ୍ରିକ ଭାବରେ କବି ପ୍ରାଣକୁ ଝଡ଼ର ଘୂର୍ଣ୍ଣାବର୍ତ୍ତ ଭିତରେ ଆଲୋକବର୍ତ୍ତିକାର ସନ୍ଧାନ ଦେଇଛି। "ଆକାଶରେ କଳା ମେଘର ଆସର ଜମିଚି /ବଦଳର ବର୍ଷା ପାହାନ୍ତ—/ ଗେରୁଆ ରଙ୍ଗର କୋଶ ପିଚକାରୀ ମାରି /ଧୂଳି ଗଲେ ଭୂଇଁ।" (ଚୁମ୍ବନ—ପ୍ରୀତି ଓ ପ୍ରଶାନ୍ତି)। ନିଦାଘ ଜ୍ୱାଳାରେସନ୍ତାପିତ ପୃଥିବୀ ବକ୍ଷରେ ମେଘ ପ୍ରଥମ ଚୁମ୍ବନ ଦେଲାପରେ ତାଙ୍କ ପ୍ରାଣରେ ସବୁ ବେଦନା, କ୍ଲାନ୍ତି, ନୈରାଶ୍ୟ ଭିତରେ ବଞ୍ଚିବାର ଆଶା ଓ ଆଶ୍ୱାସନା ଘନୀଭୂତ ହୋଇଯାଇଛି।

ଜୀବନ ସଂଗ୍ରାମରେ ମଣିଷ ପ୍ରକୃତିଠାରୁ ବିଚ୍ଛିନ୍ନ ହେବାକୁ ଆରମ୍ଭ କରିଛି। ସୁତରାଂ ପୂର୍ବ ଯୋଗସୂତ୍ରର ବନ୍ଧନ ଛିଣ୍ଡିଯିବାକୁ ବାଧ୍ୟ। ପୂର୍ବର ସବୁ ସଭ୍ୟତା ପ୍ରକୃତିର ମନୋରମ କୋଳରେ ଗଢ଼ି ଉଠିଥିଲା ବେଳେ ଆଧୁନିକ ସଭ୍ୟତା ପ୍ରକୃତିଠାରୁ ଦୂରେଇ ଯିବାରୁ ଏହି ବିଷମସ୍ଥ ପରିସ୍ଥିତିର ସୃଷ୍ଟି। ମୁଖାପିନ୍ଧା ଛଳନାର ମଣିଷ ନିଜକୁ ନିଜେ ସାମ୍ନା କରିବାର ଦୁଃସାହସ ହରାଇ ବସିବା ବେଳେ ପ୍ରକୃତି ତାକୁ ଟାଙ୍ଗର ଭୂଇଁ ଭଳି ଦେଖାଯିବା କିଛି ଅସ୍ୱାଭାବିକ ନୁହେଁ। "ନିଜଂଟସ୍ଥ ଗଛରୁ ଶିର୍ ଶିରେଇ ଉଠିଲା ପାଚିଲା ପତ୍ର : ଦୂରସ୍ଥ ଟାଙ୍ଗର ବୁଦାବୁଦିକିଆ ଜଙ୍ଗଲରୁ /ଡାକିଛି ଗୁହିଁଲା ଠେକୁଆ, ସମୀପସ୍ଥ /ନୀରବ ବନସ୍ପତିର ଅନ୍ଧାରିଆ ମୂଳକରୁ। ଲୁହାଟ ଘୁଡ଼ିଲା ଠେକୁଆ ଯେ : ମୁଁ ମୁହାଁମୁହିଁ ହୋଇ ପାରିଲି ନି ନିଜକୁ।" (ନିଜ ସହ ଗୋଟେ ସାକ୍ଷାତକାର—ପୃ. ୫ )

ପ୍ରକୃତିସହ ପ୍ରେମ ଜଡ଼ିତ ହୋଇଗଲାବେଳେ ପ୍ରକୃତି ହୋଇଉଠେ ଜୀବନ୍ତ। ମଣିଷର ଜୀବନ ମଧ୍ୟ ସାମୟିକ ଆହ୍ଲାଦର ରମଣୀୟତା ଭିତରେ ନିଜକୁ ଖୋଜି ପାଏ। 'ସ୍ମରଣ ବିସ୍ମରଣ'ର ଅଧିକାଂଶ କବିତା ଏଇ ସତ୍ୟର ନିକଟବର୍ତ୍ତୀ। 'ଏଠି ସବୁ ଧାନ ବିଲ' କବିତାରେ କବି ଦେଇଛନ୍ତି ତାହାର ପରିଚୟ। "ଏଠି

ସବୁଜ ଧାନ ବିଲ /ଶରତର ସବୁଜ ଚଅଁର /ଆଶିଷର ସ୍ୱର୍ଣ୍ଣ ଦୀପ /ସ୍ୱର୍ଣ୍ଣ ବୁକ ଜନ୍ମର ନଅର /ଏଠି ସବୁ ଦିଗଆର ସବୁଜିମା /ଲକ୍ଷ୍ମୀଙ୍କ ସ୍ୱର୍ଣ୍ଣ ନୂପୁର /ଏଠି ସବୁ ଜୀବନର /ଆଶା ଆଉ ଭରସାର /ବଞ୍ଚିବାର ସପନ ଦୋଳୁଛି !" ଈଷତ୍ ପବନରେ ଦୋଳାୟିତ ଧାନ ବିଲର ସୌନ୍ଦର୍ଯ୍ୟରେ କବି ବିଭୋର । ଝର ଝର ବର୍ଷା, ଚଢ଼େଇର ଦର ଦର ଗୀତ, ଅବୋଧ ଶିଶୁର ଖେଳ, ଗାଈଆଳ ଟୋକାର ମଧୁର ଲଳିତ ଚଉପଦୀ ସୃଷ୍ଟି କରେ ପଲ୍ଲୀ ଜୀବନର ଆନନ୍ଦମୁଖର ମୁହୂର୍ତ୍ତ-ଗୁଡ଼ାକୁ । କିନ୍ତୁ ଆନନ୍ଦରେ ବି ବେଳେବେଳେ ଭଟ୍ଟା ଆସେ, ଆସେ ଉଦାସୀ ଲଗ୍ନ, ଲହୁଲୁହରେ ଭିଜିଯାଏ ସୁଖର ଦିନ । ଆନନ୍ଦ ପଛପଟେ ଦେଖାଦିଏ ନିରାନନ୍ଦ । କାହାର ପୁଷ ମାସ ତ କାହାର ସର୍ବନାଶ । କବି ଅନୁଶୋଚନାର ପାହାଡ଼କୁ ମୁଣ୍ଡରେ ବୋହି ବୋହି କ୍ଳାନ୍ତ ତ କବି ଷଡ଼ରିପୁର ସଂସାରରେ ପ୍ରମତ୍ତ । ଜୀବନ ଯେଉଁମାନଙ୍କ ପାଇଁ ସହଜ ନୁହେଁ, ସେମାନଙ୍କର ବଞ୍ଚିବାର ଆଶା ମଧ କିଛି କମ ନୁହେଁ । "ଏଠି ସବୁ ଧାନ ବିଲ /ଗାଆ ଆଉ କୋଦାଳର ଗୀତ/ ରକ୍ତର ଚୋପଣି ଫେଣ୍ଟି /ଢୋକ ଗିଳେ ମୁମୂର୍ଷୁ ଜୀବନ ।" ଦୁଃଖ ଦୈନ୍ୟ ଅଭାବଗ୍ରସ୍ତ ପଲ୍ଲୀ ଜୀବନରେ ମଧ୍ୟ କୁସଙ୍ଗ ଫଳହେତୁ ଦେଖ ଯାଏ । ଦେଖାଯାଏ ପୂର୍ଣ୍ଣ କାମନାର ଅତୃପ୍ତ ସଂଳାପ । ଏଠାରେ ଆକାଶଭରା ମେଘ, ପବନର ସାଇଁ ସାଇଁ ସ୍ୱନ, ମାଟିର ଗନ୍ଧ, ଫଳ ଫୁଲ ଘାସ ଗୁଳ୍ମ, ଲତା ଓ ପାଣି ଡାହୁଣୀର ଛୁଟା ଖେଳିଥିବ ସବୁ କିଛିର ନୂଆଁ । କିନ୍ତୁ ଥାଏ ଭିତରେ ଚାପା ବାଘର ଭୋଗିଲା ପରି ଅଜଗର ଭଳି ବୌଦ୍ଧ କାମନାର ଦୁର୍ନିବାର କ୍ଷୁଧାକୁ ଭଲ ପାଇବା ଓ ଭଲ ପାଇବାଟାକୁ ଲାଳସାର ପରୀକ୍ଷା କେବଳ ଏ କାମନାର ଫାଶରୁ ମୁକ୍ତି ଲୋଡ଼ନ୍ତି । ପ୍ରକୃତିର ରମ୍ୟ କୋଳରେ ପ୍ରଥମ ପ୍ରେମର ସାକ୍ଷାତ ବାସ୍ତବକୁ ଏଡ଼ାଇ ମନ୍ତ୍ରମୁଗ୍ଧ ପରିବେଶ । ମହୁଲଣ ସନ୍ଧ୍ୟା, ଝିପି ଝିପି ବର୍ଷା ମଧ୍ୟରେ ଗାଁର ଅନ୍ଧାରୀ ଗଳିରେ ଶୁଣାଯାଉଥିବା ବାଂଶୀ ସ୍ୱରକୁ ମନରେ ଶୁଣୁଛି ପ୍ରେୟସୀର ଅଙ୍ଗର ଗନ୍ଧ ଏବଂ ଅଳସୀ ପ୍ରେମିକାର ଦେହରେ ଅପରୂପର ପ୍ରେମ ଆଲିଙ୍ଗନ ନେଇ ଆସେ । କବିଙ୍କ ଭାଷାରେ —"ଟେଣ୍ଡୁ ମହୁଲର ସନ୍ଧ୍ୟା ଏବଂ ଝିପି ଝିପି ବର୍ଷାର ସାଗରର /ତୁମେ ହୁଅ ବମୂର୍ତ୍ତ ପ୍ରେମ /ଝରକାର ଛାଇର କମ୍ପନ /ହୁଅ ଏକ ଧର୍ମୀ ଧୂଆ ଘାସର ଓଠରେ /ଏକାନ୍ତ ସ୍ନିଗ୍ଧ ଉଚ୍ଚାରଣ ।" (ନର୍ତ୍ତକୀ — ସ୍ୱଚ୍ଛ ବସ୍ତ୍ରହରଣ) ।

କେଉଁଝର, ଫୁଲବାଣୀର ଜଙ୍ଗଲ ପ୍ରକୃତି ଓ ଜୀବନ ପ୍ରତି କବିଙ୍କର ମମତା ଅଧିକ । ଆଦିବାସୀ ରମଣୀର ଉଦ୍ଦଣ୍ଡ ପଣତର ସ୍ୱପ୍ନରେ ଆସକ୍ତ ହେବା, ଝରଣାର କୁଳୁ କୁଳୁ ତାନରେ ପ୍ରଲୁବ୍ଧ ହେବା ଓ ମହୁଲ ନିଶାରେ ମଉଆଁଳ ହେବା

କାବ୍ୟନାୟକର ସ୍ପର୍ଶରେ ନୂଆଁଟିବା ବଡ଼ କଥା । କବିଙ୍କର ବର୍ଣ୍ଣନା ଅତ୍ୟନ୍ତ କାବ୍ୟକ ;

"ବନାନୀ ! ତୁମର ଏ ଭଙ୍ଗାଗଢ଼ା ପାହାଡ଼, ଓ
ଔଷଧୀର ସବୁଜ ପତ୍ରରେ
ଝୁଲାଏ ବସନ୍ତ ଯେବେ ଗ୍ରୀଡ଼ପତ୍ର ହଅଇ ଶରତ,
ଓ ଆଣ୍ଠୁଲାଏ ରକ୍ତର ଲୁହରେ ଧୋଇ
ବର୍ଷା ଶୁଏ ଅଜଗର ସାପର ସ୍ମୃତିରେ—
ମୋତେ ଖୁବ୍ ସୁଖ ଲାଗେ ।"
(ବନାନୀକୁ—ସୂର୍ଯ୍ୟ ବସନ୍ତ)

ଗଡ଼ଜାତ ସଭ୍ୟତାର ଅକୃତ୍ରିମତା ଭିତରେ କାବ୍ୟନାୟକ ପାଇଛନ୍ତି ପ୍ରକୃତିର ନିବିଡ଼ ଆଲିଙ୍ଗନ । ବସନ୍ତର ଆଗମନରେ ଆକାଶରେ ମେଘଖଣ୍ଡ ନିଶ୍ଚଳ, କୋଇଲିର କୁହୁ ତାନରେ ବନପର୍ବତ ମୁଖରିତ । 'ବସନ୍ତ ଅଣ୍ଟାରେ ଝୁଲୁଚି ଫୁଲର ହାଡ଼' କହିବା ଦ୍ୱାରା କବିଙ୍କ ସୌନ୍ଦର୍ଯ୍ୟ ଚେତନା ଓ ଭାବ ଗମ୍ଭୀରତାର ଦୌଡ଼ କେତେ ବାଟ ତାହା ସ୍ପଷ୍ଟ ଭାବରେ ଲକ୍ଷ୍ୟ କରି ହୁଏ । ଅନ୍ତର୍ଦୃଷ୍ଟିର ତୀକ୍ଷଣତା ତାଙ୍କ କବିତାର ଛନ୍ଦେ ଛନ୍ଦେ ପ୍ରମୂର୍ତ୍ତ । ଆଦିବାସୀ ପଲ୍ଲୀରେ ସକାଳ କବିଙ୍କ ଆବେଗମୟ ଅନୁଭୂତିର ସ୍ପର୍ଶରେ ଜୀବନ୍ତ । ନଗର ମଣିଷର ଆବେଗାନୁଭୂତ ଭାବ ଆଦିବାସୀ ପଲ୍ଲୀରେ ପ୍ରତ୍ୟାଖ୍ୟାତ । ନିଜ ବୁଦ୍ଧିର ପ୍ରଖରତା ଦେଖାଇବା ପାଇଁ ମଣିଷ କ୍ରମଶଃ ପ୍ରକୃତିକୁ ଅବହେଳା କରିବାରେ ବ୍ୟସ୍ତ-ଥିଲାବେଳେ କାବ୍ୟନାୟକର ଚେତନା ଆଦିବାସୀ ପଲ୍ଲୀରେ ପ୍ରଶାନ୍ତିର ସନ୍ଧାନ ନେବାକୁ ଆଗଭର । ତେଣୁ ସକାଳ ତାଙ୍କ ପାଇଁ କ୍ଳାନ୍ତ ଜୀବନର ଆଶ୍ୱାସନା । "ସକାଳ ଆସିଚି ଆଜି ନିସ୍ତ ଆଉ ଅବଶ୍ୟାସ୍ୟ ନିର୍ମମ ଜୀବନେ /ନିଘଞ୍ଚ ଅରଣ୍ୟେ ଆଜି ଏ ସକାଳ—ବ୍ୟାଘ୍ର ଆଉ ହରିଣୀର ଦଳ /ଚକ୍ ଚକ୍ ସାପ ଦେହ, ମୁଠା ମୁଠା ମହୁଲ ଫୁଲର /ରାତ୍ରିର କ୍ଳାନ୍ତିକୁ ଯୋଚ୍ଛ ଓ ଜଳାଇ ମନର ଜଙ୍ଗଲ ।" (ଆଦିବାସୀ ପଲ୍ଲୀରେ ସକାଳ—ସ୍ରୋତର ନାମ ରକ୍ତ) । ଆରଣ୍ୟକ ସଭ୍ୟତାର ମଣିଷ ଓ ପ୍ରକୃତି ସମ୍ପର୍କେ ଯେପରି ଆନ୍ତରିକତାର ବାସ୍ନାରେ ଭରପୂର । ସକାଳ ଠାରୁ ସଞ୍ଜ ମଧ୍ୟ ସେଠାରେ ଲୋଭନୀୟ । ତାର ଅନ୍ତଃସ୍ଥିତ ସୌନ୍ଦର୍ଯ୍ୟ କି ମାଧୁର୍ଯ୍ୟ ଦେଖେଇଦେବା ବା ବୁଝେଇବା ଦରକାର ପଡ଼େନି । ପ୍ରକୃତିର ଆକର୍ଷଣ ଯେତି ଦୁର୍ନିବାର । ଉପଲବ୍ଧି ଓ ଆବେଗ ସବୁବେଳେ ସୂକ୍ଷ୍ମ ସ୍ତରରେ ରହିଯାଏ । ତାହା ପ୍ରକାଶିତ ହେବା ମାତ୍ରେ ସାହିତ୍ୟ ହୋଇଯାଏ । ଫୁଲବାଣୀ ଦର୍ଶନରେ କବି ମନରେ ଏହିପରି ଭାବୋଦ୍ରେକ ସମ୍ଭବ ହୋଇ ମାରିଛି : "ଫୁଲବାଣୀ ! ତୁମ

/ପଥୁରିଆ ଟକା ଟକା ମୁହଁର ଆଗରେ /ଦେଖେ ମୋର ପ୍ରତିବିମ୍ବ । କ୍ଷୋଭମୟ ବନସ୍ତର /ଚଢ଼େଇଙ୍କ ଡେଣା ଏବଂ ଚଞ୍ଚୁର କ୍ଷତରେ /ମୋ ଆତ୍ମର୍ଯ୍ୟ ଦୁଃଖର ରକ୍ତକୁ ବୋଲି /ମୁଦ୍ରୁଣିର ସ୍ନେହସିକ୍ତ ପାପୁଲିକୁ କରେ ଲାଲି ଲାଲ !" (ଫୁଲବାଣୀ—ସ୍ମରଣ ସଂଖ୍ୟା) । ନର୍ଲଜ ସହରଠାରୁ ଏହା କେତେ ସ୍ନେହଶୀଳ ସତେ ! ଏଠି ଉଦାସୀ ସନ୍ଧ୍ୟା ପବନରେ ହସି ହସି ଲେଟିଗଲା ବେଳେ ସହରରେ ଦେଖାଯାଏ. "ବଣ୍ଡଧିଆଁ କୁଣ୍ଡଳୀରେ ଫୁଲି ଫୁଲି ଥକି ପଡ଼େ /ରାତ୍ରିର ପବନ ।" (ନିଜ ସହ ଗୋଟେ ସାକ୍ଷାତକାର—ପୃ. ୬)

କମଳାକାନ୍ତଙ୍କ କବିତାରେ ପ୍ରକୃତି ଚିତ୍ର ଆସିଛି ପରିବେଶର ମୁକୁଟ ପିନ୍ଧି । ଜୀବନର ଅର୍ଥ ଖୋଜିବାର ଇଚ୍ଛାରୁ ସେ ପ୍ରକୃତିକୁ ଟିକିନିଖି ଭାବରେ ଅଙ୍ଗେ ନିଭାଇବାକୁ ଉଦ୍ୟମ କରିଛନ୍ତି । ପ୍ରକୃତିର ବର୍ଣ୍ଣିଳ ରୂପଲାବଣ୍ୟ ଦେଖିବା ଓ ତାହାକୁ ମଣିଷର ଜୀବନ ଓ ଅନ୍ତଃ ପ୍ରକୃତି ସହ ମିଳାଇଦବା ତାଙ୍କର ଏକ ବିଶେଷତ୍ୱ । ପୂର୍ବର ଓଡ଼ିଆ କବିମାନେ ପ୍ରକୃତିକୁ ହୁଏତ ଗଭୀର ଭାବେ ଦେଖିଛନ୍ତି, କିନ୍ତୁ ମଣିଷ ଜାତି ପାଇଁ ତାର ବାର୍ତ୍ତାକୁ ଠିକ୍ ଭାବେ ଉପଲବ୍ଧି କରି ପାରି ନାହାନ୍ତି । ପଲ୍ଲୀ ପ୍ରକୃତିର ଭୌଗୋଳିକ ବସ୍ତୁତ ଭିତରୁ ଶ୍ରୀ ଲେଙ୍କା ପାଇଛନ୍ତି ସତ୍ୟର ସନ୍ଧାନ ।

"କବିତ୍ୱ ବାମ୍ଫଉଥିବା ବେଳେ କବିତାର ଅରମାଫୁଲ ବଣରେ ସେ ଯେଉଁଠି ଅଛି ଗୁଲିଆସ । ସେ ଯେଉଁ ଅବସ୍ଥାରେ ଅଛି ଧାଇଁ ଆସ ସେ : ଜିଦ ନାଇଁ ସନ୍ତସନ୍ତିଆ ମାଟିକୁ, ମାଟିର ପେଟରେ ଗଜଉଥିବା ଶାଳ ମଞ୍ଜିର ଫୁଲକୁ ।" ଏଇ ସତ୍ୟସନ୍ଧାନୀ କବି ପକ୍ଷରେ ପ୍ରକୃତିକୁ ରାଧାନାଥ, ମଧୁସୂଦନ, ଗଙ୍ଗାଧର, ନନ୍ଦ କିଶୋର, ମାନସିଂହ ବା ଗୋଦାବରୀଶଙ୍କ ଭଳି ମହିମା ମଣ୍ଡିତ ଭାବେ ଦେଖିବାର ଅବକାଶ କମ୍ । ଶ୍ରୀହୁମାୟୁନ କବୀରଙ୍କ ଭାଷାରେ "His poetry creates a world of its own —The world of new feelings and hightened experience." (୫) ପ୍ରକୃତି ଚିତ୍ର ଦେବାରେ ତେଣୁ ବର୍ଣ୍ଣନାତ୍ମକ ଶୈଳୀକୁ ଶ୍ରୀଲେଙ୍କା ପ୍ରତ୍ୟାଖ୍ୟାନ କରିଛନ୍ତି । କିନ୍ତୁ ଗ୍ରାମ୍ୟ ସମାଜ ଜୀବନ ଓ ମଣିଷର ନୈତିକ ସତ୍ତାର ବିକାଶ ପାଇଁ ପ୍ରକୃତିକୁ ସେ ଗ୍ରହଣ କରିଛନ୍ତି ଗୁରୁତ୍ୱପୂର୍ଣ୍ଣ ପ୍ରେରଣାଦାୟିନୀ ରୂପେ । କବିତାର ସଫଳତା ପାଇଁ ଏହା ଏକ ଅପରିହାର୍ଯ୍ୟ ଆବଶ୍ୟକତା । ଦୃଶ୍ୟ (Visnal) ଚିତ୍ରକଳ୍ପ ମାଧ୍ୟମରେ ଶ୍ରୀ ଲେଙ୍କା

୫ । Kabir Humayun —"What I look bke' (Translation of K. K· Lenka's Poetry) 1981—Prefatory Note —P. VII ।

ପଲ୍ଲୀ ପ୍ରକୃତିର ସୌନ୍ଦର୍ଯ୍ୟ ଅନୁଭବରେ ଆଣିଥିଲେ ବି କବିତାର ରୂପ ନେଇ ତାହା ପ୍ରକାଶିତ ହେଲାବେଳେ ହୋଇଯାଇଛି ଅମୂର୍ତ୍ତ । "ଗାଁ ତମାମ ଲଙ୍ଗଳା /ଛୁଆମାନେ ମାଛ ଧରନ୍ତି । ଖରାରେ ବର୍ଷାରେ; ଓ ବେଳେବେଳେ /ମନକୁ ମନ କ'ଣ ଯେ କ'ଣ /ବୋଲନ୍ତି ଠିକ୍ ଠିକଣା ନ ଥିବା ଭାଷାରେ : ଯାହାକୁ ଅବୋଲକରା କବିଟିଏ ଖୁଣ୍ଟି ଆଣି/ ଖାଲେଇ ଭିତରେ ମାଛ ଭଳି /ସାଇତି ରଖେ ହୃଦରେ, ଏବଂ / ବୁଝିଲା ଶୁଝିଲା ବିବେଚନାର ହାତକୁ ରକ୍ତ,/ଗୋଲାପଟିଏ ପରି /ମା'ମାଙ୍କ ଦୁଃଖକୁ/ନୀଳ କରିଦିଏ ଅଦ୍ଭୁତରେ : /ଯା'ପରେ କବିଟି ଦେଖେ ତ/ ଗାଁ ତମାମ କବିତା, ପୃଥିବୀ ଯାକ / "ମା'ମାନଙ୍କ କୋଳରେ ଅଙ୍କଟ ଶିଶୁ !" (ଗୋଲାପ—'ଉନ୍ମୋଚନ') ।

ଶ୍ରୀ ଲେଙ୍କାଙ୍କ ଦୃଶ୍ୟମାନ ପଲ୍ଲୀ ପ୍ରକୃତିର ସୌନ୍ଦର୍ଯ୍ୟ ଅଫୁରନ୍ତ । ନଦୀ, ଜହ୍ନ, ସମୁଦ୍ର, ପଶୁପକ୍ଷୀ, ଗଛଲତା, ପାହାଡ଼ ପର୍ବତ—ସବୁ କିଛି ଏହାର ପରିସର-ଭୁକ୍ତ । ଜହ୍ନ ଓ ନଈ ପ୍ରତି କବିଙ୍କର ଆକର୍ଷଣ ସବୁଠାରୁ ବେଶି । ତେଣୁ ବହୁ ସ୍ଥାନରେ ସେ ଏହାର ଉଲ୍ଲେଖ କରି ନିଜ ସୌନ୍ଦର୍ଯ୍ୟଦୃଷ୍ଟିର ନିର୍ଦ୍ଦିଷ୍ଟ ପରିବଳୟ ପାଠକ ସମ୍ମୁଖରେ ଖୋଲି ଦେଇଛନ୍ତି ।

**ଜହ୍ନ**

୧ । "ମୋର ଶବ ଉଠିଲେ ନାହିଁ / ଝିଲି ମିଲି ଜହ୍ନ ଆଲୁଅର ଛାତିରେ, /ଝଙ୍କା ବଉଳ ଗଛର ଖୁନ୍ଦା ହେଉଥିବ /ପନର ଶିରରେ ।" (କଥାର ମଞ୍ଜି—'ସ୍ରୋତର ନାମ ରତି)

୨ । "ଅସଂଖ୍ୟ ପ୍ରଜାପତିର ଡେଣା, / ଅସଂଖ୍ୟ ଫୁଲଫଳର ଡାଳ, / ଅସଂଖ୍ୟ ପତଙ୍ଗର ମେଳାରେ /ଶୁଭେନା ମହୁମାଛିର ଗୀତ କି /ଗୀତର ଜହ୍ନ, କି ଚନ୍ଦ୍ରର କାନ୍ଦ ।" ଜୀବନ) ।

୩ । "ନଈପଠାର ନିଟୋଳ ନିକଟତାରେ/ ଜହ୍ନରାତିର ଦରୁଣ ପରିହାସ" । (ଏକାକାର—ଝରିବାର ବେଳ)

୪ । "ଜହ୍ନର ଏତେ ଖେଦ ଯେ ତାକୁ ବୃଦ୍ଧ ମହବକୁ ଡର ନାହିଁ ।" (ଗାଁ ତ ଗାଁ ନାରେ ପକ୍ଷୀ—ପୃ: ୮ )

୫ । "ଦଣ୍ଡେ କଥା ହବାର ଫୁରସତ୍ ନାହିଁ /ପବନର । ଦଣ୍ଡେ କଥା ହବାର ଜହ୍ନ ଆଲୁଅ /ବିଛୁଡ଼ି ପଡ଼ି ନାହିଁ ଧୂଳିଧୂସର ଅଗଣାରେ ।" ( କମିଷେ ସଂଖ୍ୟା ନାହିଁ—ଗାଁ ତ ଗାଁ ନାରେ ପକ୍ଷୀ) ।

୭ । "ଲପଟି ହୋଇଥିବା, ଘଷି ହୋଇଥିବା, ଗେଣ୍ଡେଇ ହୋଇଥିବା /ଜହ୍ନ ଘରର ନଡ଼ିଆ ଚାହୁଙ୍ଗାର ଚୂଇ"—(ଖସିବାର ବେଳ, ପୃ. ୨୦)

ମେଘ ଜହ୍ନକୁ ଆଚ୍ଛାଦିତ କରି ରଖିଥିଲାବେଳେ ଚନ୍ଦ୍ରକିରଣ ଛୁଇଁପାରେ ନା ପରିଚିତ ପୃଥିବୀକୁ । ଏହି ଦୃଶ୍ୟ କବିଙ୍କୁ ମନେ ହୋଇଛି ସତେ ଯେପରି ଜହ୍ନ ନିଜର ଆତ୍ମପ୍ରକାଶ ପାଇଁ ମେଘସହ ଧସ୍ତାଧସ୍ତିରେ ଲିପ୍ତ । (ନିଷ୍ଠୁର ଭାଗ୍ୟ—ସ୍ରୋତର ନାମ ରୀତ ) ।

**ନଈ**

୧ । "ଗୁମ୍‌ସୁମ୍ ହୋଇ, ଧୀର ସ୍ଥିର ହୋଇ, ସାପେଇ / ସାପେଇ ଚୁପ୍‌ଚାପ୍ ବହିଯାଉଥିବ ନଈ / ବେଳେବେଳେ ମୁଖରତାର ଖୋସକ, ପ୍ରଗଲ୍‌ଭତାର /ବ୍ୟସ୍ତତା ବଢାଉ ଦଉଥିବ କାଳି ଜହ୍ନିଆ । ଘରର ଉଆଁସ ଅନ୍ଧାର ।" (ଅର୍ଥ ଅନର୍ଥ—ଖସିବାର ବେଳ)

୨ । "ନଈର ଢେଉରୁ, କାଚ ଧାର ପାଣିରୁ / ସମୁଦ୍ରର ଉଚ୍ଛଳତାରୁ, ମାଛର କାଢରୁ / ଜହ୍ନି ଫୁଲିଆ ଜହ୍ନ ଦେଖି ବୟସର କଥାଁରୁ / × × × କିଛି ବୁଝା ପଡ଼େ ନା ସହଜରେ ।" (ମୋ ଛଡ଼ା ପ୍ରତିଟି ମଣିଷ—ଗୀତ ଗା' ନା ରେ ପକ୍ଷୀ )

୩ । "ଗୋଟେ ନଈକୋଣର ଶୁଖିଲା ମୁହଁକୁ / ଦେଖିଲେ ମନେ ପଡ଼ିଯାଏ ବଡ଼ ବୋହୂର ମୁହଁ ।" (କାପାଳିକ—ଗୀତ ଗା' ନାରେ ପକ୍ଷୀ )

୪ । "ଫାଙ୍କା ସାଗୁଆ ପଡ଼ିଆକୁ ଆଡ଼େଇ । ଧାଉଁଆ ନଦୀର ସ୍ରୁଅକୁ ଛୁଇଁଲେ । ବାଉ ହୁଏ ଗଙ୍ଗାର ସ୍ପର୍ଶ ।" (କାବ୍ୟ କାଦମ୍ବିନୀ—୧୩)

ଗୋଟାଏ ପ୍ରାକୃତିକ ଦୃଶ୍ୟ ଭିନ୍ନ ସମୟରେ କବିକୁ ଦିଏନ୍ତି ଭିନ୍ନ ଅର୍ଥ । ଏଇ ଟେକ୍‌ନିକ୍ ପ୍ରୟୋଗରେ କମଳାକାନ୍ତ ବେଶ୍ ସଫଳ । ଅନୁଭୂତିର ପ୍ରତ୍ୟକ୍ଷ-ଣୀୟ ଗଭୀରତା ଯୋଗୁ ଶ୍ରୀ ଲେଙ୍କାଙ୍କର ଏଇ ସବୁ ଚିତ୍ର ପାରଂପରିକତାଠାରୁ ବଜାୟ ରଖିଛି ନିଜର ଦୂରତା । ଏହାହିଁ ତାଙ୍କର ମୌଳିକତା । ଗୁରୁପ୍ରସାଦ, ରମାକାନ୍ତ ଓ ସୀତାକାନ୍ତଙ୍କ ଦୃଶ୍ୟମାନ ପଲ୍ଲୀ ଜଗତର ଆପ୍ତିମସ୍ତ ଭଲପାଇବାଠାରୁ ବହୁ ବର୍ଣ୍ଣିଳ ଓ ଅର୍ଥବୋଧକ ଶ୍ରୀ ଲେଙ୍କାଙ୍କ ପଲ୍ଲୀ ଜଗତ । ନିଜ ମାଟି ପାଣି ପବନର ରଙ୍ଗ ସହ ଦୃଢ଼ ଆତ୍ମୀୟତାର ବନ୍ଧନ କବିଙ୍କର ଏଇ ଅଭିନବ ଭାବ ସୃଜନ ପାଇଁ ଦାୟୀ । ଭଲ କବିତା ମାତ୍ରେଇ ସବୁବେଳେ ଏହିପରି ନିତ୍ୟ ନୂତନତାର ସନ୍ଧାନ ଦିଏ ।

ପ୍ରକୃତି ଉପରେ ବିଜୟ ହାସଲ କରିବା ପାଇଁ ଆଧୁନିକ ମଣିଷ ନେଇଛି ବଳିଷ୍ଠ ପଦକ୍ଷେପ । ଜଳ ସ୍ଥଳ, ଅନ୍ତରୀକ୍ଷ—ସବୁ ଆଜି ମଣିଷର ପଦାନତ ବଶୀଭୂତ । ଅନ୍ୟ ପକ୍ଷରେ, କଂକ୍ରିଟ ହୋଇଉଠିଛି ନଗର ଜୀବନ । ଫଳରେ ଯନ୍ତ୍ର ଦାନବର ବିକଟ ଚିତ୍କାର ଭିତରେ କୋଇଲିର କୁହୁ ଗାନ, ଝରଣାର କୁଳୁକୁଳୁ ତାନ ମ୍ଳାନ ହୋଇଯାଉଛି; କିନ୍ତୁ ମଣିଷର ଚିରନ୍ତନ ରୂପ ପିପାସାକୁ ଦବାଇ ଦେଇ ପାରିନି ନାହିଁ । ବଣ ଭୋଜି, ଭ୍ରମଣ ଆଦି ମାଧ୍ୟମରେ ସର୍ବଦା ମଣିଷ ବ୍ୟାକୁଳ ହେଉଛି ପ୍ରକୃତିର ସାନ୍ନିଧ୍ୟ ପାଇବାକୁ । ଅଶାନ୍ତ ନିଃଶ୍ୱାସୀ ମଣିଷ ହେଉଛି ମୁକ୍ତିପ୍ରୟାସୀ । ସାଧାରଣ ମଣିଷର ଯେତେବେଳେ ଏପରି ଅବସ୍ଥା, ସେତେବେଳେ କବି ପ୍ରକୃତିକୁ ଘୁଞ୍ଚି ବହୁବାର ସ୍ୱପ୍ନ ଦେଖି । କାପରି ଜୀବନର ପ୍ରାକ୍ କାଳରେ ଦେଖିଥିବା, ଅନୁଭବିଥିବା ପଲ୍ଲୀ ନିବିଡ଼ ଗ୍ରାମପାଖର ଚଷା ଚକା ଭଇଁସାର ମଞ୍ଜାସିକ୍ତ ଅଭିନବେଶ ମଧ୍ୟରେ କବିତା ଭିତରକୁ ଆସି ଧରା ଦେଇଛି । ଏ ପ୍ରସଙ୍ଗରେ କବି କହନ୍ତି—'ତା' (କବିତା) ଚଉପାଶରେ ବେଢ଼ି ରହିଥାଏ ପଂଝା ପଂଝା କଳା ମେଘ ଘାସ ଲଟା, ବଣ ପାହାଡ଼ ଇତ୍ୟାଦି ଇତ୍ୟାଦି । ଯାହା ବାଛି ଭିତରକୁ ପଶିଲେ କହୁଥିବ ଦାଶେ, ଚରା ଦାଶେ, ନେଳୀ ନେଳୀ ଆକାଶର ଡାକରା ଶୁଭାଯାଏ—କୁଳୁ କୁଳୁ ଝରଣାର ଗୀତ ଶୁଭେ, ଘଞ୍ଚ ଜଙ୍ଗଲ ଭିତରେ ଚନ୍ଦନ ଗନ୍ଧର ସନ୍ଧାନ ମିଳେ ।" (୬) ଗ୍ରାମ୍ୟ ଛବି ପ୍ରଦାନରେ କବିଙ୍କର ଏଇ ଅନ୍ୱେଷାର ତାତ୍ପର୍ଯ୍ୟ ହୃଦୟଙ୍ଗମ କରି ହୁଏ । ପଲ୍ଲୀରେ ଅଛି ଦାରିଦ୍ର୍ୟ, ଅଛି ଦୁଃଖ ବେଦନାର କରୁଣ ଇତିହାସ । ଏହା ସତ୍ତ୍ୱେ, 'ମୁଷାମାଛି ଭରି ଭରି ବାଲେଇଗୁଣ୍ଡ ଶାଗ ଶାଗ' (ନିଜ ସହ ଗୋଟେ ସାକ୍ଷାତକାର ପୃ. ୬୫) ପରିବେଶ ଭିତରେ କବି ବଞ୍ଚେ । କବିଙ୍କର ଏଇ ଭାବନା ସହ ଚେଇଁ ଉଠେ ରୂପ କଥାର ଅଭିମାନୀ 'ରାଜପୁତ୍ର', ଯିଏ ସବୁ କିଛି ଐଶ୍ୱର୍ଯ୍ୟ, ପ୍ରାଚୁର୍ଯ୍ୟକୁ ପ୍ରତ୍ୟାଖ୍ୟାନ କରି କେଉଁ ଦୂର ଦେଶର 'ରାଜକନ୍ୟାକୁ' ପାଇବା ପାଇଁ ନିଜ ଜିଦ୍‌ରେ ଅଟଳ ରହେ । କବି ସେହିପରି ରାଜକନ୍ୟାରୂପୀ କବିତା ପାଇଁ ମୁଷାମାଛି ଭରି ଭରିର ପରିବେଶକୁ ଗ୍ରହଣ କରିଥାଏ । ପୁଣି ଯେତେବେଳେ ଏଇ ପ୍ରତିଶ୍ରମସ୍ତ ପରିବେଶ ଡାକି ଉଠେ ଅପୂର୍ବ ମହିମାରେ । ପଲ୍ଲୀର ସ୍ନେହମୟ କୋଳରେ ମଣିଷ ଏକାକାର କରିଦିଏ ନିଜକୁ ।

"ସାପେଇ, ସାପେଇ, ଖୋଠ ଫେଇ
ଧେନୁଟିର ବୃନ୍ଦାଣିରେ

୬ । ନାୟକ, ଧନଞ୍ଜୟ—'ସାରଥି'—କମଳାକାନ୍ତ ଲେଙ୍କାଙ୍କ ସହ ସାକ୍ଷାତକାର ୧୯୮୮,—

ଠପ୍ ଠପ୍ ଗଳୁଥିବା ସ୍ନେହ ଝୋପେ ହେଇ ।
ପୁଣି କେବେ କାଦୁଆ ମାଟିର ସପ
ପାଣ ଦେଇ କାଦ ଯାଏ । ଛନ ଛନ ଗୁଘ ଗଛ
ବଞ୍ଚିକବା ସପନରେ, ସ୍ୱପ୍ନିର୍··· ···· ·"
(କବିତାର ନଈ ବହିଯାଏ—ଗୀତ ଗା' ନାରେ ପକ୍ଷୀ)

କୁଅଁଣିଆ ବୃକ୍ଷ ତଳେ ବୁଢ଼ୀଆଣିର ଜାଲ ବୁଣିବା, ବଉଳ ଗଛର ଝାମ୍ପୁଳ ଶାଖାକୁ ଘେରିଥିବା ଚନ୍ଦ୍ରାଚ୍ଛନ୍ନ ପରିବେଶ, ସ୍ନେହଶୀଳ ଦକ୍ଷିଣା ପବନର ମୃଦୁ-ମନ୍ଦ ଲୀଳାୟିତ ଗତି, ଖାଁ ଖାଁ ମରୁଡ଼ିଆ ଚେକା ଚେକା ଘାସ—କବିର କାବ୍ୟ ଜଗତକୁ ଯୋଗାଇଦିଏ ବହୁ ନୂଆ ନୂଆ ଉପାଦାନ । କିନ୍ତୁ ଅନ୍ୟ ଏକ ମୁହୂର୍ତ୍ତରେ ପଲ୍ଲୀର ଏସବୁ ସୁଷମା ଥାଇ ବି ନଥିଲା ପରି ଲାଗେ । ଗାଁ ଭିତର ଦେଇ ଯେକୌଣସି ମଶାଣିକୁ ଗଲାବେଳେ ଜନ୍ମଭୂମି ପଲ୍ଲୀରେ ବସିଥିବା ଟଗର ଓ ମଲ୍ଲୀର ଆସର ହର୍ଜିଗଲା ପରି ଲାଗେ । ଗଛ ବୃକ୍ଷ, ଆକାଶ ଅରଣ୍ୟ ସବୁ ସ୍ୱର୍ଗ ସତେ ଯେପରି ଚୁରମାର ହୋଇଯାଏ । ଆକସ୍ମିକ ବିପଦରେ ସ୍ୱର୍ଗ ପଡ଼ିଥିବା ମଣିଷର ଲୁହ ଚଳ ଚଳ ଆଖିରେ ମାଟି, ସମୁଦ୍ର, ଆକାଶ ଏକାକାର ହୋଇଯାଏ । ମାଆର ମୃତ୍ୟୁରେ ପ୍ରକୃତିର ସବୁ ସବୁଜ ଅନୁଭୂତ ଆସେ । ଲୁହ ଭିଜା ଆଖିରେ କାବ୍ୟନାୟକ ଦେଖେ :

"ମାଆ ମୋର ଦୁବୁ ଦୁବୁ ଶ୍ରାବଣର ଭିଜା ଗ୍ରୀଷ୍ମ /ସବୁଜ ଘାସର ପ୍ରସ୍ତ ପ୍ରସ୍ତ ଅଶାର ଡାଙ୍ଗୁଡ଼ା । ମୁଁ ତୋର ଫଳବତୀ ସ୍ୱପନ /ଓ ସଞ୍ଚିତ ପୁଣ୍ୟର ସ୍ମୃତି, ଭଙ୍ଗା ଆମ କୁଟୀର ଦେଉଳେ ଶରତର ଜହ୍ନପରି ଝରିପଡ଼େ ଅକାତରେ । କନିଅର, କଦମ୍ବ ଓ ବଣର ମାଳତୀପରି ।"
(ମୋ ମା' ପ୍ରତି—କବିତାର ମୁହଁ)

ଏପରି ଅବସ୍ଥାରେ ପୁଣି ମାଲ ମାଲ ବଣ ମନେ ହୁଅନ୍ତି ବାଧିବାର ଧନା ଶାଢ଼ୀ ପରି (୮) ।

କବି ରାଧାମୋହନ ଗଡ଼ନାୟକ ଦିନେ ଅହ୍ୱାନ ଦେଇଥିଲେ ପଲ୍ଲୀକୁ ଫେରିବା ପାଇଁ । "ଯନ୍ତ୍ର ତୋତେ କି ମନ୍ତ୍ର ଦେଇଛୁ ମାଟିର ମଣିଷ ଆରେ/ ମୁଗ୍ଧ ତୋହର ଚିତ୍ତ ଚହଲେ ଚନ୍ତ୍ର ପାରୁ-ନୁ ଦ୍ୱାରେ/ ଫେରିଆ ପୂରୁବ ପଥେ/

୭ । 'ରୂପାନ୍ତର'—'ଅନ୍ତତଃ କିଛି ପ—ପୃ. ୧-୩ । ୧ମ ସଂଖ୍ୟା ।
୮ । ବାଃଶକ ଶଦ ଓ ସଫେଦ ପୃଥିବୀ—'କବିତାର ମୁହଁ' ପୃ. ୭୦ ।

ଅନ୍ଧାରରେ ଆଉ ଧୂଆଁ ହୁଏ ନାହିଁ ଯନ୍ତ୍ର ଧୂଆଁର ସାଥେ ।" କିନ୍ତୁ ଶ୍ରୀ ଲେଙ୍କା ବର୍ତ୍ତମାନ ପରିସ୍ଥିତିରେ ଆଉ ପଲ୍ଲୀକୁ ଫେରିଯିବାକୁ ଆଶା ପୋଷଣ କରିପାରୁ ନାହାନ୍ତି । ଯାନ୍ତ୍ରିକ ଜୀବନର ମୋହରେ ଆସକ୍ତ ହେବା ପୂର୍ବରୁ ସେ ପ୍ରକୃତିକୁ ମନଭରି ଦେଖି ନେଇଥିଲେ ବୋଲି ଆପାତତଃ ଆଶ୍ୱସ୍ତ ହୋଇଛନ୍ତି । ସାମୟିକଭାବେ ପଲ୍ଲୀଗାଁକୁ ଭୁଲିଗଲେ ଅତୀତର ସ୍ମୃତିଗୁଡ଼ାକ ଉଜ୍ଜୀବିତ ହୋଇଉଠେ । ଏକ ସମୟରେ ହୁଏତ ତାଙ୍କର ବିଶ୍ୱାସ ଥିଲା ତାଙ୍କ କବିତାର ସହାୟତା ବିନା ଐତିହ୍ୟ ଓ ସଂସ୍କୃତି ସମର୍ଥିତ ଯାନ୍ତ୍ର ଢାଞ୍ଚା, ପଙ୍କ ପଙ୍କାଣି ଅର୍ଥହୀନ । କବିର ବିନା ସାହାଯ୍ୟରେ ପ୍ରକୃତି ଓ ପଲ୍ଲୀର ସୌରଭ ବିକୀର୍ଣ୍ଣ ହୋଇ ପାରେ ନା । 'ଦୁଃଖ' କବିତାରେ ଏହାର ସ୍ୱାକ୍ଷର ନିବିଡ଼ ।

"ନିଷ୍ଠୁର ଗବାକ୍ଷ ପଥ
କେଉ ଆଅ : ତେବେ ଶୁଣ—
ମୋ ବିନା ନଈ, ସମୁଦ୍ର ଓ ଆକାଶ
ପଲ ପଲ ପକ୍ଷୀ, ଶାମୁକା ଓ
ପଂଝା ପଂଝା ଦୂରଦେଶୀ ମେଘ । × × ×
ନିଷ୍ଠୁର ଗବାକ୍ଷ ପଥ /କେଉ ଆଅ : ତେବେ ଶୁଣ, /ମୋ ବିନା
ତାଜା ରକ୍ତ, ନଣ୍ଡା ଗଛ, /ବାର ହାତ ବେଣୀ, ଗାଈ ଜଗୁଆଳ—/
କୂଳ ଖିଆ ନଈ, କ୍ଷୁର ଦାଢ଼ ।"

(ଅନ୍ତତଃ ନିଷ୍ଠୁର—ପୃ. ୭୦-୭୧)

ଶ୍ରୀଲେଙ୍କା ପଲ୍ଲୀ ଚିତ୍ର ପ୍ରଦାନରେ ଖୁବ୍ ସଫଳ । ପ୍ରାସଙ୍ଗିକ ହେଲେ ବି ଅନ୍ୟଥା ସବିଶେଷ ବର୍ଣ୍ଣନାର ସେ ଅପକ୍ଷପାତୀ । ସମସ୍ତ ତାଙ୍କ ପାଇଁ ଖୁବ୍ ମୂଲ୍ୟବାନ । ସ୍ଥାନୀୟ ଚିତ୍ର (Local Colour) ସାହାଯ୍ୟରେ କବି ନିର୍ଣ୍ଣୟ କରନ୍ତି ତାର ରୂପରେଖ । ସମସ୍ତ ବକ୍ଷରେ କିଛି ହଜେ, ପୁଣି କିଛି ସ୍ଥିର ହୋଇ ରହିଯାଏ । କାନକୋଳି କଣ୍ଟାର ଜଙ୍ଗଲ ଭିତରେ ପଡ଼ି ଆଣ୍ଠୁ ଗଣ୍ଠି ଛଡ଼ାଇ ରକ୍ତାକ୍ତ ହେଲା ପରି ସମସ୍ତ ମଣିଷର ରକ୍ତାକ୍ତ ସ୍ମୃତିକୁ ଜାବୁଡ଼ି ଧରେ (୧) ।

'କଳାହାଣ୍ଡିଆ ମେଘପଂକ୍ତି' ସମସ୍ତ ଅନୁଭବ ମାଡ଼ି ଆସେ, ପୁଣି ଫେରିଯାଏ । ସମୟର ଗତିସହ ମଣିଷ ଚେତନାର କ୍ଷିପ୍ରତା ତୁଳନୀୟ । ପବନର ଗତି ମଧ୍ୟ ସମସ୍ତ ଭଳି ଦ୍ରୁତଗାମୀ । 'ଦଣ୍ଡେ କଥା ହେବାର ଫୁର୍ସତ୍ /ନାହିଁ ପବନର,

---

୧ । 'ସଂସ୍କୃତି ଲୁଚିଯାଏ, ହଜି ଯାଏ, ସ୍ଥିର ହୁଏ /କାନକୋଳି କଣ୍ଟା ଘେରା ନୀଳ ଜଙ୍ଗଲରେ ।" (ଅଜ୍ଞାତବାସ—ସ୍ରୋତର ନାମ ରତି)

ଦେଖେଣ ଜହ୍ନି ଫୁଲକୁ ଚୁମା ଦବାର ଅହଙ୍କାର—ଜଟପୁଲା ମୁଦ୍ରିତ ଢାଇଁ /ହାଣ୍ଡିଆ ମୁଗୁନିଆ ଦୃଷ୍ଟିରେ ସେ/ କୁକୁଡ଼ା ଖୁବାଲେ ଛୁଟେ ପୁଅ ।" (ନିର୍ଦ୍ଦେଶ ସମୟ ନାହିଁ—ଗୀତ ଗାଁ'ର ଶେଷ ପର୍ଯ୍ୟାୟ ) ଶୁଖିଲା ମଧ୍ୟରେ କମଳାକାନ୍ତ ଉପସ୍ଥାପିତ କରିଛନ୍ତି ମାନସିକ ଦ୍ୱନ୍ଦ୍ୱ ଓ ବୌଦ୍ଧିକ ପରିମଣ୍ଡଳ । ନିଜ ନିଜ ବ୍ୟକ୍ତିତ୍ୱ ଗଢ଼ିବାର ଏହା ଏକ ସଚେତନ ଉଦ୍ୟମ ବୋଲି କହିଲେ ଭୁଲ୍ ହେବ ନାହିଁ । ଜୀବନକୁ ଯେତେ ଦେଖିଲେ, ଯେତେ ବର୍ଣ୍ଣିଲେ ବି ତାର ବାସ୍ନା ଆଘ୍ରାଣ ବହୁ ଗୁଣରେ ସଞ୍ଚରି ଯାଏ । କବିଙ୍କ ଭାଷାରେ – "ଝାଟ କଣ୍ଟେଇଙ୍କ ଭଳି /ଟକଟେ ମାଛ/ ଜୀବନ, ଯେତେ ଖେଳିଲେ ବି/ ଜାଣ ଭଣ୍ଡୀ ପଠାରେ ପବନ ବାହୁନୁଥାଏ /ସକାଳଠୁ ସଞ୍ଜ/ ସଞ୍ଜଠୁ ସକାଳ : /ଯେମିତି ଅଗରବତୀର /ବାସ୍ନା, ବେତ ଭୋଜି ଦଣରେ /ଛପି ଯାଇଥିବା ପିଲାବେଳ ।" (ଡମେ—ହନ୍ତୋଚନ) । ଜୀବନର ମଧୁ ଗନ୍ଧ ସେଭଳେ ପ୍ରଲୁବ୍ଧ ହୋଇ ସାମଗ୍ରିକ ଆନନ୍ଦ ଲାଭ କରିବାକୁ ସହରୀ ମଣିଷ ଧାଏଁ ପ୍ରକୃତି କୋଳକୁ । ପୂଜାଛୁଟି ଏଥିପାଇଁ ଉପଯୁକ୍ତ ସମୟ । ସହରୀ ଜୀବନର କୃତ୍ରିମତା ଓ ଆଟୋପକୁ ଛାଡ଼ି ଗାଁର ପଚ ପଚ କାଦୁଅରେ ଗୋଡ଼ ବୁଲିବାବେଳେ ସେ ଅପାର ଆନନ୍ଦ ପାଏ, ପାଏ ଅପରସୀମ ଶାନ୍ତି ।

"ପୂଜାଛୁଟି ସହରର ଜୁଇଁ ଧନ
କେମିତି ଲେଉଟାଏ
ଗାଁ : ପଚ ପଚ କାଦୁଅ ଓ
ସବୁଜ ଶାଢ଼ୀରେ ଢଙ୍କା
ଚମ୍ପା ଗୋଷ୍ଠ ଅଳସ ପାହାଡ଼ ।

( ପୂଜାଛୁଟି—ଅନ୍ତତଃ ଜଣ୍ଟୁପ )

ବୈଶାଖର ଝାଞ୍ଜି ଧଳିଆ ଦ୍ୱିପ୍ରହରରେ ସହର କ୍ରମଶଃ ନୀରବ ହୋଇଗଲା-ବେଳେ ପଲ୍ଲୀ ଗାଁର ପୋଖରୀ, ଝିଙ୍କାବଣ, ନଈର ବିସ୍ତୃତ ପଠା ଖୁବ୍ ଜୀବନ୍ତ ମନେ ହୁଏ । ବୁଢ଼ାବୁଢ଼ିକିଆ ଘାସର ଶେଯରେ ଶୋଇ ପଡ଼ି ଦୁଧିଆଳୀ ଗାଈଟି ତାର ଛୁଆଟିକୁ ସ୍ନେହରେ ଘୁଟେ (୧୦) ମପାଚୁପା ସହରୀ ଜୀବନର ଅର୍ଥହୀନ ହିସାବ ମଫସଲରେ ଖୋଜିଲେ ମିଳେ ନାହିଁ । ପଲ୍ଲୀର ସନ୍ତାପିତ ମଧ୍ୟାହ୍ନରୁ ଯେ ଯେପରି ଆନନ୍ଦ ପାଏ, ସେହିପରି ପାଏ ଜୀବନ । ପ୍ରଚଣ୍ଡ ଉତ୍ତାପରେ କ୍ଲାନ୍ତ ପୁଣି ଛୁଆଟି ସଜନାଗଛର ଛାଇରେ ଶୋଇବା, କଉ ଓ ମାଗୁର ଦହୁଆ ପୋଖରୀର ପେଟ ଭିତରେ ଲୁଚିଯିବାର ଦୃଶ୍ୟ କବି ଚକ୍ଷୁକୁ ଏଡ଼େଇ ଦେଇ ପାରି ନାହିଁ । ମଫସଲୀ ପରିବେଶ ଓ ପ୍ରକୃତିର ଏହା ସୂକ୍ଷ୍ମ ପର୍ଯ୍ୟବେକ୍ଷଣ । ଯନ୍ତ୍ରଣାଦାୟକ ଖରାର

୧୦ । 'ସକାଳ, ସଞ୍ଜ, ଓ ଦ୍ୱିପ୍ରହର —କବିତାର ମୁହଁ, ପୃ. ୪୬ ।

ଜୀବନକୁ ଟିକିଏ ଆଶ୍ୱାସନା ଦେବାପାଇଁ ଯେଉଁ କ୍ଷୀଣ ପବନ ବହେ ତାହା ଦ୍ୱିପହରର ଉତ୍କଟତାକୁ ପ୍ରଶମିତ କରି ପାରେ ନା । କଷ୍ଟରେ ଆଉଟୁ ପାଉଟୁ ହେଉଥିବା ମଣିଷର ଜୀବନ ଅସ୍ୱସ୍ତିକର ହୋଇ ଉଠେ । ସେ ଦେଖେ—

"ପବନର ଆଉଁସାରେ ସ୍ୱର୍ଗ ନାହିଁ
ଖରା ଦିନର ଛାତିରେ, ଓ ଦୂବ ଘାସର
ମଝିରେ ରହୁଛି ନାହିଁ ନୂଆ ନୂଆ କାକର ।"

(ଧୂଆଁର — ଖସିବାର ବେଳ)

ଅଗଣାର ଖରା ନୃଶଂସ ହୋଇ ଉଠେ । ଝାରକ୍ରାନ୍ତର ଓ ନଗ୍ନଛିଆ ମୁହୂର୍ତ୍ତ-ଗୁଡ଼ାକ ଆହୁରି କଷ୍ଟକର ହୋଇଯାଏ । ସ୍ୱେଦ ଥରେ ଚୂର୍ଣ୍ଣ ହୋଇ ପଡ଼ିଥିବା ଖରା ବୈଶାଖରେ ଅତି ରୁକ୍ଷ ହୋଇ ଉଠେ । ପୁଣି ବୈଶାଖର ଅନ୍ତର୍ନିହିତ ରୂପ ସୂଚିତ ହୁଏ ଯେ, ଖରା ପରେ ବର୍ଷା ଅଛି ଏବଂ ବର୍ଷା ପରେ ଶୀତ ଅଛି :

"ଖରାକୁ ଡରିଲେ ମେଘୁଆ ପାଗ
ଅଛି । ବର୍ଷାକୁ ଡରିଲେ
ଟାଙ୍କରା ପୋଖରୀ କୂଳର ଜହ୍ନରାତି ଅଛି ।"

( ଧାଡ଼ିକୁ କାଢ଼ିଲେ ଘୋଡ଼ା – ଖସିବାର ବେଳ )

ପ୍ରକୃତିର ସବୁଠାରୁ ବଡ଼ କବି ଶ୍ରୀ ଦାସଙ୍କର କାବ୍ୟିକ ଉପାଦାନ । ସମୁଦ୍ର ଓ ଆକାଶ, ପକ୍ଷୀ ଓ ପଶୁ ତାଙ୍କ ଭାବଧାରଣାର ପ୍ରକାଶକ ମାଧ୍ୟମ । କବି ନିଜ ଭିତରେ ସମୁଦ୍ର ଏବଂ ସମୁଦ୍ର ଭିତରେ ନିଜକୁ ଦେଖିଛନ୍ତି । ଜୀବନର ପ୍ରତୀକ ହୋଇ ଛିଡ଼ା ହୋଇଛି ବିସ୍ତୀର୍ଣ୍ଣ ସମୁଦ୍ର । ତେଣୁ କବି କହନ୍ତି—

"ତୁ କାନ୍ଦିଲେ ଜଣାଯାଏ ଯେମିତି ମଣିଷ ଜାତିର
ସବୁ ଦୁଃଖର ଇତିହାସ ତରଳି ଯାଉଚି ବଡ଼ଠିରେ,
ଘୂରି ଘୂରିକା କାଳି ଜହ୍ନର କୁହୁକରେ ।"

(ସମୁଦ୍ର — ୧୯୭୫, ସ୍ରୋତର ନାମ ରୀତ)

ମଣିଷର ସୁଖଦୁଃଖ ସବୁ ସମୁଦ୍ର ସମଭାଗୀ । ସେଥିପାଇଁ ସେ ମଣିଷର ଏତେ ଅନ୍ତରଙ୍ଗ । ତାର ପ୍ରଶାନ୍ତ ନୀଳିମା, ଧ୍ୟାନ ଗମ୍ଭୀର ମୂର୍ତ୍ତି, ଲହରୀର ଉଚ୍ଛଳ ତରଙ୍ଗ ଅନେକ ଅକୁହା କଥା କହିଯାଏ । ଆଉ ଆକାଶ ? ସେ ବି ସମୁଦ୍ର ପରି ନୀରବରେ ବହୁତ କଥା କହେ । ସମୁଦ୍ର ଓ ଆକାଶର ସୀମାହୀନତା ସୁକୁମାର ଭାବ ଜାଗେ ଜାଗେ କହିଯାଏ ମଣିଷର ସମୀପକୁ । ଦୂର ଦିଗ୍‌ବଳୟରେ ଆକାଶ

ଓ ସମୁଦ୍ର ଏକାକାର । ମୌସୁମୀ ବାୟୁର ଝଞ୍ଜାଭୂମି ସମୁଦ୍ର ହଠାତ୍ ଗମ୍ଭୀର ହୋଇଯାଏ; ଆସନ୍ନ ବର୍ଷାର ସମ୍ଭାବନାରେ ପାଣ୍ଡୁର ହୋଇଯାଏ ଆକାଶ । କବି କହନ୍ତି—"ଯେତେବେଳେ ସମୁଦ୍ର ଚକ୍ଷୁ କରେ/ ପାଣ୍ଡୁର ଆକାଶକୁ, ମାଟିର ଉପର ସ୍ତର/ ବର୍ଷାର ପ୍ରତିଶ୍ରୁତିକୁ ଓଟାରି ନିଏ / ଶିକାର ପରି ତା ଅଦୃଶ୍ୟ ଗୁମ୍ଫାକୁ ।" (ସୂର୍ଯ୍ୟମୁଖୀ —ସ୍ରୋତର ନାମ ରୀତ) । ଅଥବା ହାତ ବଢ଼ାଇଲେ ଆକାଶ /ତେଣ୍ଡି ପଲ୍ଲବ ଫାଙ୍କ୍ କରି/ ମାଟିର ଓଠକୁ,/ ଗୋଡ଼ ବୁଡ଼ାଇଲେ ସମୁଦ୍ର/ଭିଜି ନଥ ଢେଉର ମଧ୍ୟକୁ; ଓ ଛୁରି ପାତିଲେ ହୃତାଶ/ ଚରିଯିବ ରକ୍ତ ଓ ମାଂସକୁ ।"

(ପରହ୍ରଦ-- ଅନ୍ତତଃ ନିଷ୍ଟୁପ)

ପ୍ରଜାପତି, ହଳଦୀବସନ୍ତ କୁଆ କୋଇଲିର ସ୍ପର୍ଶରେ ପ୍ରକୃତି ନୂତନ ବର୍ଣ୍ଣବିଭା ନେଇ କବିଙ୍କ ଆଗରେ ପ୍ରତିଭାତ ହୋଇଛି । ହଳଦୀବସନ୍ତଟି ସଜନା ଗଛରେ ଦେଖିଲେ କବିଙ୍କର ଦୃଷ୍ଟି ପ୍ରସାରିତ ହୋଇଯାଏ । "ହଳଦୀ ବସନ୍ତଟିଏ ସଜନା ଗଛରେ /ଦେଖିଲେ : ପଚାଶଆ ସବୁଜ କ୍ଷେତ/ ହଠାତ୍ ହଳଦିଆ ଦିଶିଯାଏ । /କଅଁଳା ବାଛୁରୀଟି ମା'ର ସନ୍ଧାରେ / ମୁହଁ ଗୁଞ୍ଜିବାର ଦୃଶ୍ୟ ବି/ ଦେଖିହୁଏ ସହଜରେ ।" (ନିତ୍ୟ ନିଯୁମିତ—୧୯) ଖଣ୍ଡି ଉଡ଼ା ଦିଆ ଲେଞ୍ଚଣି ଖଞ୍ଜିଥିବା ପକ୍ଷୀର ଭଙ୍ଗୀରେ ପୁଣି ମୁଗ୍ଧ ହୋଇଛନ୍ତି କବି । ପ୍ରତିଦିନ ନୂଆ ଭାବରେ ପ୍ରକୃତିକୁ ଦେଖିବାକୁ କବି ଆଗ୍ରହୀ । "ଫୁଲ ଫୁଟୁ, ଫଲ ଲେଟୁ / ଗୀତ ଗାଉ ବସନ୍ତର ପକ୍ଷୀ, /ଆଜିକାର ନୂଆ ଗୀତ / କାଲିପାଇଁ ନ ରହୁ ଗୋ ବାକି ।" (ନୂଆ ଗୀତ —ସୁରଣ ବସୁରଣ) । ସେଥିପାଇଁ ବାଦୁଡ଼ିର ଚାଁ ଚାଁ ଶବ୍ଦ, ଦରଖାର ଲୁଆଁଣିଆ ଗୀତ ତାଙ୍କୁ ସୁନ୍ଦର ମନେ ହୁଏ ।

ପଲ୍ଲୀର ସକାଳ, ସଞ୍ଜ, ଦ୍ୱିପ୍ରହର; ସହରର ସକାଳ ସଞ୍ଜ ଓ ଦ୍ୱିପ୍ରହରଠାରୁ ସମ୍ପୂର୍ଣ୍ଣ ଭିନ୍ନ । ଉଭୟ ସ୍ଥାନର ଅନୁଭୂତି ଭିତରେ କବି ଦେଖାଇଛନ୍ତି, ପଲ୍ଲୀ ଜୀବନର ସ୍ୱାଭାବିକତା ଓ ସୌନ୍ଦର୍ଯ୍ୟବୋଧ । ସକାଳର ଶିରଶିର ପବନର ପ୍ରଶାନ୍ତି ଭିତରେ ପଲ୍ଲୀର ପ୍ରାତ୍ୟହିକ କାର୍ଯ୍ୟକଳାପ ଆରମ୍ଭ ହୁଏ । ମଙ୍ଗଳମୟ ସନ୍ଧ୍ୟାର ଆଗମନରେ ତୁଳସୀ ଚଉଁରା ମୂଳରେ ଜଳି ଉଠେ ସଞ୍ଜବତୀ । ଏବଂ ପୋଡ଼ା ସଳିତାର ଗନ୍ଧ ସଞ୍ଚରି ଯାଏ ମନରେ । କମଳାକାନ୍ତଙ୍କ ସଞ୍ଜର ବର୍ଣ୍ଣନା ଇଲିଅଟ୍ଙ୍କ ଅପରେସନ ଟେବୁଲ ଉପରକୁ ଆଣୀତ ଚେତନାହୀନ ରୋଗୀ ପରି ଆକାଶର ଏକ କୋଣରେ ଶୃଙ୍ଖଳିତ ଲୁଟେଇ (୧୧) କ ଗୁରୁପ୍ରସାଦ ମହାନ୍ତିଙ୍କ ପରି ରେଲ ପୋଲ

୧୧ । 'When the evening is spread against the sky like a patient etherised on the table''—T. S. Elliot.

ଆଉ୍ ତାହା ଆସେ ନାହିଁ । ତାଙ୍କ ସନ୍ଧ୍ୟାର ପରିସର ଅତ୍ୟନ୍ତ ବ୍ୟାପକ ଏବଂ ତାହା କବି ଦୃଷ୍ଟିର ତୀକ୍ଷ୍ଣତା ଓ ସୂକ୍ଷ୍ମତାର ସୂଚକ ।

"ସଞ୍ଜ ଆସି ଠିଆ ହୁଏ ଟ୍ରାମ୍ ବାସ୍
ରିକ୍ସା ଏବଂ ସାଇକେଲ, ଲୋକ ଗହଳିରୁ
ଆମ ବାଣ୍ଡ ଚଉଁରର ମୂଳେ ।"

(ସକାଳ ସଞ୍ଜ ଓ ଦ୍ୱିପ୍ରହର) —'କବିତାର ମୂର୍ତ୍ତି' ।

ଅନ୍ୟ ପକ୍ଷରେ ଦୀପଟିଏ ଜଳିଲେ ସଞ୍ଜର ଉପସ୍ଥିତି ଜଣା ପଡ଼େ । ତାରାଟିଏ ଆକାଶର ବଗିଚାରେ ଉଙ୍କି ମାରିଲେ ସଞ୍ଜ କୁଆଡ଼େ ଅନ୍ତର୍ହିତ ହୋଇଯାଏ । ଆସେ ରାତି । ବଳୁଆର 'ହୁକେ ହୋ' ଭିତରେ ସଞ୍ଜ ଆହୁରି ଦୂରଗାମୀ ହୋଇଯାଏ । କାଳାନ୍ତରର କୋଳରେ ତାହା କ୍ରମଶଃ ହଜିଯିବାକୁ ଲାଗେ । 'ଦୀପଂ ଜ୍ୟୋତି ପରଂବ୍ରହ୍ମ । ଦୀପଂ ଜ୍ୟୋତି ଜନାର୍ଦ୍ଦନ/ ଦୀପଂ ଜ୍ୟୋତି ହରତେ ପାପଂ ସନ୍ଧ୍ୟା ଦୀପଂ ନମସ୍ତୁତେ ।" ଶ୍ଳୋକର ମନ୍ଦ୍ର ଧ୍ୱନି କ୍ରମଶଃ ଅସ୍ପଷ୍ଟ ହୋଇ ଆସେ । (୧) ଏହି ବର୍ଣ୍ଣାଢ଼୍ୟ ସଞ୍ଜବେଳେ କେଉଁ ମଣିଷ ହୁଏତ ନିଜକୁ ଖୋଜିବାକୁ ଚେଷ୍ଟା କରେ । ଜୀବନର ଘୂର୍ଣ୍ଣି ଭିତରେ ପଡ଼ି ମୁକୁଳିବାର ବାଟ ପାଉ ନ ଥିବା ମଣିଷ ଜୀବନର ବିଷାଦ ଆକାଶରେ ନିମଗ୍ନ ହୁଏ । "ଆଜିତା ମାଜିତା ଏମିତି ଗୋଟେ ବର୍ଣ୍ଣିଳ ସଞ୍ଜକୁ/ ଉହ୍ମା ଏ କେଉଁ ଭଉଁରୀ, କେଉଁ ପୋଖରୀର ପଦ୍ମ ନାଡ଼ ଯେ: ସ୍ୱାମାନେ ସଞ୍ଜ ଦଳିତା ଜାଳିବା ପୂର୍ବରୁ ଚହଟି ଉଠେ/ ଅନ୍ଧାରର ମୁହଁ, ଗୋଟେ ଏକ ମୁହାଁ ମଣିଷର/ ଆଖିରେ ଖୁନ୍ଦ ହୋଇଯାଏ/ ଭେଦାଭେଦର, ହେର୍‌ଫେର୍‌ର, ବିଷାଦ ଆକାଶର/ ଫଳିତ ସୂତର ଆଲୁଅ ।" ( ଛିନ୍ନ ସ୍ୱାଦର କବିତା—ଗାଁ ଗା' ନା ରେ ପକ୍ଷୀ ) ।

ପଲ୍ଲୀର ପ୍ରାଣପ୍ରାଚୁର୍ଯ୍ୟପୂର୍ଣ୍ଣ ଜୀବନ ସତ୍ତା କବି ଶ୍ରୀ ଲେଙ୍କାଙ୍କ କବିତାରେ ବୈଚିତ୍ର୍ୟମୟ ସ୍ୱରରେ ବନ୍ଧା । ନଈକୂଳରେ କାହାର ନୂଆ ବୋହୂ ଲାଜ ଲାଜ ଭଙ୍ଗୀରେ ସ୍ନାନ ସାରିଯିବାଠାରୁ ଗାଁର ମଶାଣି, ଜାଗୁଳାଈ ଠାକୁରାଣୀ ଏବଂ ଧାଣ୍ଡି ବଗ ପୋଖରୀର ଅତଡ଼ାରେ ମାଛକୁ ଶିକାର କରିବାର ଉଦ୍ୟତ ଦୃଶ୍ୟ ପର୍ଯ୍ୟନ୍ତ କବି ଲେଖନୀରେ ଚମତ୍କାର ରୂପ ପରିଗ୍ରହ କରିଛି । ଗାଁର ଖଞ୍ଜଣି ମାଡ଼, ପଞ୍ଚାନନ ମେଳାର ଦୃଶ୍ୟ ପରିବେଶ ସବୁ କବି ଏକାନ୍ତଭାବେ ଆତ୍ମୀୟ । ଋତୁ ଭେଦରେ ପ୍ରକୃତିର ପରିବର୍ତ୍ତନକୁ ସେ ତୀକ୍ଷ୍ଣ ଭାବରେ ଲକ୍ଷ୍ୟ କରିବା ସଙ୍ଗେ ସଙ୍ଗେ ପାହାଡ଼, ନଦୀ, ସମୁଦ୍ର, ଆକାଶ, ପଶୁ ପକ୍ଷୀ ସଭିଏଁ ତାଙ୍କ ଶ୍ରଦ୍ଧାଶୀଳ

(୧) । 'ଅପେକ୍ଷା କେବଳ'—'ଶ୍ଳୋକର ନାମ ବୃକ୍ଷ'—ପୃ ୧୯-୨୦ ।

ଦୃଷ୍ଟିରେ ମୁହୁର୍ମୁହୁ ନୂଆ ନୂଆ ରୂପଲାବଣ୍ୟ ଘେନି ପ୍ରସ୍ଫୁଟ । ଆର୍ଥନୀତିକ ବିପର୍ଯ୍ୟସ୍ତ ପଲ୍ଲୀର ଏଇ ମନ୍ଦମଧୁର ବିଶାଳତାରେ କଳାବନ୍ତ ପରି କବିଙ୍କୁ ବ୍ୟଥିତ ଓ ଚିନ୍ତାକୁଳ କରିଛି । ସାମଗ୍ରିକ ସ୍ତରରେ ବିଚାର କଲେ କମଳାକାନ୍ତଙ୍କ ପଲ୍ଲୀ ଆମୁଖତା, ମାଟି ପାଣି, ପବନର ରଙ୍ଗ ଓ ବାସ୍ନାରେ ସୁରଭିତ । କେତେକ କବିତାରେ ପଲ୍ଲୀ ମଣିଷର ଭାଷାକୁ ଛନ୍ଦାଇ ଆଣି ସେ ଏକ ଚମତ୍କାର କାବ୍ୟରୂପ ପ୍ରଦାନ କରିଛନ୍ତି । ପଲ୍ଲୀର ନିଷ୍କପଟ ଜୀବନ ଦର୍ଶନ, ସୁବିଧା ଅସୁବିଧା, ଦୁଃଖ ସୁଖ, ଭାଗ୍ୟ, ଦୁର୍ଭାଗ୍ୟ, ଖେତ ଓ ଖେତିର ଜୀବନ୍ତ ବର୍ଣ୍ଣନା 'ଏଠି ସବୁ ଧାନ ଶୀଳ', 'କ୍ରମଶଃ ବର୍ଷା, ଶବକୁ ମନ ଓ ଈଶ୍ୱର', 'ବଡ଼ କଷ୍ଟରେ ମନେ ପଡ଼େ' (ଆଶ୍ଚର୍ଯ୍ୟ ସ୍ୱରସ୍ୱର ପ୍ରକାଶେ) ଠାରୁ 'ଜାଏସ କବିତା—୨' (୧୯୮୨ର ବନ୍ୟା) ପର୍ଯ୍ୟନ୍ତ ବିସ୍ତୃତ ।

ଆଗରୁ କହିଛି—କମଳାକାନ୍ତ ଜଣେ ପଲ୍ଲୀ ମଣିଷ । ପଲ୍ଲୀର ଧୂଳି ଧୂସର, ସରଳ ସ୍ନିଗ୍ଧ ଜୀବନର ଆତ୍ମୀୟତା ତାଙ୍କ କବିତାର ନାନ୍ଦୀମୁଖ । ଜୀବନର ଅକପଟ ସ୍ୱାକ୍ଷର ହେଉଛି ତାଙ୍କ ଅନୁଭୂତିଶୀଳ କବି ପ୍ରାଣର ସ୍ୱାଭାବିକତା ଓ ପଲ୍ଲୀଭିତ୍ତିକ ସମ୍ବେଦନଶୀଳତା । ସ୍ୱଚ୍ଛତା, ନୈସର୍ଗ ପ୍ରକୃତି ପ୍ରୀତି, ସୌନ୍ଦର୍ଯ୍ୟବୋଧ ଓ ଜୀବନର ଉତ୍ଥାନ ପତନର ଅସ୍ଥିରତା ତାଙ୍କ କବିତାର ଆଖି ଦୃଶିଆ ବିଭବ—ଯାହା 'ସୁନା ଫସଲ'ର 'କ୍ଷୀରସାଗର' କବିତାଠାରୁ ଏବର ନାନା ଦ୍ୱନ୍ଦ୍ୱ ଓ ସଂଶୟ ପୀଡ଼ିତ ଆଧୁନିକ ଚେତନା ସମ୍ଭୂତ ବହୁ କବିତା ଯାଏ ସେଇ ଖଣ୍ଡି ଓଡ଼ିଶାଦିଆ ପଲ୍ଲୀ ସୁଷମାର ରଙ୍ଗ ଓ ବାସ୍ନା ଆମକୁ ମୁଗ୍ଧ କରେ ।



# ଅଷ୍ଟମ ଅଧ୍ୟାୟ

## ଆତ୍ମପରିଚୟ ଓ ଆତ୍ମସ୍ୱୀକାରୋକ୍ତିର କାଠଗଡ଼ାରେ କବି

"କବି କାଠଗଡ଼ାରୁ ଦେଖି ପାରୁନି ଆତ୍ମରକ୍ଷାର ପଦ୍ଧତି,
କବି ସ୍ପଷ୍ଟ କରି ପାରୁନି ଅଭିପ୍ରାୟ, ଶୀତଳତାର ଉଚ୍ଚାରଣ।
କବି ନିଜ ଭିତରେ ନିଜେ ଶୁଣୁଛି
ମାଡ଼ପିଟ୍, ହଟ୍ଟଗୋଳ, ଟଣାଟଣି, ଉଚ୍ଛୃଙ୍ଖଳ, ଦୋମୁହାଁ ଲୋକଙ୍କର
ରକ୍ତାକ୍ତ ଗୁଞ୍ଜନ। କବି ପ୍ରାର୍ଥନା ଗାଇଦେଲେ ଅର୍ପିତ।
କବି ସବୁଜା ପୃଥିବୀର ଚଢ଼େଇଙ୍କ ଝୁଣ୍ଡରେ
ହର୍ଷ ଉଦ୍ଭିଜା ଭୁଲା ଜାଳନ୍ତି ବେଳେ ଅଦ୍ଭୁତ,
କବି ନିଜ ସତ୍ତ୍ୱ ନିଜକୁ ସାକ୍ଷାତ ଦେଇଦେଲେ
ଉଦ୍ଭଟ ଅନ୍ଧକାରେ ପାଦ ଥୋଉଛି ବନ୍ଧୁ।"

(ନିଜ ସତ୍ତ୍ୱ ସୋଙ୍କେ ସାକ୍ଷାତକାର—ପୃ. ୧୪-୧୫)

ଆତ୍ମାନୁସନ୍ଧାନ କବିର ଲକ୍ଷ୍ୟ। ନିଜକୁ କବି ଖୋଜିବା ଭିତରେ ଯେମିତି ଭେଟିଛି, ଯେମିତି ଦେଖିଛି, ଯେମିତି ଠକିଛି, ଶିଖିଛି ସେସବୁକୁ ନିଷ୍କପଟ ଭାବେ ସ୍ୱୀକାର କରିନେବା ଭିତରୁ ମିଳେ କବିର ଆତ୍ମପରିଚୟ। ଯେ କୌଣସି ପରିସ୍ଥିତିରେ ବାସ୍ତବ ଅନୁଭୂତିର ଅକୃତ୍ରିମ ପ୍ରକାଶ ଆତ୍ମସଚେତନ କବିର ପ୍ରଧାନ ପାଥେୟ। କଳ୍ପନାପ୍ରବଣତା ନାମରେ ଉଦ୍‌ଭଟତାକୁ ଅଗ୍ରାହ୍ୟ କରେ କବି। ଆପଣାର ବାସ୍ତବ ଅନୁଭୂତିକୁ ନିଜ ପାଇଁ କବିତାରେ ରୂପ ଦେଉଥିବା କବି ନିଜର ନିରପେକ୍ଷତା ସମ୍ପର୍କରେ ଯେତେ ଘୋଷଣା କଲେ ବି ପାଠକଙ୍କ ଭାବନାରୁ ମୁକ୍ତି ପାଇପାରେ ନାହିଁ। ସେ କବିତା ଲେଖେ ନିଜ ପାଇଁ ପୁଣି ଅନ୍ୟମାନଙ୍କ ପାଇଁ। ସାର୍ବଜନୀନ ସ୍ୱାର୍ଥର ପ୍ରଶ୍ନ ଯେଉଁଠି ଉଠେ, ସେଇଠି ହୁଏ ନାନା ତର୍କ ବିତର୍କର ସୂତ୍ରପାତ। ବିଚିତ୍ର ନିର୍ଲିପ୍ତ, ଭାବଶୂନ୍ୟ ଅହଙ୍କାରକୁ ନେଇ ବଞ୍ଚିଥିବା କବି କୈଫିୟତର କାଠଗଡ଼ା ଭିତରକୁ ଟାଣି ହୋଇଥାଏ। ବୋଧହୁଏ କବିର ଜୀବଦ୍ଦଶାରେ ଏ କାଠଗଡ଼ାରୁ ମୁକ୍ତି ମିଳେ ନାହିଁ। ଫଳରେ ନିଜର କାବ୍ୟାଦର୍ଶ, ଭାବାଦର୍ଶ, ମୂଲ୍ୟବୋଧ ସବୁ ଅନ୍ୟକୁ ବୁଝାଇବାକୁ ପଡ଼େ। ନିଜର ଅନିଚ୍ଛା ସତ୍ତ୍ୱେ ପତ୍ରପତ୍ରିକାକୁ ସାକ୍ଷାତକାର ଦେବାକୁ ହୁଏ। କବି ଉପରେ ଏଗୁଡ଼ାକ ସବୁ ଯୋଜନାବଦ୍ଧ ଅତ୍ୟାଚାର। ନିଜକୁ ଜାଣିବା ପାଇଁ, ନିଜକୁ ବୁଝିବା ପାଇଁ

ଲେଖୁଥିବା କବିଟିକୁ ଯଦି କ୍ରିଟାଙ୍କ କାଠଗଡ଼ାରେ ଛିଡ଼ା ହେବାକୁ ପଡ଼େ, ତେବେ ସେ ତ ନିଶ୍ଚୟ ଆତ୍ମପକ୍ଷ ସମର୍ଥନ କରିବ । କିନ୍ତୁ ଏହାର ମଧ୍ୟ ଗୋଟାଏ ଭଲ ଦିଗ ରହିଛି । ସମସାମୟିକ ପରିସ୍ଥିତି, ପରମ୍ପରା, ପାଠକୀୟ ଦୃଷ୍ଟିଭଙ୍ଗୀ ଏହାଦ୍ୱାରା କବିତାରେ ପରିସ୍ଫୁଟ ହୋଇଥାଏ । କବିର ସମୟକୁ ଜାଣିବା ପାଇଁ ଯଥେଷ୍ଟ ଖୋରାକ ମିଳିଯାଏ ଯେପରି ମଧ୍ୟଯୁଗର କବି ଦୀନକୃଷ୍ଣଙ୍କ ପ୍ରତିବାଦ୍ୟଶୀଳ ମନୋବୃତ୍ତି ଭିତରେ ଆମେ ଏହି ଦୃଷ୍ଟିକୋଣର ପରିଚୟ ପାଉଁ । ରାଜାଙ୍କ ନାମରେ ଭଣିତା କରିବା ଆଦେଶ ବିରୁଦ୍ଧରେ ଦୀନକୃଷ୍ଣ ଉତ୍କ୍ଷିପ୍ତ ହୋଇ କହିଥିଲେ—
"କବି ଯା କରେ ମୂର୍ଖକୁ ସ୍ତୁତି /ଏଥିରୁ ନାହିଁ ବଳି ବିପତ୍ତି/ ଏଥିକି ପ୍ରତି ଗ୍ରୁତିକୁ କାଟି/ ମାରିବା ଭଲ ହେ ।" (ରସ କଲ୍ଲୋଳ—୧୬ଶ ଛାନ୍ଦ) । ଏହାହିଁ କବିର ପ୍ରକୃତ ପରିଚୟ । କିନ୍ତୁ ଏଇ ସ୍ୱାଧୀନ ମନୋବୃତ୍ତି ପାଇଁ ରାଜକୀୟ ଅସୂୟା, ହିଂସା, ଦ୍ୱେଷର ଶରବ୍ୟ ହୁଏ କବି । ଆଧୁନିକ କବି ସେପରି ଶାସକୀୟ ପ୍ରବଂଚନାର ଶିକାର ନ ହେଲେ ବି ପାଠକୀୟ ପ୍ରବଂଚନାର ଯେ ଶିକାର ହୁଏ, ଏଥିରେ କିଛି ସନ୍ଦେହ ନାହିଁ । କମଳାକାନ୍ତୀୟ କବିତାରେ ଏହାର ପ୍ରତିକ୍ରିୟା ସହଜରେ ଲକ୍ଷ୍ୟ କରି ହେବ । ଆପଣାର ନିନ୍ଦା, ଅପମାନ, ଯନ୍ତ୍ରଣା ଏବଂ ମନସ୍ତାତ୍ତ୍ୱିକ ସମସ୍ୟା ତାଙ୍କୁ ଆତ୍ମସ୍ୱୀକାରୋକ୍ତିର କାଠଗଡ଼ାରେ ଠିଆ କରେଇବାକୁ ବାଧ୍ୟ କରିଛି । ବ୍ୟକ୍ତିଜୀବନ ସଂଗ୍ରାମର ଅସହାୟତାରୁ ହେଉ ବା କାବ୍ୟସାଧନାର ବିମୂର୍ତ୍ତି ପ୍ରେରଣାରୁ ହେଉ— ଏସବୁ ମାନସିକ କ୍ରିୟା ବିକ୍ରିୟାର ସୃଷ୍ଟି ହୋଇଥାଏ । ଏସବୁକୁ ସାମ୍ନା କରିବା ଏକାନ୍ତ ଜରୁରି ହୋଇ ଉଠେ । ପ୍ରଥମ ପୁରୁଷରେ ନିଜର ବକ୍ତବ୍ୟ ରଖିବାଦ୍ୱାରା ଏଇ ସବୁ ସମସ୍ୟାର ଯାଥାର୍ଥ୍ୟ ପ୍ରତିପାଦନ ପାଇଁ କବି ଯେ ଉଦ୍ୟମଶୀଳ ଏହା ସୁସ୍ପଷ୍ଟ । ସୁଖ ଦୁଃଖ, ଆନନ୍ଦ ବିଷାଦ, ପ୍ରେମ-ଅପ୍ରେମ ପ୍ରଭୃତି ବୈୟକ୍ତିକ ଅନୁଭୂତିର ଅକୃତ୍ରିମ ପ୍ରକାଶ ପାଇଁ ଏଇ କାବ୍ୟକୌଶଳ ପଥ ପ୍ରଶସ୍ତ କରି ପାରିଛି । 'ନିଜ ସହ ଗୋଟେ ସାକ୍ଷାତକାର' ବେଳୁ କବିଙ୍କର ଏଇ ଅନୁଭୂତି ହୋଇ ଉଠିଛି ଆତ୍ମ-କୈନ୍ଦ୍ରିକ । ମାତ୍ର ଏଇ ଆତ୍ମକୈନ୍ଦ୍ରିକତା ନୈର୍ବ୍ୟକ୍ତିକତା ମଧ୍ୟ ଦେଇ ବେଳେବେଳେ ପ୍ରକାଶିତ ହେବା ଦ୍ୱାରା କବିଙ୍କର ନୀବ୍ୟକ୍ତି ଆତ୍ମା ଅଧିକରୁ ଅଧିକ କବିତାର କେନ୍ଦ୍ରସ୍ଥଳକୁ ଚାଲି ଆସି ପ୍ରଚ୍ଛନ୍ନ ଭାବେ ରହିଯାଏ ।

'ହିଉଚରଣ'ରୁ କବି ନିଜକୁ ଖୋଜିବାର ଯେଉଁ ସକ୍ରିୟ ଉଦ୍ୟମ ଆରମ୍ଭ କରିଛନ୍ତି, ତାହା ତାଙ୍କର ପରବର୍ତ୍ତୀ ସବୁ ଗ୍ରନ୍ଥରେ ଊଣାଧିକେ ଲକ୍ଷ୍ୟ କରିହୁଏ । ଏପରିକି ତାଙ୍କର ଶେଷ ପ୍ରକାଶିତ ଗ୍ରନ୍ଥ 'ଗୀତ ରା' ନାରେ ପକ୍ଷୀ'ରେ ଏହା ନୂତନ ଏକ ବଳିଷ୍ଠ ବିଭୂତି ନେଇ ପ୍ରକାଶିତ ।

"ମୁଁ ଅବକା ବୁଢ଼ା ହୋଇ ଯାଉଚ ଯେ ନଜଲୁ ବଳଦା ଛଡ଼ା
ନଜକୁ ଶୋଧିବାଛଡ଼ା, ଦେଶ ନେଶର ଯାଞ୍ଜିପଟାର
ବସ୍ତାନ ଫିଟାଇବା ଦରକାର ନାହିଁ । କୌଣସି ଚୁଟିକଟା
ବୁଢ଼ା ବ୍ରାହ୍ମଣ ପରି, ଜ୍ୟୋତିଷ ପରି, ଅବଶିଷ୍ଟ ଦିନଗୁଡ଼ାକର
ଜନ୍ମ ମରଣର ଭାଗ୍ୟ ଛନ୍ଦିବାକୁ ମନ ତାକୁ ନାହିଁ ।"

(ପ୍ରକୃତକ୍ଷୁ—ଗୀତ ଗା' ନାରେ ପକ୍ଷୀ)

ଜୀବନର ସବୁ ସମ୍ଭାବନା ଲୁଟିଗଲେ, ଜୀବନଯାତ୍ରାରେ ମଣିଷ ଅଣ-ନିଃଶ୍ୱାସ ହୋଇଗଲେ, ନଜର କୃତକର୍ମ ସବୁ ପ୍ରକାଶ କରନ୍ତି । ଏହା ହିଁ ତ ଆମର ପାରଂପରିକ ଧାରା । କିନ୍ତୁ କବି ଉକ୍ତିଷ୍ଟ ବୟସରେ ନଜର ପ୍ରାକ୍ତନ ଜୀବନ ଧାରାଠାରୁ ବିଚ୍ୟୁତ ହେବାକୁ ଶୁଦ୍ଧି ନାହାନ୍ତି । ନଜକୁ ଶୋଧିବା, ବଳଦା ଛଡ଼ା କୃତକର୍ମର ପ୍ରାୟଶ୍ଚିତ ତାଙ୍କ ଦୃଷ୍ଟିରେ ଏକ ମିଥ୍ୟାଗ୍ରହ । ଆପଣାକୁ କଠୋର ଯନ୍ତ୍ରଣା ଦେଇ ତାଙ୍କ ପକ୍ଷରେ ସନ୍ତୁଳନ ବରଂ ଶ୍ରେୟ । ନଜକୁ କରେଛି, ଚଳଛି ସବୁ ଭୁଲ୍ ଭଟକାକୁ ଉଦାର ଦୃଷ୍ଟିରେ ସ୍ୱୀକାର କରନେବାର ଆତ୍ମାସ୍ଥତା କବିଙ୍କ ନିକଟରେ ଅଧିକ । ସେଥିପାଇଁ ଅଧିକାଂଶ କବିତାରେ କବିହିଁ ତାଙ୍କ ନଜର କେନ୍ଦ୍ରବିନ୍ଦୁ । ବଡ଼ ବିଚିତ୍ର ଗଢ଼ କବି ମାନସର । ଗୋଟାଏ ମୁହୂର୍ତ୍ତରେ ସେ ବୀର ପରି ଗର୍ଜି ଉଠନ୍ତି ତ, ପୁଣି ଅନ୍ୟ ଏକ ମୁହୂର୍ତ୍ତରେ କାନ୍ଦ କାନ୍ଦ ହୋଇ ନୈରାଶ୍ୟର ସମୁଦ୍ରରେ ଉବୁଟୁବୁ ହୋଇଯାନ୍ତି । ଏହାହିଁ ମନର ସ୍ୱଭାବ ଗତି ବୋଲି ମନସ୍ତାତ୍ତ୍ୱିକଗଣ ସ୍ଥିର କରିଛନ୍ତି । (୧) କମଳାକାନ୍ତଙ୍କ କାବ୍ୟାୟନର ସ୍ୱାଭାବିକ କିମ୍ବା ଏଇ ପଥ ଦେଇ ଅଗ୍ରସର ।

"ମୋ ବନା, ମୋ ରାଜ ମୁକୁଟ
ଶୋହେ ଶୂନ୍ୟ, ଆକାଶର ଶିର ।
ମୋର ଦମ୍ଭ, ଗର୍ବର ଘାତଚିହ୍ନ
ସମସ୍ତର ଲୁଣି ହାଓ୍ୱା
ଆଘାତରେ ହୋଇଯାଏ ଚୂର ।"

( ଅଧୀଶ୍ୱର—ସ୍ରୋତର ନାମ ରତ୍ନ )

---

୧। Joad, C. E. M—Guide to Modern thought—Chapter ix P. 223

କବି ନିଜ ରାଜ୍ୟରେ ଅଜଣା ମଣିଷଟିଏ । 'ଅଖଣ୍ଡ ରାଜତ୍ୱ ତା' ଭାଗ୍ୟରେ ବୋଧହୁଏ ଲେଖା ହୋଇ ନାହିଁ । ତାର ସାମ୍ରାଜ୍ୟ ସବୁବେଳେ ଟଳମଳ । ନବେଳ୍ଳ: ଗ୍ରାହକଟିଏ ନ ପାଇବା ଯାଏ ସଂଶୟ ଦ୍ୱନ୍ଦ୍ୱ ଓ ଔଦ୍ଧତ୍ୟର ଖରସ୍ରୋତରେ କବି ବନ୍ଦୀ ହୋଇ ରହିଥାଏ । ସେ ପର୍ଯ୍ୟନ୍ତ ତାକୁ ଏକାକୀ ଲଢ଼ିବାକୁ ହୁଏ । ନିଜ ଅନୁଭୂତି ଯେବେ ଅନ୍ୟର ଗ୍ରାହକତା ଦ୍ୱାରା ସମ୍ମାନିତ ନ ହେଲା, ତେବେ ଜଣେ ମଣିଷ ଏକକ ଜୀବନମଧ୍ୟରେ କେତେ ସମୟ ଲଢ଼ି ପାରିବ ? କବି ରାଜା କିଏ ତାଙ୍କର ସିଂହାସନ ଅଳଙ୍କୃତ କରି ପାରିବ ? କବିଙ୍କର କନଫେସନ ତାଙ୍କର ମାନସିକ ସ୍ଥିତିର ନୈରାଶ୍ୟକୁ ପରିଷ୍କାର ଭାବରେ ଦେଖାଇ ଦିଏ । "ମୁଁ ଅଜଣା ସ୍ୱପ୍ନମୁଣି ସ୍ୱଳ୍ପହତ/ ମୋ ଶୈଶବ ଚେତନାର /କଣ୍ଟକ ଖଣ୍ଡରେ !" (ଅଧୀଶ୍ୱର) କବିଙ୍କର ଏହି ବେଦନାର ଅବସ୍ଥା ବୁଝାଇ କହିବା ଖୁବ୍ କଷ୍ଟକର । ବରଂ ଏହା କବିଙ୍କର ଏକ ନିରୁକ୍ତ ଅଭିମାନ ବୋଲି କୁହାଯାଇପାରେ । ନିଜଠାରୁ ନିଜକୁ ନିରାପଦ ଦୂରତ୍ୱରେ ରଖି ଆପଣାକୁ ଖୋଜିବା, ଆପଣାକୁ ନିଜ ଢାଞ୍ଚାରେ ଗଢ଼ିବା ଆତ୍ମସ୍ୱୀକାରୋକ୍ତିର ଉଦ୍ଦେଶ୍ୟ ନୁହେଁ । ଜୀବନର ସଂଗ୍ରାମକ୍ଷେତ୍ରକୁ ଅବତୀର୍ଣ୍ଣ ହୋଇଥିବା ମଣିଷ ଯେପରି ଲଢ଼େ ବା ମରେ ତାହା ଅନ୍ୟକୁ ଦେଖାଇଦେବା/ ବୁଝାଇ ଦେବା ଆତ୍ମସ୍ୱୀକାରୋକ୍ତିର ଉଦ୍ଦେଶ୍ୟ । ଯେବେ ତାହା ଅନ୍ୟର ସହାନୁଭୂତିଶୀଳ ଦୃଷ୍ଟିକୁ ଉଜ୍ଜୀବିତ କରି ନ ପାରିଲା ତେବେ କବିଙ୍କର କିଛି ଯାଏ ଆସେନା । କବି ଅନ୍ୟଠାରୁ ଶୁଭେଚ୍ଛା, ସହାନୁଭୂତି ପାଇବାକୁ ଇଚ୍ଛା କରୁଥିଲାବେଳେ ଏହାର ବିପରୀତ ଦିଗ ପ୍ରତି ବେଶ୍ ସଚେତନ । କବି ଭଲ କରି ଜାଣନ୍ତି—"ନିଜଠାରୁ ରାଜାଧିରାଜ, ଚକ୍ରବର୍ତ୍ତୀ / ସସାଗରା ଧରାର କିଏ ଅଛି ? /ନିଜେହିଁ ନିଜର ପ୍ରଭୁ, ଭୃତ୍ୟ, ଏବଂ/ ବନ୍ଦୀଘର ଗୋଟେହିଁ ;" (ନିଜ ସହ ଗୋଟେ ସାକ୍ଷାତକାର—ପୃ. ୧୦) । କବିସତ୍ତା ଓ ସମାଜସତ୍ତା ସହ ସଂଘର୍ଷ ଆଧୁନିକ କାଳରେ ଅଧିକ ପୂର୍ବେ ସେତେ ବେଶି ନ ଥିଲା । ତେଣୁ ଆଧୁନିକ କବି ସମାଜ-ସତ୍ତାର ସୂତ୍ରଧର । ସମାଜସତ୍ତା ଯେଉଁଠି କବି ସହ ତାଳ ଦେଇ ଚାଲି ନ ପାରେ, ସେଠି ସମାଜସତ୍ତାରେ କବିସତ୍ତାର ଉଦ୍ଘାଟନ ଘଟେ । କବି ସମାଜର ସାଧାରଣ ମଣିଷ ଭଳି ନୁହନ୍ତି ବୋଲି ସମାଜ ସହ ତାଙ୍କର ସଂଗ୍ରାମ ଅବଶ୍ୟମ୍ଭାବୀ ହୋଇ ଉଠେ । ସମାଜକୁ ସାମ୍ନା କଲାବେଳେ କବି ନିଜକୁ ବି ଭେଟନ୍ତି । ସମାଲୋଚକ ଦାଶରଥି ଦାସ କହନ୍ତି—"କବିଙ୍କ ଭିତରର ସାଧାରଣ ମଣିଷଟି ସମାଜ ଜୀବନର ସୁଖ ଶାନ୍ତି ଓ ନିରାପତ୍ତା ଅନ୍ୱେଷଣ କରୁଥିବାବେଳେ ଦୁର୍ଜ୍ଞେୟ ସୃଷ୍ଟି ପ୍ରବଣତା ତାଙ୍କୁ ସତ୍ୟ ଶିବ ସୁନ୍ଦରର ଆରାଧନା କରିବାକୁ ପ୍ରବର୍ତ୍ତାଏ । (କବି ଶ୍ରୀ ଲେଙ୍କାଙ୍କ ଭାଷାରେ ସମାଜ ତାଙ୍କୁ ସତର୍କ କରୁଛି—'ସହଜ ହୁଅ ନାହିଁ, .. ଆବଶ୍ୟକ ଥିଲେ ପିଠା ଚିଜା ଗୁଣ୍ଠି ବାଟଚଲା କ୍ଳାନ୍ତି ଭୁଲିଯାଅ ;' ପିଠା ଚିଜା ଗୁଣ୍ଠିବାର ଅଶାଳୀନ

ଆଚରଣକୁ ବର୍ତ୍ତମାନ ଜୀବନର ରୁଚି ଓ ସୌନ୍ଦର୍ଯ୍ୟବୋଧ ପ୍ରତି କଠିନ ବ୍ୟଙ୍ଗ ସମୁଦ୍ୟତ ହୋଇ ନାହିଁ କି ? (୧) ।

ପ୍ରକୃତ ସ୍ଥିତି କବି ସମାଜ ଉପରେ କେବଳ ବିସନ୍ତୁଷ୍ଟ ନୁହେଁ । ନିଜର ପ୍ରାଣପ୍ରିୟ କବିତାକୁ ମଧ୍ୟ ଇଏ ବାକୁ ଏଭଳି ଅସନ୍ତୋଷ ଏକାନ୍ତ ଜରୁରୀ ମନେ ହୁଏ । ହୁଏତ ଆଧୁନିକ ସମାଜ କବିତାର ପ୍ରୟୋଜନୀୟତାକୁ ସ୍ୱୀକାର କରେ ନାହିଁ । କିନ୍ତୁ ଜୀବନରେ ଯେ କବିତାର ସ୍ଥାନ ଅଛି, ଏହା ବିଂଶ ଶତାବ୍ଦୀର ମଣିଷ ଅସ୍ୱୀକାର କରି ପାରିବ ନାହିଁ । କବିତା ବିନା କାଳ ମୂକ, ଅଥର୍ବ । ଏହି ମୂକତ୍ୱ ଓ ପଙ୍ଗୁତ୍ୱ ବିରୁଦ୍ଧରେ କବି ଶ୍ରୀ ନେଙ୍କା ସ୍ୱର ଉତ୍ତୋଳନ କରିଛନ୍ତି ନିଜର କବିତା ମାଧ୍ୟମରେ । ବିଂଶ ଶତକର ଅର୍ଥନୀତିକ୍ଲିଷ୍ଟ ମଣିଷର ସମସ୍ୟା ଯେ କେବଳ ଅର୍ଥନୀତି ଭିତରେ ସୀମାବଦ୍ଧ, ଏକଥା କବି କଦାପି ଗ୍ରହଣ କରି ନେଇ ପାରିବେ ନାହିଁ । ଅର୍ଥନୀତିର ଜଗତ ବାହାରେ ଯେଉଁ ଅପେକ୍ଷାକୃତ ପୃଥିବୀ ରହିଛି ତାହାକୁ କବି କିପରି ବା ଭୁଲି ଯାଇ ପାରିବେ ! ବ୍ୟଙ୍ଗ ବାଣରେ କବି ଏହିପରି ଅସନ୍ତୁଷ୍ଟ ମଣିଷମାନଙ୍କୁ ସମାଲୋଚନା କରି କହନ୍ତି—'କାବ୍ୟର କାବ୍ୟିକ ସଫଳତା ହେଲା କାଳୋତ୍ତୀର୍ଣ୍ଣତା /କାଳକୁ କାଳହେଲା କଲା ଯେ /କଳାକାରମାନେ ଆମ୍ଭର ଅଦ୍ଭୁତ କୋଠରୀରେ ।" ( ନିଜ ସହ ଗୋଟେ ସାକ୍ଷାତକାର ପୃ.— ୩ ) । ତେଣୁ କବି ନିଜ ଉପରେ ଅଭିମାନ କରି କହନ୍ତି, "ମୁଁ" ଓରଫ କମଳାକାନ୍ତ/ ଓରଫ୍ ଭଣ୍ଡ କବି—" (ପୃ. ୯୯) । ଏହା କବିଙ୍କ କବିତାର କଥା ନୁହେଁ, ଏହା ସମାଜର ଅଭିଯୋଗ । ଅଧ୍ୟାପକ ଦାଶରଥି ଦାସ ଏହାକୁ ଅଯଥା 'ଶବ୍ଦ ମୋହ' ବୋଲି କହିବାର କାରଣ କରି ନାହାନ୍ତି । କବି ଅରସିକମାନଙ୍କର ଅଭିଯୋଗକୁ ନିଜ ଉପରକୁ ଟାଣି ନେଇଛନ୍ତି । ଏଠି ବ୍ୟଙ୍ଗ ବେଶ୍ ସମୁଦ୍ୟତ । ତେଣୁ କବି ଯେ ଭଣ୍ଡ ନୁହନ୍ତି, ସେ ଯେ ସବୁ ସତ୍ୟ ଓ ବାସ୍ତବର ରୂପକାର ଏହାହିଁ ବୁଝିବାକୁ ହେବ । ଅନେକ ସମୟରେ ଜୀବନର ନିନ୍ଦା, ଅପମାନ, ହତାଶ ଓ ଲୁକ୍କାୟିତ ଦୋଷ-ତ୍ରୁଟିକୁ କବି ବ୍ୟଙ୍ଗକବିତାର ଆଚ୍ଛାଦନରେ ଲୁଚାଇ ରଖିବାର ପ୍ରୟାସ ହେତୁ ପ୍ରକୃତ ମନ୍ତ୍ରଣାର ଶାନ୍ତତା ଓ ଗମ୍ଭୀରତା ଅନୁଭୂତ ହୁଏ ନାହିଁ । କବିର ସ୍ପନ୍ଦନଶୀଳ ହୃଦୟ ଯାଏ ଗୋଟାଏ ଜନ୍ତ୍ରଣାର ଖୋଳ ଭିତରେ ।

"ପାଗଳ କହୁଚି ପାଗଳକୁ ଯେ ତୁହି ହୁ ।
ମଗଜ ଅଣ୍ଡା କରି ପାଗଳ । ତୋ ଶୁଣିଲି

୧ । ଦାସ, ଦାଶରଥି 'ଶୂନ୍ୟଫଳ୍‌ଗୁ ଦୃଷ୍ଟି'—ନିଜ ସହ ଗୋଟେ ସାକ୍ଷାତକାର—ମୁଖବନ୍ଧ—ପୃ. (ଖ) ।

ମୂର୍ତ୍ତି, ତାଜା ହସର ବର୍ଚ୍ଚି ପାଣି ତରଯାଉ
କ୍ଷେତରେ, ଗ୍ରହରେ, ଅବୋଲକରା ମନର
ବାଲିରେ ଯେ ପଙ୍କ୍ତିରେ ଜମିବ ପ୍ରଜାପତିଙ୍କ ଭିଡ଼,
ଶିର୍ ଶିରେଇବ ମା'ମାନଙ୍କ ମାତୃତ୍ୱ ।"
(ପାଗଳ କହୁଛ ପାଗଳକୁ ଯେ—ଗୀତ ଗା' ନା ରେ ପକ୍ଷୀ)

ଏହି ଦୁଇଟିଯାକ ପାଗଳ ଗୋଟିଏ କବିର ଦ୍ୱୈତ ସତ୍ତା । ତେଣୁ ନିଜ ସହ ନିଜର ସାକ୍ଷାତକାର ଏଠାରେ ଅପରିହାର୍ଯ୍ୟ । କବି ବା କବିତା ଯାଦୁଘରର ସରକ୍ଷିତ ବସ୍ତୁ ନୁହନ୍ତି । କବିତା ଏକ ପ୍ରବହମାନ ଜଳ ତରଙ୍ଗ, ଯାହା ସ୍ରଷ୍ଟାର ବକ୍ଷରେ ସବୁବେଳେ ସଂଗ୍ରାମଶୀଳ । ନିଜ ସାଧନାର ଚରମ ସିଦ୍ଧି ପାଇଁ କବିଙ୍କର ଏଇ ଦୁର୍ଦ୍ଦମନୀୟ ଯାତ୍ରା । ଏଇ ମୂଲ୍ୟବୋଧର ଆଦର୍ଶରେ କବିର ବ୍ୟକ୍ତିଗତ ଜୀବନ ଜଡ଼ିତ ହୋଇଯାଏ । ଯେଉଁଠି କବି ଓ କବି ବ୍ୟକ୍ତିତ୍ୱ ପୃଥକ, ସେଠି ତ କେବଳ ଛଳନାର ଘନତ୍ୱ । କବି ଓ ତାର କାବ୍ୟପୁରୁଷ ମଧ୍ୟରେ ସୂକ୍ଷ୍ମ ସମ୍ପର୍କବୋଧ କାବ୍ୟାନୁଶୀଳନ ପାଇଁ ଏକାନ୍ତ ଆବଶ୍ୟକ । ସେ ଦୃଷ୍ଟିରୁ ଶ୍ରୀ ଲେଙ୍କାଙ୍କ ସଫଳତା ଅଧିକ । ତାଙ୍କର ବ୍ୟକ୍ତିଗତ ଧ୍ୟାନ ଧାରଣା ସେଥିପାଇଁ କବିତା ଭିତରକୁ ସଂକ୍ରମିତ । କବି ଶ୍ରୀ ଲେଙ୍କା କବିତା ରଚନାକୁ ତାଙ୍କ ଜୀବନର ମହତ୍ତ୍ୱ କର୍ମ ବୋଲି ଧରି ନେଇଛନ୍ତି ଏବଂ ଏହା ସୁନିଶ୍ଚିତ ଯେ ପ୍ରତ୍ୟେକ ମହତ୍ତ୍ୱକର୍ମ ପଛରେ ଥାଏ ସଂଗଠିତ ଚକ୍ରାନ୍ତ ଓ ପ୍ରବଳ ଶକ୍ତି । ଶ୍ରୀ ଲେଙ୍କା ଏଥିରୁ ନିଷ୍କୃତି ପାଇ ନଥିବାର ପ୍ରମାଣ ତାଙ୍କର କବିତା । କାରଣ ତାଙ୍କ ନିକଟରେ "Artasa discovery, and revealation of the mystery and wonder of life." (କ) । କବି ମନ ଏଥିପାଇଁ ଶଙ୍କାକୁଳ । ସମସ୍ତଙ୍କ ଧୃଷ୍ଟତା ନିକଟରେ ତାଙ୍କର ବା ଶକ୍ତି କେତେ ? କବି କହନ୍ତି—"ମୁଁ ଚେତେବ ଅସ୍ତ ଯିବ ?/ ପବନର ହାଲ୍‌କା ଆକାଶ/ ଫାଟିଯିବ ନାରଙ୍ଗୀ ଫଳର ଶୋଷ/ ଉଦ୍‌ଭାସିବ !/ ଢଗ ବଧୂ କ ଢଗମୂର୍ତ୍ତ/ ହେଇ ହେବ ଛୁଡ଼ା ? ସ୍ୱର୍ଣ୍ଣଦ୍ୱାର ଆପେ ଆପେ ଖୋଲିଯିବ ।" ( ସୂର୍ଯ୍ୟାସ୍ତ—ସ୍ରୋତର ନାମ ରକ୍ତ) । ଏହା ଗୋଟିଏ ସଚ୍ଚା କବିର ଆତ୍ମ ଅଙ୍ଗୀକାର । ନିଜ ଦେଶ, ନିଜ ପରିବେଶରୁ କବି ଯାହା ପାଇବା କଥା, ସେତକ ନ ପାଇଲେ ଘୃଣାରେ ସମାଜ ପ୍ରତି ନାସା କୁଞ୍ଚିତ ହୋଇ ଉଠେ କବିର । କବି ଶ୍ରୀ ଲେଙ୍କାଙ୍କ ସ୍ୱୀକାରୋକ୍ତି ( Confession ) ଓ ପରିଚୟ ( Identity ) ଅନ୍ତରାଳରେ ଅଜାତ ସବୁବେଳେ କ୍ରିୟାଶୀଳ । ଏହା ହୋଇ ନ ଥିଲେ କଳ୍ପିତତାର

କ । Leishman, J. B. —Selected poems, Rilke, translated with an introduction, P. 12.

ସିଂହାସନରେ ଆରୂଢ଼ କବି, ବିଗ୍ରହଣୀଳତାର ଉତ୍କର୍ଷରେ ଠିଆ ହୋଇଥିବା କବି କ୍ଷୁବ୍ଧ ହୋଇ କହି ମାରନ୍ତେ ନାହିଁ—"ମୁଁ କହୁଚି କମଳାକାନ୍ତ !/ ଗୋଟେ ସଢ଼ା କବି, ଗୋଟେ ଦୁଅଣିଆ ଅଚଳ ଦୋପଇସି X X X ଦୁର୍ବୋଧ କମଳାକାନ୍ତ ! /ଦୁର୍ବୋଧ କବିତା ପଛ ସୁବୋଧ ଜୀବନ /ହସେ ନା, କାନ୍ଦେ ନା, ହଟେ ନା X X X ଶଳା କବି କ୍ଷେନା ଜାଣେ, ଗୁଡ଼ ଗିଳେ / ମୁଗ ସାଥେ, ଫିଟିଯାଏ ମଟାଜ ଶିକୁଳ ।" (କବି ଉବାଚ– ଗୀତ ଗା' ନାରେ ପକ୍ଷୀ) ଏଇ ଅଭିଯୋଗର କୈଫିୟତ୍ ବ୍ୟଙ୍ଗାତ୍ମକ ଶୈଳୀରେ ଦେଇ କବି କହନ୍ତି—''ସୁଧୀ ଜନେ, ଅପାଣ୍ଡବା ରାଜ୍ୟକୁ ଏ ଆସିଅଛୁ ।/ ପାଠ ଘରେ ଶୂନ୍ ଚାଲି, ଶାଠ ଘରେ ହେ ଚୈ/ ଝୋଟଣିର ତାଳ । ଗୁରୁଘର ବିଦ୍ୟା କଛ ଜଣା ନାହିଁ ।" (କବିଉବାଚ) କବିତାର ପ୍ରତିଷ୍ଠା ପାଇଁ କେବଳ ପ୍ରତିଭା ନୁହେଁ, ସାଧନାର ସତତା ନୁହେଁ, ତା'ଠାରୁ ବଳି ଦରକାର ଆପଣାର କବିତାକୁ ଦଶଜଣଙ୍କ କାନରେ ଗେଞ୍ଜି ଦେବାର ବିଶେଷ କୌଶଳ । 'ନିଜେ ଭଲ, ନିଜ କବିତା ଭଲ'—ଏହିପରି ଗୋଟାଏ ଆଟୋପର ଅହଂକାର ଭିତରେ ବୁଡ଼ିରହିବାର ଫିସାଦକୁ ଶ୍ରୀ ଲେଙ୍କା ଦୂରୁ ନମସ୍କାର କରନ୍ତି । ଏ ଗୁରୁଘର ବିଦ୍ୟାପ୍ରତି କବିଙ୍କର ସମ୍ମତି ନାହିଁ, ନ ରହିବା ବି ଭଲ । କାରଣ ବିରାଟ କାଳର କପୋଳ ଦେଶରେ ସତ୍ୟର ମହୁଭୂଇଁ ଫୁଟେନି ଉଠେ । ସେଠି ଅକବିଙ୍କ କବି ହେବାର ପ୍ରୟାସ ଓ କବିଙ୍କ ମହାକବି ବା ବିଶ୍ୱକବି ହେବାର କପଟ ଚତୁରତା ବେଶୀ ଦିନ ତିଷ୍ଠି ପାରେ ନା । ବିଚାରି ଭବଭୂତିଙ୍କ କବିତା ତ ତାର ମୂକ ସାକ୍ଷୀ ! ନୈର୍ଗୁଣ୍ୟରେ ଜର୍ଜରିତ କବି ତେଣୁ ଭବିଷ୍ୟତକୁ ହାତ ବଢ଼େଇ ଜଣେ ସମାନଧର୍ମୀ ରସଗ୍ରାହୀ ମଣିଷର ଅପେକ୍ଷାରେ ଦଣ୍ଡାୟମାନ । କବି ଶ୍ରୀ ଲେଙ୍କାଙ୍କ କବିତାରେ ଅନୁରୂପ ଉଚ୍ଚାରଣ ଟିକିଏ ଭିନ୍ନ ସ୍ୱରରେ ପ୍ରତିଧ୍ୱନିତ ହୋଇଥିବାର ଦେଖାଯାଏ ।

"କାନ୍ତକବି ଗୁହାରୁଚି : ଲଭ ଉମ୍ବା ଥିଲେ ତଥ, ଅବା ଖିଲ୍ଲପାନ ।
ତା' ସାଥିରେ ଟିକେ ହସ,
ଛଳ ଛଳ ପଥରର କାଚ ଆଖି
ଢ଼ୋକେ ପିକ, ସନ୍ଧ୍ୟାର ଭୂମ ନୃତ୍ୟ
ଶୃଙ୍ଗ-ବୃନ୍ଦାବନ ।" ( କବି ଉବାଚ )

ଲଭଉମ୍ବା ଝିଅ ଯୋଗୀ ବନିବାର ଇଚ୍ଛାରୁ ତାଙ୍କ ଚେତନାର ଶୈଶବତା ସହଜ ଲକ୍ଷ୍ୟ । ଏହାକୁ କବି ତାଙ୍କର ନିପାରିଲା ପଣର ସାଲିସ୍ ବୋଲି ଭାବିନେଇ ବେଳେବେଳେ ଅସ୍ୱସ୍ତି ଅନୁଭବ କରନ୍ତି । କିନ୍ତୁ ଏପରି ମନେ କରିବାର କୌଣସି ଯଥାର୍ଥ୍ୟ ନାହିଁ । ହେଉ ପଛେ କବିତା ନିନ୍ଦିତ, ଅବହେଳିତ—ତଥାପି ସ୍ୱତ୍ୟଶୀଳ

ଦୃଷ୍ଟିକି ଶତଚେଷ୍ଟା ସତ୍ତ୍ୱେ ବି ଲୁଚି ପାରେ ନା । ଆପଣାର ମନ୍ତ୍ରମାରେ କାଳକ୍ରମେ ତାହା ଉଜ୍ଜ୍ୱଳ ଉଠେ । ତେଣୁ ସାମୟିକ ଭାବରେ କବିଙ୍କୁ ଅନ୍ଧାର ଘରେ ବନ୍ଦୀ ହେବାକୁ ପଡ଼େ । (୪) କିଛି ହୋଇ ନ ପାରିବାର ନିଦାରୁଣ ଯନ୍ତ୍ରଣାରେ ସନ୍ତୁଳିତ ହେବାକୁ ହୁଏ । କବି ପ୍ରାଣେ ପ୍ରାଣେ ଅନୁଭବ କରନ୍ତି : "ବର୍ତ୍ତମାନ ମୋ କଳା-ଦୁର୍ଗର ଭିତରକୁ/ କଅଁଳ ଆର୍ତ୍ତନାଦଙ୍କ ପ୍ରବେଶ ନାହିଁ ।" ଏତ କବିଙ୍କର ସ୍ଥିତ ପ୍ରଜ୍ଞତା । କବିତା ଓ କବିଙ୍କ ପକ୍ଷରେ ଏହା ନିଶ୍ଚିତ ଭାବେ ମଙ୍ଗଳକର ।

ଇଂରାଜୀ କବି ରବର୍ଟ ଲୋଏଲଙ୍କ କନ୍‌ଫେସନାଲ ଆଟିଚ୍ୟୁଡ୍‌ ଏକ ନିର୍ଦ୍ଦିଷ୍ଟ ଭାଷାରେ କମଳାକାନ୍ତଙ୍କ କବିତାରେ ସୁରକ୍ଷିତ । କବିତାରେ କଳାତ୍ମକ ଏବଂ ସୌନ୍ଦର୍ଯ୍ୟାତ୍ମକ ଅବଧାରଣା ପାଇଁ ସେ ଯେଉଁ କାବ୍ୟ କୌଶଳର ଆଶ୍ରୟ ନେଇଛନ୍ତି, ତାହା ସଂକ୍ଷିପ୍ତତା ଅଥଚ ଶାଣିତ ମୂଲ୍ୟବୋଧକୁ ବିଶ୍ୱାସ କରେ । ସ୍ନେହ ସୌହାର୍ଦ୍ଦ୍ୟରୁ ବଞ୍ଚିତ, ଚକ୍ରାନ୍ତପୂର୍ଣ୍ଣ ପରିସ୍ଥିତିରେ ପଡ଼ିଥିବା କବି ନିଃସଙ୍ଗ, ଅସନ୍ତୁଷ୍ଟ ଏବଂ ଉଗ୍ରବାଦୀ । ବ୍ୟକ୍ତିତ୍ୱ ତାଙ୍କର ନାନା ଝଡ଼ଝଞ୍ଜାରେ ବିପର୍ଯ୍ୟସ୍ତ । କରୁର ଷଡ଼ଯନ୍ତ୍ର ଭିତରେ ତାଙ୍କୁ ନିକ୍ଷେପ କରିବା ସଙ୍ଗେ ସଙ୍ଗେ କଳଙ୍କାର ଉପରକୁ ମାରି ଦେବାର କାନସାନ୍ଧ କବି କେବେ ବରଦାସ୍ତ କରି ନ ପାରେ । ଏହା ସ୍ରଷ୍ଟାର ବ୍ୟକ୍ତିତ୍ୱ ପ୍ରତି ଏକ ଚରମ ଅପମାନ । ତେଣୁ ଏହାର ପ୍ରତିଶୋଧ ନ ନେଇ କବିତାର ଭାଷାରେ କବି ନିଜର ମର୍ମାନ୍ତିକ ଯନ୍ତ୍ରଣାର ସ୍ୱର ଶୁଣାଏ । ସ୍ରଷ୍ଟା ପଛେ ରସାତଳକୁ ଯାଉ, କିନ୍ତୁ ସୃଷ୍ଟି ତାର ଚିରଞ୍ଜୀବୀ ହୋଇ ରହୁ—ଏହା ପ୍ରତ୍ୟେକ ସୃଷ୍ଟିଶୀଳ ମଣିଷର ଆନ୍ତରିକ କାମନା । କାରଣ ସୃଷ୍ଟି କବିଠାରୁ ବହୁ ଗୁଣରେ ବଡ଼ । ତେଣୁ ତାର କାବ୍ୟପୁରୁଷର ଅପମାନ କବିର ଅପମାନ ଏବଂ ତାହା ମୃତ୍ୟୁ ତୁଲ୍ୟ । ଶରୀର ଅସ୍ଥି ଅନ୍ତ୍ରସ୍ୱଣତା କମଳାକାନ୍ତଙ୍କୁ ଏପରି କ୍ଷୁବ୍ଧ କରିବାରେ ଦାୟୀ । ନିଜ ବ୍ୟକ୍ତିତ୍ୱର ଚମତ୍କାର ଅନୁଶୀଳନ କମଳାକାନ୍ତଙ୍କର ଏକ ବଡ଼ ବିଶେଷତ୍ୱ । ନିଜର ଭଲମନ୍ଦ, ସୁଖ ଦୁଃଖ, ଆଶା ନିରାଶା ସବୁକୁ ନିରପେକ୍ଷତାର ତରାଜୁରେ ତଉଲିବା ବେଳେ ବେଳେ କଷ୍ଟସାଧ୍ୟ ହୁଏ ସାଧାରଣ ମଣିଷ ପକ୍ଷରେ । କବି କିନ୍ତୁ ଅସାଧାରଣ । ଭଲକୁ ଯେପରି ସେ ବିଶ୍ଳେଷଣ କରେ, ମନ୍ଦକୁ ମଧ୍ୟ ସେହିପରି ନିଷ୍ଠାପର ଭାବରେ ପ୍ରକାଶ କରିବାକୁ ଦ୍ୱିଧା ରଖେ ନା । ରବର୍ଟ ଲୋଏଲ୍‌ଙ୍କ ଆତ୍ମସ୍ୱୀକାରୋକ୍ତିର ବିଶିଷ୍ଟ କାବ୍ୟଗ୍ରନ୍ଥ 'Life Studies' ପରି କମଳାକାନ୍ତ ଜୀବନର ଟିକିନିଖି ବର୍ଣ୍ଣନା ଭିତର ଦେଇ ଆତ୍ମପରିଚୟ ପ୍ରଦାନର ପକ୍ଷପାତୀ ନୁହନ୍ତି । ସେ କବିତାରେ ଯଥା ସମ୍ଭବ ସ୍ୱଳ୍ପବାକ୍, ଅଥଚ ବହୁ କଥାର

୪ । 'ମୁଁ ମୋ ଭିତରେ ବନ୍ଦୀ /ଅନ୍ଧାରର ଚଟ୍ଟେଇ ।' ( ମୁଁ "ମୋ ଭିତରେ—ଦୁଃଖ ସଙ୍ଗେ କଥାବାର୍ତ୍ତା ) ।

ବର୍ତ୍ତିଲ ଉଚ୍ଛ୍ୱାସ ମଧ୍ୟରେ ତାଙ୍କ କବିତା ଅଭିବ୍ୟକ୍ତିତ । ତେଣୁ ଏହି ଶ୍ରେଣୀର କବିତା କଳା ଦୃଷ୍ଟିରୁ ଉଚ୍ଚ ସଫଳତାର ଦାବୀ ରଖେ । ଗୋଟାଏ କବିତାର କିୟଦଂଶକୁ ଏଇ ପରିପ୍ରେକ୍ଷିତରେ ଉଲ୍ଲେଖ କରାଯାଇପାରେ । "ସାବାସ୍ ସାବାସ୍ କବି । ଅଣ୍ଟୁଏ ପାଣିରେ /ବୁଡ଼ିମର । ଶାମୁକାଏ ଦୁଃଖର ହୃଦରେ/ ସ୍ୱପ୍ନ ତୋର ଶବ । କେତେଯା କେଡ଼େ ବୁଡ଼ା/ ହସୁଥାଉ । ଚୁପ୍‌ଚାପ୍ ବସିଥାଉ ମନ୍ଦିର ପିଠରେ ।" (କବି ଉବାଚ) କବି ଏସବୁ ପ୍ରତିକୂଳ ମନ୍ତବ୍ୟରେ ଅଭ୍ୟସ୍ତ । ହୁଏତ ଯେବେଠୁଁ ଲେଖନୀରେ ତାର ଭାଷାକୁ ରୂପ ଦେଲା, ସେବେଠୁ ଏପରି ଅଭିଯୋଗ ଶୁଣିବାକୁ ସେ ନିଜକୁ ପ୍ରସ୍ତୁତ କରିଛି । ଏଥିରେ କବିର ଅନ୍ତର ଦର୍ପଣ କିଛି କ୍ଷତ ହୁଏ ନାହିଁ । ନିନ୍ଦା ସ୍ତୁତି ପ୍ରଶଂସା ତା' ଦୃଷ୍ଟିରେ ତୁଲ୍ୟ ମୂଲ୍ୟ । ଆତ୍ମ ସମାହିତ ଯୋଗୀପରି ସେ କହେ, "ଜଳୁଥିବି ସରେ ନା । ମରୁଥିବି ଡରେ ନା । /ହଜେ ନା ଚେତା । ଅମରମଣ୍ଡ ମଣିଷ ମନ । /ବାଉଳା କବି ଗୁଲ୍ଲି ହାର । ଛନ୍ଦ ଗୀତ ।" କବି ଯେଉଁଠି ଥିଲେ ବି କବି । ଖେତରେ ବା ଖାତରେ, ସହରରେ ବା ମଫସଲରେ, ଆସରରେ, ବା ଶାସନରେ କ୍ଷେତ୍ରରେ ବା ଯୋଗରେ, ହରିଜାଠରେ ବା ହରଲୁଣ୍ଠରେ, ସିଂହଦ୍ୱାରେ ବା ସର୍ଗ ଦ୍ୱାରରେ, ଅଭାବରେ, ସ୍ୱଭାବରେ, ଲୋଭରେ କ୍ଷୋଭରେ—ସବୁଠି ସେ କବି । ସେ ଈଶ୍ୱରଙ୍କ ଯାଆଁଳା ଶତ୍ରୁ; ଅର୍ଥାତ୍ ସେ ବି ଈଶ୍ୱରଙ୍କ ପରି ସ୍ରଷ୍ଟା ପୁଣି ନିଜ ସ୍ୱପକ୍ଷରେ ସେ ନିଜେହିଁ ପ୍ରଥମ ଲଢ଼ୁଆ ମଣିଷ (*) କବି ଶ୍ରୀ ଲେଙ୍କା ତାଙ୍କର ପ୍ରାଥମିକ କାବ୍ୟ ରଚନାରେ (ସୁନା ଫସଲ, ପ୍ରୀତି ଓ ସ୍ତୁତି) ରେ ଏଭଳି ଭାବଗମ୍ଭୀର କାବ୍ୟାଲେଖର ସନ୍ଧାନ ଦେଇ ପାରିନାହାନ୍ତି । 'ଉତ୍ତରଣ'ଠାରୁ କବି ଏଥିପ୍ରତି ସଚେତନ । "ବର୍ତ୍ତମାନ ସମସ୍ତଙ୍କର ଉପସ୍ଥିତି । /ଓ ମୋର ବିଜୟ ପ୍ରସ୍ଥାନ ? /ଚନ୍ଦ୍ରବାଲର ମନ୍ଦିର ଅନ୍ୱେଷଣରେ /ମୁଁ ଏକ ସମୁଦ୍ରର ବ୍ୟାକୁଳ ପ୍ରତୀକ୍ଷା; ପ୍ରାଚୀନତାର ଆସ୍ୱାଦରେ /ଅଙ୍କିତ ନୂତନତାର ସ୍ୱାକ୍ଷର ମୁଁ !! ।" (ଉତ୍ତରଣ—ପୃ. ୭) । ବର୍ତ୍ତମାନ ଶତାବ୍ଦୀର ବନ୍ଧ୍ୟତାର ପ୍ରୟୋଗରେ ବର୍ତ୍ତମାନ ସମାଜ ଓ ଜୀବନର ଦୋଷ ତ୍ରୁଟି ପ୍ରତି ସେ ବେଶ୍ ସଜାଗ । ଏକ ଅପ୍ରକାଶ୍ୟ ଯୋଜନାର ପୂର୍ଣ୍ଣତା ଭିତରେ ନିହିତ କବି ହୃଦୟର ବ୍ୟଥା । ମାତ୍ର ଏ ବ୍ୟଥା କଳାକାର ସୁଲଭ । ତେଣୁ ସ୍ୱର୍ଣ୍ଣପରି ପ୍ରଚଣ୍ଡ ଦ୍ୟୁତିମାନ୍ ହୋଇ ସବୁ ବ୍ୟଥା ବେଦନାକୁ ଆଡ଼େଇ ଦେଇ ଜଳିବାର ଉଜ୍ଜ୍ୱଳ ଅଭୀପ୍ସା ଏହି ଗ୍ରନ୍ଥରେ ପ୍ରତିଫଳିତ । ଯଦିଓ ଏ ଗ୍ରନ୍ଥ, ଗୋଟାଏ ପରୀକ୍ଷା ନିରୀକ୍ଷା ଭିତର ଦେଇ ଗତିଶୀଳ, ତଥାପି ଏହା ଅନେକାଂଶରେ ସ୍ଲୋଗାନଧର୍ମୀ । ତେଣୁ ସେଇ, ଆହ୍ୱାନ ଭିତରୁ କାବ୍ୟପୁରୁଷର ପରିଚୟ ପାଇବା କଷ୍ଟକର ହୁଏ ନାହିଁ । ବ୍ୟକ୍ତିର ଆବେଗର ପ୍ରତୀକାତ୍ମକ ପ୍ରୟୋଗ ହେତୁ ସାଧାରଣ କବିତାରୁ

---

* । "ଯେଉଁଠି ଥାଏ କବି"—'ଉନ୍ମୋଚନ' ।

ଏହାର ମୂଲ୍ୟ ଅଧିକ । କବି ଯେଉଁ ଆତ୍ମପରିଚୟ ଓ ଆତ୍ମସ୍ୱୀକାରୋକ୍ତିର ବାତାବରଣ ତାଙ୍କ କାବ୍ୟକବିତାରେ ସୃଷ୍ଟି କରିଛନ୍ତି, ଏହା ସବୁବେଳେ ଉତ୍ତରଣ ପ୍ରୟାସୀ । 'ଉତ୍ତରଣ'ର କେତୋଟି ଲାଇନ୍ ଓ 'ଦୁଃଖ ସହ କଥାବାର୍ତ୍ତା'ର ପଦଟିଏ ବିଚାର କଲେ ଏହାର ସତ୍ୟତା ଜାଣି ହେବ । 'ଉତ୍ତରଣ'ରେ କବି କହୁଛନ୍ତି—

"ମୋର ଶବ୍ଦ, ବର୍ଣ୍ଣ, ଗନ୍ଧ ଓ ସ୍ପର୍ଶର ଘରକାରେ
ବୋଷମ୍ୟକୁ ଢ଼ଂସାର ତରବାରୀ"
'ପିଙ୍ଗଳ ମାଟିର କଟିରେ ମୋ ଦୁଃଖର ତୁଷାର ମେଖଳା' ।

'ଉତ୍ତରଣ'ରେ ସମ୍ଭବ ମାଟିର ଗନ୍ଧ ବୈସ୍ୱୟିକ ହୋଇଯାଇଛି 'ଦୁଃଖସହ କଥାବାର୍ତ୍ତା' ବେଳକୁ ? "ମୁଁ ମୋ ଭିତରେ ପ୍ରଚ୍ଛଦସ୍ୱାନ/ ସଦ୍ୟ ପ୍ରକାଶିତ ଗୋଟେ ଜୀବନ ଚରିତ ।" (ମୁଁ ମୋ ଭିତରେ) । ପ୍ରଥମ ଗ୍ରନ୍ଥ ଅପେକ୍ଷା ଦ୍ୱିତୀୟ ଗ୍ରନ୍ଥର ଆବେଗ କେତେ ଶକ୍ତିଶାଳୀ ଓ ଅର୍ଥପ୍ରଦ ତାହା ପରିଷ୍କାର ଭାବେ ବୁଝି ହୋଇଯାଏ । ଏତେ ବାକ୍ ବାହୁଲ୍ୟ ଭିତରେ 'ଏମିତି ହୋଇଛି,' 'ସେମିତି ହୋଇ ନାହିଁ' ବା 'ଏପରି ହେବା ଉଚିତ'—ଏସବୁ କଥା କହିବାର ବିଶେଷ ଆବଶ୍ୟକତା ନାହିଁ ଏ ଯୁଗରେ /ପଦେ କଥାରେ ସୃଷ୍ଟି ପ୍ରଳୟ । ଆଧୁନିକ କାବ୍ୟଜିଜ୍ଞାସାର ଏହାହିଁ ତ ଅସଲ ସୁବିକାଠି । 'ପ୍ରଚ୍ଛଦସ୍ୱାନ ସଦ୍ୟ ପ୍ରକାଶିତ' ଗ୍ରନ୍ଥପରି କବିର ଜୀବନ କେତେ ସୁସ୍ପଷ୍ଟ ଏବଂ ଛଳନାସ୍ୱାନ ତାହା ଅନୁମାନ କରିବା ଆଦୌ କଷ୍ଟସାଧ୍ୟ ନୁହେଁ । ଆତ୍ମପରିଚୟ ଏଠାରେ କେତେ ସଂକ୍ଷିପ୍ତ, ଅଥଚ ଅର୍ଥବହ ! ଶ୍ରୀ ଲେଙ୍କାଙ୍କ କବିତାର ଆଲୋଚକ ଶ୍ରୀ ବସନ୍ତକୁମାର ପଣ୍ଡା କହନ୍ତି, "ଆତ୍ମପରିଚୟ ଓ ଆତ୍ମସ୍ୱୀକାର ଶ୍ରୀ ଲେଙ୍କାଙ୍କର ଅନ୍ୟ ଏକ ମୁଖ୍ୟ କାବ୍ୟସ୍ୱର । ସମ୍ପୂର୍ଣ୍ଣ ନିର୍ଲିପ୍ତ ଓ ନିର୍ବିକାର ଭାବେ ମୋହମୁକ୍ତ ହୋଇ ଜୀବନର ନିଷ୍ଠୁର ନିମମତାକୁ ଗ୍ରହଣ କରିବା ଓ ସେ ହୃଦୟଯୋଗ୍ୟତାକୁ ଯଥାର୍ଥ ଭାବେ ସ୍ୱୀକାର କରିବାରେ ଶ୍ରୀ ଲେଙ୍କା ଆଦୌ ବିମୁଖ ନୁହନ୍ତି । ମୋର ମନେହୁଏ, ଇନ୍ଦ୍ରିୟାନୁଭୂତ ବା ଭୂଲପରସଙ୍ଗଧର ଆକ୍ତତାକୁ ଜବଙ୍କର ଏବଂ ଏଇ ମୋହମୁକ୍ତ ଚେତନାଟି ଆତ୍ମପ୍ରକାଶ କରୁଛି ଓ କ୍ଷୋଭସର୍ବସ୍ୱ ମଣିଷର ଅସହାୟତାର ନଷ୍ଟେଇକୁ ମୁକ୍ତିର ମୁକ୍ତା ଖୋଲି ଖୋଲି ଯାଉଛି ।" (୭) ଶ୍ରୀ ପଣ୍ଡାଙ୍କ ମନ୍ତବ୍ୟ ଯୁକ୍ତିଯୁକ୍ତ ଏବଂ ତାହା କମଳାକାନ୍ତଙ୍କ କାବ୍ୟକୃତିର ଦୃକ୍ଶୃତ ଦିଗଗୁଡ଼ିକୁ ଚିହ୍ନିତ କରିବାରେ ସହାୟକ । ସତ୍ୟ ମଣିଷକୁ ଅପେକ୍ଷା କରେ ନାହିଁ । ମଣିଷ ସତ୍ୟର ପରୀକ୍ଷା ନେବାକୁ କିନ୍ତୁ ଆଗ୍ରହୀ । କବି ଶ୍ରୀ ଲେଙ୍କାଙ୍କର 'ମୋ ମା' ଗୁଡ' କବିତାର ଏହାର ମହତ୍ତ୍ୱ

୭ । ପଣ୍ଡା, ବସନ୍ତକୁମାର—'କମଳାକାନ୍ତଙ୍କ କାବ୍ୟ ଚେତନାର ଅନ୍ତଃସ୍ୱର'—'ନବଲିପି'– ମାର୍ଚ୍ଚ, ୧୯୮୬ ।

ପ୍ରକଟିତ । ଏଥିରେ କବି ହୃଦୟର ସ୍ୱତଃ ସ୍ଫୂର୍ତ୍ତ ଆବେଗ ବେଦନାଦାୟକ ଅନୁଭୂତିରୁ ଜନ୍ମଲାଭ କରିଛି । ଜୀବନର ପାରୁଶ୍ୟ ଏଥିରେ ଅତି ଚମତ୍କାର ଭାବେ ଫୁଟି ଉଠିଛି । ମାଆର ମୃତ୍ୟୁରେ କବିଙ୍କ ଧୈର୍ଯ୍ୟର ବାନ୍ଧବନ୍ଧ ଭୁଶୁଡ଼ି ପଡ଼ିଛି । କାରୁଣ୍ୟର ଦ୍ୱାର ଉନ୍ମୁକ୍ତ ହୋଇ ଯାଇଛି । ନିଜକୁ ଶବ୍ଦଘାତ କରି ଆଶ୍ୱସ୍ତ ହେବାକୁ ଚାହିଁଛନ୍ତି ସେ । ଜନ୍ମଜନ୍ମ ମାଆକୁ ପେଟରେ ମାରିବା ଓ ପିଠିରେ ମାରିବା କଥା କହିଲା ବେଳେ କବି କଣ୍ଠ ବାଷ୍ପରୁଦ୍ଧ, ଚକ୍ଷୁ ଅଶ୍ରୁସଜଳ । ମାତୃ ଗର୍ଭରେ ଗୋଡ଼ ହାତ ଛାଟି ମାଆକୁ କଷ୍ଟ ଦେବାଠୁଁ ପେଟରେ ମାରିବା, ପୁଣି ପୃଥ୍ୱୀରେ ପାଦ ଦେଲା ପରେ ମାଆ ନିକଟରେ ଯାବତୀୟ ଅଳି ଅର୍ଦ୍ଦଳି କରି ବ୍ୟସ୍ତ କରିବା ପିଠିରେ ମାରିବା ସଙ୍ଗେ ସମାନ ।

"ମାଆ ଲୋ ! ମୁଁ ତୋଅର ତ ପିଲେକ୍ଷୁ ପେଟା ପିଲା !
ଯେ ପେଟରେ ମାରିଥିଲି ପିଠିରେ ବି ମାରିବାକୁ ଥିଲି ॥
ଏଇକ୍ଷଣି ସଞ୍ଜବେଳେ କାନ୍ଦ କାନ୍ଦ ଲାଗେ । ଓ
ଖରି ଇଚ୍ଛା ହୁଏ ତୋର ମାଟିର ଦେହକୁ ଘାଣ୍ଟି
ଅଣ୍ଡାଳନ୍ତି ପିଲା ଭଳି ତୋଅର ଶୁଖିଲା ଥନ ।" (ମୋ ମା' ଗ୍ରନ୍ଥ)

ଆତ୍ମବ୍ୟଙ୍ଗର ଏକ ସ୍ୱତନ୍ତ୍ର ଇଲାକାକୁ ଚାଲିଯାଇଛନ୍ତି କବି । କବିଙ୍କର ପରିଚୟ ଏଠି ଯେ କୌଣସି ବେଦନାବିଧୂର ମଣିଷର ପରିଚୟ । କବିଙ୍କର ବାଥାହତ ଜୀବନର ଏଇ ରାଗିଣୀ ପ୍ରତ୍ୟେକ ଦୁଃଖୀ ମଣିଷର ହୃଦୟରେ ଅନୁରଣିତ । କବିଙ୍କ ବ୍ୟକ୍ତିକ ଦୁଃଖ ଭିତରୁ କବିତା ଆପଣାଛାଏଁ ଉଭୁରି ଆସିଛି । ଏଠି ନାହିଁ କୌଣସି ପ୍ରକାର ଆଡ଼ମ୍ବର ବା ଶବ୍ଦମାନଙ୍କର ଟଣା ଓଟରାର ଭିଡ଼ । ପ୍ରତିଟି ଶବ୍ଦ ରସ, ବାସ ଏବଂ ଆତ୍ମାର ସ୍ପନ୍ଦନ ଖାଦ୍ୟ ପ୍ରାଣ । ଜୀବନର ପାରୁଶ୍ୟ କବିର ସୌନ୍ଦର୍ଯ୍ୟଶୀଳ ଦୃଷ୍ଟି ନିକଟରେ ଅପୂର୍ବ ମାଧୁରୀମାରେ ଝଟକି ଉଠିଛି । ଦୁଇଟି-ଯାକ ଅନୁଭୂତି ଏକାନ୍ତ ବାସ୍ତବ ଏବଂ କବିଙ୍କ ସହିତ ତାହାର ଅନ୍ତରଙ୍ଗତା ନିବିଡ଼ । ଜୀବନର ସବୁ ଲୁପ୍ତ ସମ୍ଭାବନା ଶୀର୍ଣ୍ଣଧର୍ଷିତ । ସମସ୍ତ ଆଦର୍ଶ ପ୍ରବଞ୍ଚିତ । ମଣିଷର ମାନବୀୟ ପ୍ରକୃତି ଜୁଗୁପ୍‌ସା ଭିତର ଦେଇ କେତେକାଳ ଯା ତିଷ୍ଠି ପାରିବ ? ତେଣୁ ଅନ୍ୟର ସ୍ନେହରୁ ବଞ୍ଚିତ ହେଲେ ମଣିଷ ସନ୍ତାପକୁ ଆପଣାର କରେ । ଅନ୍ତତଃ ଭାରତୀୟ ସଂସ୍କୃତିରେ ଏପରି ଆଶା କରିବାର ଯଥେଷ୍ଟ କାରଣ ରହିଛି । ପାଶ୍ଚାତ୍ୟ ସଂସ୍କୃତିରେ ମୃତ୍ୟୁ ଅତି ଆବଶ୍ୟକୀୟ ଘାମାଣ୍ଡ । କିନ୍ତୁ ଆମ ସଂସ୍କୃତିରେ ଏହା ହତାଶ ମଣିଷର ପାଥେୟ । ଭୁଲରେ ତାହା ମଣିଷକୁ ଠକାଏ ନା । କାବ୍ୟନାୟକ ଭାଷାରେ —

“ଏଇତ ଫେରୁଛି ମୁଁ ଶକୁନ ବାଲ୍ଲି ସପ୍ତପୀ ମେଳରୁ ।
ଓ ସେଣ୍ଟବ୍ରିଜିଡ଼ ପିନ୍ ପିଇ ଓଠ ମୋର ସନ୍ତ୍ରସ୍ତ କଲା ।
ଧନ୍ୟ ମୁଁ ତୁମର ସ୍ତୋତ୍ର କୋମଳ ଲୁହରେ ଧୋଇ
ଆପଣାକୁ ଉତ୍ସାହିତ ଗୁରୁବାର ଓଷ ର ପ୍ରାର୍ଥନା !”

ରବର୍ଟ ଲୋଏଲ୍ ତାଙ୍କ ପିତାଙ୍କ ମୃତ୍ୟୁରେ ଯେଉଁ କବିତା ଲେଖିଛନ୍ତି ତାହା କମଳାକାନ୍ତୀୟ କାବ୍ୟପରମ୍ପରାକୁ ସ୍ପର୍ଶ କରି ପାରି ନାହିଁ କହିଲେ ଚଳେ । ଲୋଏଲଙ୍କ ଭାଷାରେ—

“Fathres death was abrupt and unprotesting,
His vision was still twenty-twenty,
After a morning of anxious, repetitive smiling,
his last words to mother were
‘I feel awfal.” (୭)

କମଳାକାନ୍ତଙ୍କ ନାଟକୀୟ ପ୍ରକାଶଭଙ୍ଗୀ ଓ ସଂଳାପ ତାଙ୍କ ସୁଖଦୁଃଖର ଆବର୍ତ୍ତ ଭିତରେ ଯେପରି ପ୍ରାଣର କରୁଣ ଆନ୍ଦୋଳନ ସୃଷ୍ଟି କରେ, ଲୋଏଲଙ୍କ କବିତା ସେ ଗୌରବରୁ ବଞ୍ଚିତ । ଶ୍ରୀ ହୁମାୟୁନ କବୀରଙ୍କ ଭାଷାରେ—“The poet's preoccupation with self' and the other 'self' acting and reacting upon eachother in a particular setup or at a particular point of time are not infrequent,” (୮)

‘ସନ୍ନ୍ୟାସ’ କବିତାର ସାଙ୍କେତିକ ମନ୍ତବ୍ୟରୁ ଏହାର ପ୍ରମାଣ ମିଳିପାରିବ । ‘ପିଇ ଯାଅ ଦେଶୀ ବା ବିଦେଶୀ ସୁରା /ଟେଣି ପାଣି ଚକ୍ରର ହାଡ଼କୁ ।/ କି ଘର କି ଦ୍ୱାର/ କି ଦୂଅ ହିଁ ଥିବ ସଂସାର ।/ କଳ ପରି ସ୍ନେହପଡ଼ ନାଏ ଅଛ ?/ ଦୁଃଖ ଏବଂ ସୁଖର ଉର୍ଦ୍ଧ୍ୱରେ ।” ଶକ୍ତିଶାଳୀ ଅଥଚ ସଂଯମ ବଳିତ ଆବେଗ କବିଙ୍କର । ‘ନିତ୍ୟନୂତନ’ ର ପ୍ରଥମ କବିତାରେ ଏକ ସ୍ୱତନ୍ତ୍ର ଦାର୍ଶନିକ ମନୋଭାବ ସଂଯନ୍ତ । ଯେଉଁମାନେ ଅନ୍ୟଙ୍କୁ ଭଲ ହେବାକୁ ଉପଦେଶ ଦିଅନ୍ତି, ସେମାନେ ହେଲେ

---

୭ । Lowell, Robert --Life studies, Farrar Straus and Cudahy·

୮ । Kabir, Humayun -What I Look Like—Introduction—P. IX 1960.

'ମୁଁ' ଟି ନେଇ କମଳାକାନ୍ତ । ଆପଣାର ମନରେ ପରସ୍ପରଛିନ୍ନ ଘଟଣାସମୂହ ତେଣୁ ଏହା 'ମୁଁ'କୁ କେନ୍ଦ୍ର କରି ଆବର୍ତ୍ତିତ । କବି ନିଜେ ଏହି ଦ୍ୱନ୍ଦ୍ୱର ସମାଧାନ ସୂତ୍ର ତାଙ୍କ କବି-ତାରେ ଥୋଇ ଦେଇଛନ୍ତି । "ମୁଁ ତେବେ କାହାର ? ମୁଁ ନିଜର । ଏକାନ୍ତ ନିଜର ।" (ନିଜ ସପକ୍ଷରେ) 'ମୁଁ' କବିତାରେ ମଧ୍ୟ ଏହି ଭାବ ସବେଗର ପରିଚୟ ମିଳିଥାଏ । ଜନ୍ମ-ଜରା-ବ୍ୟାଧିର ଏକ ବିରାଟ ବୃତ୍ତ ଭିତରେ ଯେଉଁ 'ମୁଁ' ଟି କେନ୍ଦ୍ର ସ୍ଥଳରେ ବିରାଜିତ,—"ମୁଁ : ଏକ ବୃତ୍ତ । /ଏବଂ ତାର କେନ୍ଦ୍ର, ଉର୍ଦ୍ଧ୍ୱମୁଖ ପ୍ରାଣ : ପରିଧି ? ଜନ୍ମ, ଜରା, ବ୍ୟାଧି ।" ( ସ୍ରୋତର ନାମ ରୁତ ) । କବିଙ୍କର ସେଇ 'ମୁଁ' କେତେବେଳେ ସୀମାହୀନ ଆକାଶ ପରି ଦିଗନ୍ତ ବିସ୍ତାରିତ କେତେବେଳେ ତାହା କ୍ଷୀଣସ୍ରୋତା ନଦୀ ପରି । କେତେବେଳେ 'ମୁଁ' ଟି କ୍ରୋଧାନ୍ଧ, ପୁଣି କେତେବେଳେ ତାହା କରୁଣାର ନିର୍ଝର । ଖଣ୍ଡିତ ସମୟର ବ୍ୟବଚ୍ଛିନ୍ନ ମୁହୂର୍ତ୍ତକୁ ନେଇ 'ମୁଁ' ତାର ଅସ୍ତିତ୍ୱ ଜାହିର କରେ । ମଣିଷର ବ୍ୟକ୍ତିତ୍ୱ ତାହାଦ୍ୱାରା ମଧ୍ୟ ଖଣ୍ଡିତ ହୋଇଥାଏ । କମଳାକାନ୍ତଙ୍କ 'ମୁଁ' ର ଭୂମିକା ବିଭିନ୍ନ ସମୟର ଦର୍ଶନ ତତ୍ତ୍ୱକୁ ନେଇ ଗତିଶୀଳ । ଡେକାର୍ଟେଙ୍କଠାରୁ ଆରମ୍ଭ କରି ଫ୍ରଏଡ୍ ଏବଂ ସାର୍ତ୍ରେଙ୍କ ପର୍ଯ୍ୟନ୍ତ 'ମୁଁ ତ୍ୱ'ର ବିଶ୍ଳେଷଣକୁ ସେ ବିଭିନ୍ନ ପରିପ୍ରେକ୍ଷୀରେ ଗ୍ରହଣ କରିଛନ୍ତି । ଡେକାର୍ଟେଙ୍କ ପରି ସେ କେତେବେଳେ କହି ଦିଅନ୍ତି—"ମୁଁ ଚିନ୍ତା କରେ, ତେଣୁ ମୁଁ ଅଛି" (I think, .there fore Iam.) କଜିଟୋ ଆର୍‌ଗୋସମ୍ (Cogito, ergosum) ର ଏହି ସୂତ୍ର ଏକ ପାଠିକ । ମଣିଷ ଯେତେବେଳେ ଚିନ୍ତା କରେ ନାହିଁ ସେତେବେଳେ ବି ତାର ଅସ୍ତିତ୍ୱ ଥାଏ । ଡେକାର୍ଟେ ଏକଥା ଅନୁମାନ କରିପାରି ନ ଥିଲେ । କବି କମଳାକାନ୍ତ ଜନ୍ମ-ଜରା ବ୍ୟାଧି ଭିତରେ 'ମୁଁ'ର ଯେଉଁ ପରିସୀମା ଦେଇଛନ୍ତି, ତାହା ସୀମିତ । କାରଣ ଧର୍ମଶାସ୍ତ୍ର ମତରେ, ଏହି 'ମୁଁ' ଟି ଜନ୍ମ ଜନ୍ମାନ୍ତର ଧରି ମଣିଷ ସାଙ୍ଗରେ ରହିଥାଏ । ଇହଲୋକ ଓ ପରଲୋକର ବିଚିତ୍ର ଜଗତରେ ବି ତାର ସ୍ଥିତି ସ୍ୱୀକୃତ ହୋଇ ସାରିଛି । ବାସ୍ତବ ଜଗତରେ ଯେଉଁ 'ମୁଁ' କୁ ଆମେ ପ୍ରତି ମୁହୂର୍ତ୍ତରେ ସାକ୍ଷାତ କରୁ ତାହା ମଧ୍ୟ 'ମୁଁ'ର ପୂର୍ଣ୍ଣାବୟବ ନୁହେଁ । ଆକାଶର ଜହ୍ନ ଭଳି ତାହା ଗୋଟାଏ ପାଖରେ ଆଲୋକିତ ଓ ଅନ୍ୟ ପାଖଟା ଅନ୍ଧାର । କବି କମଳାକାନ୍ତ ତେଣୁ 'ମୁଁ' କୁ ସାଙ୍ଗରେ ଧରି ବହୁରୂପୀ ସାଜିଛନ୍ତି । 'କେଶ' କବିତାରେ ତାଙ୍କର 'ମୁଁ'ଟି ଫ୍ରଏଡୀୟ ଯୌନତତ୍ତ୍ୱିକ 'ଅହଂ' ସହ ସଞ୍ଚରଣଶୀଳ ।

"ମୋ ଲାଜକୁଳୀ ଇଚ୍ଛା ମୋର । ତୁମର କାକଳୀ କଳନା
ମୁଁ ହୁଏ ଯୁଗ ଯୁଗ ସାଧନାର ଅନୁରାଗୀ ହଂସ ।
ତୁମେ ସେ ମର୍ମରିତ ଝାଉଁର ଜଙ୍ଗଲେ
ମୁଁ ହୁଏ ପବନର ଲୋଳ ଲୋଳ ଲହରୀର ହଂସ ।"

( ସୁବର୍ଣ୍ଣ-କସ୍ତୁରୀ )

ମଣିଷର ପୁଣ୍ୟବୋଧ ଓ ପାପବୋଧ ଏଇ 'ମୁଁ' କୁ କେନ୍ଦ୍ର କରି ଗଢ଼ି ଉଠିଛି । ଅନ୍ୟମାନଙ୍କର ଉପସ୍ଥିତି ହେତୁ ଆମର ପାପବୋଧର ସୃଷ୍ଟି । ଆଦାମ୍ ବା ଇଭ୍ ମଧ୍ୟରୁ କେହି ଜଣେ ଥିଲେ ଲଜ୍ଜା ବା ପାପବୋଧ ସୃଷ୍ଟି ହୋଇ ପାରି ନ ଥାନ୍ତା । ଜଣକର ଆଖିରେ ଅନ୍ୟର ଉପସ୍ଥିତି ଏହି ଭାବର ଉଦ୍‌ବୋଧନ କରିଥାଏ । ସାର୍ତ୍ରେ, ଏକଥା ତାଙ୍କର ପ୍ରସିଦ୍ଧ ଗ୍ରନ୍ଥ, 'ବିଇଙ୍ଗ୍ ଆଣ୍ଡ ନଥିଙ୍ଗ୍‌ନେସ୍‌ରେ' ବିସ୍ତୃତ ଭାବରେ ପ୍ରତିପାଦନ କରିଛନ୍ତି । 'ମୁଁ'ର ଇଚ୍ଛା ଦୁରନ୍ତ । ହେଲେ ତାହା ସମୟର କବ୍‌ଜାରେ ବନ୍ଦୀ ।

କବିଙ୍କର ଜୀବନଦର୍ଶନହିଁ କାବ୍ୟଦର୍ଶନ । ତାଙ୍କର କବିତାଇଁ ଗୁପ୍ତ, ଲୁପ୍ତ ଓ ପ୍ରକାଶିତ ଜୀବନର ଇତିହାସ । କବିତାର ଗତିଶୀଳତା ପାଇଁ ଏହା ନିତାନ୍ତ ଆବଶ୍ୟକ । ଭାବନାର ବିନ୍ଦୁଟି ଯେଉଁଠି, ଯେଉଁ ମୁହୂର୍ତ୍ତରେ ସ୍ଥିର ହୋଇଯାଏ, ସେଇ ମୁହୂର୍ତ୍ତରେ କବିର ଜୀବନଦର୍ଶନ ଆପଣାଛାଏଁ ଗଢ଼ି ହୋଇଯାଏ । ପରମୁହୂର୍ତ୍ତରେ ଅନ୍ୟ ଏକ ପରିବେଶ ବା ପରିସ୍ଥିତି ଆସିଲେ ପୂର୍ବର ଜୀବନଦର୍ଶନ ଯେ ଅର୍ଥହୀନ ହୋଇଯାଏ, ଏପରି ନୁହେଁ । କାରଣ କବିର ଚଲାବାଟର ପ୍ରତ୍ୟେକଟି ବିନ୍ଦୁ ସମପରିମାଣରେ ଗୁରୁତ୍ୱ ବହନ କରେ । କେବଳ ଏଇଥିପାଇଁ କବିର ଆତ୍ମସ୍ୱୀକାରୋକ୍ତି ଓ ଆତ୍ମପରିଚୟର ସ୍ୱର ଓ ସ୍ୱାକ୍ଷର ଭିନ୍ନ ହୋଇ ଉଠେ । ଜୀବନକୁ ଖୋଜୁଥିବା ମଣିଷ କବିଙ୍କର କେନ୍ଦ୍ରବିନ୍ଦୁକୁ ମୁହୁର୍ମୁହୁ ଆଘାତ କରେ ଓ କବି ସେଇଠି ଅନୁଭବେ—ସେ ବଞ୍ଚି ମଧ୍ୟ ବଞ୍ଚି ନାହିଁ । ନିଃଶ୍ୱାସ ପ୍ରଶ୍ୱାସର ନିରବଚ୍ଛିନ୍ନତା ଭିତରେ ବି ବଞ୍ଚିବାର ଖୋରାକର ଅଭାବ ପଡ଼େ । ଖାଲି ପରି ବଞ୍ଚିବା ତାଙ୍କ ଜୀବନର ଲକ୍ଷ୍ୟ ନୁହେଁ । ସତ୍ୟ ଭାବେ ବଞ୍ଚିବା, ସତ୍ୟ ଅସତ୍ୟର ବିଭଜନ ରେଖାକୁ ଠିକ୍ ଭାବେ ଜାଣିବା ଚିହ୍ନିବା ତାଙ୍କର ଜୀବନାଦର୍ଶ, କାବ୍ୟାଦର୍ଶ ମଧ୍ୟ । ନିର୍ବିଷ୍ଟରରେ ସବୁ କିଛି 'ହଁ ଜୀ ହଁ ଜୀ' ଭିତରେ ଲୁଚାଇ ଦେବାକୁ ସେ ଆଦୌ ପସନ୍ଦ କରନ୍ତି ନାହିଁ । କାରଣ କବିଙ୍କର ବ୍ୟକ୍ତିଗତ ମର୍ଜିଟାର ଇଚ୍ଛାନୁରୂପ । ସେ ଦୁର୍ବଳସ୍ଥଳକୁ ଛୁଇଁବା ହୁଏତ ସାଧାରଣ ମଣିଷ ପକ୍ଷରେ ଅସମ୍ଭବ । ତେଣୁ କବିର ଅନୁଭବ ଅତ୍ୟନ୍ତ ଶାଣିତ ହେବା ସ୍ୱାଭାବିକ ।

"କିଏ କହିବ ମୁଁ ବଞ୍ଚିଛି ?
ବଞ୍ଚିବାର ମାନେ ଯଦି ପ୍ରତି କଥାରେ
ମଥା ଟୁଙ୍ଗାରିବା, ଓ ନିର୍ବିଷ୍ଟରେ ସବୁ କିଛି ମାନିନେବା,
ଚୁପ୍ ହେବା, ହସି ଦେବା ।"

(କେମିତି ବଞ୍ଚିଛି ମୁଁ—ଗାଁନ୍ତ ଗାଁ' ନାରେ ପକ୍ଷୀ)

ଏପରି କାବ୍ୟପୁରୁଷ ତେଣୁ ଏକା ଏକା ଗୁଞ୍ଜିବାକୁ ବାଧ୍ୟ । କାରଣ ତାଙ୍କ ସହିତ ସୁର ମିଳାଇବାକୁ କେହି ଆଗଭର ହୋଇ ଆସନ୍ତି ନା । "ମୁଁ ଠିକ୍ ଜଣାଯାଏ ବାହାର ଭିତର ପରି, /ଭିତର ବାହାର ପରି, ନିଜ ମନ, ନିଷ୍କପଟ କାନ୍ଦ ପରି /ଦିକଶାର ସନ୍ଧ୍ୟା ପରି ଜଣାଯାଏ ଖୁବ୍ ଏକା ଏକା ! !" (କାହାପରି ଜଣାଯାଏ--ଗୀତ ଗାଏ ନାରେ ପକ୍ଷୀ ) । ଏ ଗୁଞ୍ଜିବାର ଶେଷ ନାହିଁ । ନାହିଁ ବି ପୂର୍ଣ୍ଣତା । ତଥାପି ଆପଣାର ନିଜ ବନ୍ଧୁସବୁ କେନ୍ଦ୍ର କରି ବାରମ୍ବାର ଘୂରି ବୁଲିବାରେ ତାଙ୍କର ଆଗ୍ରହ ଅଧିକ । ହଜାଇବାର ଦୁଃଖ ଓ ଖୋଜିବାର ପ୍ରୟାସ ମଝିରେ ଜଳିବାର ପରିଣତି ତାଙ୍କ ସ୍ୱୀକାରୋକ୍ତିକୁ ପ୍ରତିରୋଧ କରିପାରିନି । 'ମୋ ଛଡ଼ା ପ୍ରତିଟି ମଣିଷ', 'ନା ହସ ନା କାନ୍ଦ' 'କି ଯାଏ ବଞ୍ଚେ ଅବା ମରେ' ପ୍ରଭୃତି କବିତାରେ ଏଇ ଧ୍ୱନି ଅନୁରଣିତ ହୋଇଥିବାର ଦେଖାଯାଏ । ମଣିଷର ଦୁଃଖ ଦୁର୍ଦ୍ଦଶା ତାଙ୍କ କବିତାର ବଳୟକୁ ସତତ ଛୁଇଁ ରହିଥାଏ । କିନ୍ତୁ ମାର୍କ୍ସବାଦର ଲାଲଝଣ୍ଡା ତଳେ ସେ ନିଜର କବିକର୍ମକୁ ଅର୍ପିବାକୁ ପସନ୍ଦ କରନ୍ତି ନାହିଁ ।

ତଥାପି ଆଶା ଓ ନୈରାଶ୍ୟର କୂଳହୀନ ସମ୍ଭାବନାରେ କବି ଭ୍ରମାତୁର । ନିଜ ମନସ୍ତାତ୍ତ୍ୱିକ ଅବସ୍ଥାର ଆବଦ୍ଧତା ପାଇଁ ଯନ୍ତ୍ରକୌଶଳ ବ୍ୟବସ୍ଥା ଦରକାର, ତାହାର ସେ ସୁରକ୍ଷା କରିପାରିଛନ୍ତି । 'ସ୍ମରଣ ବିସ୍ମରଣ'ର କେତେକ କବିତା ଏହାର ସାକ୍ଷ୍ୟ ଦେବ । ରୂପାନ୍ୱେଷର ପ୍ରଲୁବ୍ଧ ଇଚ୍ଛା ତାଙ୍କ ଆଗରେ ଅବାରିତ । 'ସ୍ତନ', 'ମାନଚିତ୍ର', 'ସମ୍ପର୍କ', 'ଶାମୁକା', 'କେଶ', 'ହେ ମୋର ବାନ୍ଧବୀମାନେ', 'ଫୁଲବାଣୀ' ପ୍ରଭୃତି କବିତା ଏହାର ପ୍ରମାଣ । କବି ଅତୀତ ସ୍ମୃତିର ଉଦ୍ଧାର କରିଛନ୍ତି ବର୍ତ୍ତମାନର ପରିପ୍ରେକ୍ଷିତରେ । 'ସମର୍ପିତ ମୁହୂର୍ତ୍ତର ଫୁଲ ସବୁ ତୋଳିବା' ସମ୍ଭବ ହୁଏ ସେତେବେଳେ ଯେତେବେଳେ ମଣିଷ ହଜିବାର ଯନ୍ତ୍ରଣାରେ ଜଳି ଯାଉଥାଏ—"ବର୍ତ୍ତମାନ ହଜିବାର ଯନ୍ତ୍ରଣା ଓ /କାନ୍ଦିବାର ମଙ୍ଗଳପାକ । /ଭକ୍ତଙ୍କର ମୁହାଁମୁହିଁ /ଆଳାପରି ଛନ୍ଦ ମିଛ ପ୍ରାର୍ଥନାର ଛନ୍ଦ ।" ( ସମ୍ପର୍କ ) । ଦିଗନ୍ତବ୍ୟାପୀ ଆକାଶରେ ଉଡୁଥିବା ଯାଯାବର ପକ୍ଷୀ ରୂପୀ କବି ଖୋଜେ ଆଶ୍ରୟସୁଖ ନୀଡ଼ଟିଏ । ସେଇଟିକୁ ଯଦି କବି ଦୋଧିପୁଟ ଜଙ୍ଗଲରୁ ହାଣ୍ଡିଆ ଓ ମହୁଲ ଫୁଲର ମହକରୁ ସଂଗ୍ରହ କରି ନିଅନ୍ତି, ତେବେ ଜୀବନର ମିଳେ ସାର୍ଥକତା । କାବ୍ୟପୁରୁଷର ଜୀବନର ବଗିଚାରେ ଅନେକ ଲଜକୁଳି ଲତାଙ୍କ ବସନ୍ତର ସମ୍ଭାର । କିନ୍ତୁ ଏସବୁ କେତେକଙ୍କ ଦୃଷ୍ଟିରେ ଉଦ୍ଭଟ ଜୀବନର ଅସମ୍ପୂର୍ଣ୍ଣ ଦଲିଲ ବୋଲି ମନେ ହୋଇ ପାରେ । ମାତ୍ର ଏପରି ଭାବିବାର ବୋଧହୁଏ ନିର୍ଦ୍ଦିଷ୍ଟ ହେତୁ ନାହିଁ । ଭଙ୍ଗା ଗଢ଼ା କଣ୍ଢେଇର ସଂସାରରେ ଏ ସବୁ ତ ନିତିଦିନିଆ ବ୍ୟାପାର । କିଏ ଏହାକୁ ଖୋଲାଖୋଲି ଭାବେ ସ୍ୱୀକାର କରି ନେଉଛନ୍ତି ତ କିଏ ଏହାକୁ ଲୁଚୋଇବାରେ

ଆଦର ନେଉଛ । କେବେ ଫଟକ୍ କେଉଁଠି ଉଡ଼ିଯାଉ ପ୍ରକାର ମଣିଷର ଜୀବନ ଦର୍ଶନରେ ! ପ୍ରେମ ପାଇଁ, ନାରୀ ପାଇଁ ସାମାଜିକ ନୀତି ଅସୁମ ଭାଙ୍ଗିଦେବା ତ ଆଜିର କଥା ନୁହେଁ । ଏହା ଯୁଗ ଯୁଗର ମର୍ମଗତ ଧାରଣା । ବ୍ୟକ୍ତିକ ଅନୁଭୂତିର ଯାକଜିସ୍ୱୀ ଏଇସବୁ କବିତାକୁ କରିଛି ରସାଳ ଓ ଜୀବନନ୍ତ ।

"ବର୍ତ୍ତମାନ ସ୍ୱରୂ ଶୀତେ ! ମୋ କଥାକୁ ଅବଧାନ ହେଉ ।
ମୋ ହାଇଡ଼ା ଘରୁଡ଼ାର ଚମ୍ପାଫୁଲ ବୁମ ଦେବେ ନିତି ଫୁଟୁଥାଉ ।"
(ମୋ ସ୍ତ୍ରୀ ପାଇଁ ଗୋଟିଏ କବିତା—ସ୍ମରଣ-ବିସ୍ମରଣ)

ସୌନ୍ଦର୍ଯ୍ୟବୋଧର ନବପ୍ରାଣନ ଏହା ତ ଏକ ଉଜ୍ଜ୍ୱଳ କଲ୍ଲୋଳମୀ । ଅଥବା "ଦେଉ ଏକ ଯନ୍ତ୍ରଣା ଜାଣି ଶରୀରେ /ମୁହଁ ଗୁଞ୍ଜି ସକେଇବା ଅନୁଚିତ ହେଉ ବା ନ ହେଉ /ସୁଧକଣା ସ୍ନେହର ଫୁଲ ନଅଗ୍ଲାବେ ସେନେହର ହାଓ୍ୱା ଦେଇ ବନ୍ଧଯିବା ଏକାନ୍ତ ଉଚିତ ।" (ସୁନ) କିନ୍ତୁ ଚାକ୍ରି ଏ ଉଗ୍ରାନ ତରଙ୍ଗରେ ବି ଭଙ୍ଗା ପଡ଼େ । ରକ୍ତ ଓ ସ୍ୱପ ବି ବୁଡ଼ା ହୁଏ । ଛିଦ୍ରର ସତୁଗ୍ୱର ଏଇସବୁ କବିତା ଷଷ୍ଠ ଦଶକର ଓଡ଼ିଆ କବିତାଗୁଡ଼ିକଠାରୁ ଯେ ମଥେଷ୍ଟ ସ୍ୱାତନ୍ତ୍ର୍ୟ ଓ ମୌଳିକତା ବଜାୟ ରଖିନ, ଏହା ନିଃସନ୍ଦେହରେ କୁହାଯାଇପାରେ । ଏଠି ପାରମ୍ପରିକତା ଅପେକ୍ଷା ବରଂ ବୋଦ୍‌ଲେୟାରୀୟ ଦୃଷ୍ଟିଭଙ୍ଗୀ ଅଧିକ । ରବର୍ଟ ଲୋଏଲଙ୍କ 'Man and Wife' କବିତାରେ ବିଚ୍ଛେଦର ଦୁଃଖ ବର୍ଣ୍ଣନାଗତ, ପୁଣି ତାହା ଦ୍ୱିତୀୟ ବିବାହରେ ଆହୁରି ଅଧିକ ମର୍ମନ୍ତୁଦ । କମଳାକାନ୍ତଙ୍କ 'ହେ ମୋର ବାନ୍ଧବୀମାନେ', 'ମୋ ସ୍ତ୍ରୀ ପାଇଁ ଗୋଟିଏ କବିତା'ରେ ଏହି ସ୍ଥିତିର କାହିଁରୁ ଲାଗେ ଉପଲବ୍ଧ । ଏହା ଲୋଏଲଙ୍କ ପ୍ରଭାବ ହୋଇ ନ ପାରେ, କିନ୍ତୁ ସମସାମୟିକ କବିଦ୍ୱୟଙ୍କ ଚିନ୍ତାର ସାମ୍ୟ ସହଜଲକ୍ଷ୍ୟ । ଲୋଏଲଙ୍କ ପରି କମଳାକାନ୍ତ ତାଙ୍କ କବିତାର ବିଷୟକୁ ପରିବାର ଭିତରେ ସୀମାବଦ୍ଧ କରି ରଖିବାର ପକ୍ଷପାତୀ ନୁହନ୍ତି । ତାଙ୍କର ଅନୁଭୂତି ଜଗତ୍‌ବ୍ୟାପୀ, ବହୁ ବର୍ତ୍ତିଳ ଏବଂ ଜଟିଳ୍ୟସମସ୍ତ । ଜଗର ମନସ୍ତତ୍ତ୍ୱ ସବୁବେଳେ ତାଙ୍କ କାବ୍ୟ-ସରଣୀର ପଥ ପ୍ରଦର୍ଶକ । ତାଙ୍କ ଧାରଣା ଓ ବିବିଧ ଅନୁଭୂତି ପୂର୍ଣ୍ଣ ମରୁତୀର୍ଥ ସହ ତୁଳନୀୟ । ଶାପଗ୍ରସ୍ତଧର୍ମୀ ଆଦ ପ୍ରତିଘାତ ଭିତରେ ବି ଏଇ ମରୁତୀର୍ଥ ଆଡ଼କୁ ତାଙ୍କର ଯାତ୍ରା ଅବ୍ୟାହତ ; କିନ୍ତୁ ଧୂ ଧୂ ଧୂସର ମରୁଭୂମି ତାଙ୍କର ଲକ୍ଷ୍ୟସ୍ଥଳ ନୁହେଁ । ଏହା ତାଙ୍କର ଅଧିକାଂଶ କବିତା ଭିତରେ ସ୍ପଷ୍ଟ ଓ ପ୍ରାଞ୍ଜଳ ।

ମଣିଷ ଯାହା କରୁ, ସେଥିରେ ଯଦି ତୃପ୍ତି ନ ପାଏ, ତେବେ ସେ ସାର୍ଥକତା ପାଏ ନାହିଁ । ଯିଏ ଯେତେ ଅଧିକ ସମୟ ତୃପ୍ତି ରହିପାରେ, ସିଏ ସେତିକି ବେଶି ମୁକ୍ତିର ସନ୍ଧାନ ଦେଇ ପାରେ । ଅଥଚ ଅଧିକାଂଶ କ୍ଷେତ୍ରରେ

ଲୋଟାଇଁ ହୁଏ । ମଣିଷର ପ୍ରକୃତି ଏପରି ବିଚିତ୍ର ଯେ ବୁଡ଼ିବା ଏବଂ ବୁଡ଼ି ମରି କିନ୍ତୁ ସମସ୍ତ ଉଦ୍ଭସିବା ତା' ପକ୍ଷରେ କଷ୍ଟସାଧ୍ୟ ହୋଇ ପଡ଼େ । ଅନ୍ୟ ପକ୍ଷରେ, ହଜି ଯାଇଥିବା ଲୋକ ହଜିଯିବାର ଠିକଣା ଜାଣେ । ଶ୍ରୀ ଲେଙ୍କା ସେହିପରି ଜୀବନ ସମୁଦ୍ରରେ ବୁଡ଼ିଛନ୍ତି ବୋଲି ତାର ମାଧୁର୍ଯ୍ୟ ଜାଣନ୍ତି । କିନ୍ତୁ ବୁଡ଼ିକରି ବେଶି ସମସ୍ତ ରହିବାକୁ କୂଳଲଗା ଢେଉ ତାଙ୍କୁ ବରଦାସ୍ତ କରେ ନାହିଁ । ଈର୍ଷା ଓ କ୍ଷୋଭରେ ଢେଉ ତାଙ୍କୁ କୂଳରେ ଫିଙ୍ଗି ଦିଏ । ବୁଡ଼ିବାର ନିଶା କିନ୍ତୁ ଛାଡ଼େ ନା କବିଙ୍କର । ତେଣୁ କବି ସ୍ୱୀକାର କରି ନିଅନ୍ତି—"ନିଜକୁ ହଜାଇ ହୁଏ ନାହିଁ /ବୋଲି ଏତେ ଡାକ, ଏତେ ଖୋଜା; /ଏତେ ଯାକ ଯମକର ବାଣୀ ପାଲି ।"

(ନିତ୍ୟ ନିଯୁକ୍ତି—୮୭)

କବିତା ସମୁଦ୍ରରେ ବା ଜୀବନ ସମୁଦ୍ରରେ ବୁଡ଼ିଯାଇ ସେ ଯାହା ସଂଗ୍ରହ କରି ଥାଆନ୍ତି, ତାହା ତାଙ୍କର ନିଜସ୍ୱ । ସେ ଆବେଗିକ ଅନୁଭୂତିକୁ ଫିଙ୍ଗି ଦେବାକୁ ସେ କସ୍ମିନ୍ କାଳେ ରାଜି ହୁଏ ନାହିଁ । ତାହାହିଁ କବିଙ୍କର ଲୁହ, ଲହୁ, ଓ ଅନ୍ତରର ସୂଚୀପତ୍ର । ଅନ୍ୟର ପ୍ରଗଲ୍‌ଭତା ନିକଟରେ ଅସଲ ଅନୁଭୂତି ତାର ମୂଲ୍ୟ ହରାଏ ନାହିଁ । କବିଙ୍କର ବକ୍ତବ୍ୟ ଏଠାରେ ଖୁବ୍ ପ୍ରାସଙ୍ଗିକ । "ଯାହା ମୋର ନିଜସ୍ୱ /ଘନୀଭୂତ ହୃତ୍ପିଣ୍ଡ ଓ ସ୍ପନ୍ଦନ /ଆତଙ୍କର ଇତିହାସ, ତାହା /ଫିଙ୍ଗି ଦେବାକୁ ମନା /ଲୋକାରଣ୍ୟର ହୁଙ୍କାରକୁ । ଯାହା ମୋର ଏକାନ୍ତ /ଚକ୍ଷୁର ଅଧିକାର ଓ ନିଜସ୍ୱ /ପଶୁତ୍ୱର ଚର୍ମ, ତାହା /ଛାଡ଼ିଦେଇ ଦବାକୁ ମନା /ଆତଙ୍କ-ଜାଲର /ସ୍ଥିର ଜଳ ଉର୍ମିକୁ ।" (ଗ୍ଲାଇରେ ଗ୍ଲାଇଁ ହଜେ—ଝସିବାର ବେଳ) କବିଙ୍କର ଲକ୍ଷ୍ୟ ସବୁବେଳେ ନିର୍ଦ୍ଦିଷ୍ଟ । ତାଙ୍କ କବିତାର ପ୍ରତିଟି ଶବ୍ଦ ସ୍ୱତନ୍ତ୍ର ଭାବ ପାଇଁ ନିର୍ଦ୍ଦିଷ୍ଟ ।—"ମୋ ପ୍ରତିଟି ଉଚ୍ଚାରିତ ଶବ୍ଦ, /ମୋ ପ୍ରତିଟି ଭଙ୍ଗାରୁଜା କର୍ମ ଭର୍ମାଣିର /ମାନପତ୍ର, ମୋ ପ୍ରତିଟି ପ୍ରତିଜ୍ଞା, ନଜିର /ସତ୍ୟର ସ୍ୱରଲିପିରେ ମୁଁ ଦସ୍ତଖତ । /ବିନ୍ଦୁବି ଯେମିତି ନଷ୍ଟ ବହେ ଲୁହରେ, /ଶ୍ୟାମଳ ମୃତ୍ୟୁ ବହେ ଶିହରଣ ଲୋଟାରେ ।" (ସ୍ଥିତିରେ ସ୍ଥିତିଇଁ ହଜେ) ।

କମଳାକାନ୍ତଙ୍କ ସାମଗ୍ରିକ କବି ସୃଷ୍ଟିକୁ ଅନୁଧ୍ୟାନ କଲେ ଗୋଟାଏ କଥା ଜଣା ପଡ଼େ ! ତାହା ହେଉଛି ଆଧୁନିକତା ଓ ଆଧୁନିକ ଜୀବନଚର୍ଯ୍ୟାର ମୂଲ୍ୟାନ୍ତ-ସ୍ପୃଷ୍ଟ ଅନୁଶୀଳନ । ସ୍ଥଳ ବିଶେଷରେ ରୋମାଣ୍ଟିକ୍ ପ୍ରବଣତା କବିଙ୍କୁ ପାଇଛି ମଧ୍ୟ । କିନ୍ତୁ ଆତ୍ମପ୍ରଚାର ଓ ଆତ୍ମସ୍ୱୀକାରୋକ୍ତି ଦେବାବେଳେ ସେ ମିତବାକ୍ । ଇଲିଅଟ୍ ଓ ଲୋଏଲଙ୍କଠାରୁ ସେ ଏଇ କାବ୍ୟସୂତ୍ରର କୌଶଳଟିକୁ ହାସଲ କରିଛନ୍ତି । ବର୍ଣ୍ଣବାଦ ଦୁର୍ଜନ୍ତ ଇଚ୍ଛା ଯେପରି କାବ୍ୟିକ ଇସ୍ତାହାରରେ ସ୍ୱୀକୃତ, ସେହିପରି ସ୍ୱୀକୃତ ହୋଇଛି ଆତ୍ମହତ୍ୟାର ଉଦ୍ୟମ (Suicidal Allempt) । ମଣିଷର ଅପରାଧ-

ବୋଧ ଅପେକ୍ଷା ପରମ୍ପରାର କଠିନତା ଓ ସହରର ନାରକୀୟତା ସହିତ ବାହ୍ୟ-ଚେତନାର ସଂଘର୍ଷ ବେଳେବେଳେ ଏ ପ୍ରକାର ଆତ୍ମଘାତୀ ଭାବନା ପାଇଁ ବାଧ୍ୟ କରେ । କବି ତେଣୁ କହି ପକାଇଛନ୍ତି—"ମୁଁ ଯଦି ସ୍ୱାଧୀନ ନଏ, ତେବେ ଝେଲେ /ଭାଙ୍ଗ ନାହିଁ, ଅନୁରୋଧ—ପ୍ରେମମନ୍ତ୍ର ଦଗ୍ଧ ଧରାଙ୍କୁ" (ଯା'ପରେ ହୁଏତ—ଖସିବାର ବେଳ) । ଶ୍ରୀ ଶୁଭେନ୍ଦୁ ମୁଣ୍ଡ କହନ୍ତି—ସୃଷ୍ଟିର ଅନୁକ୍ରମରେ ନିଜ ଅସ୍ତିତ୍ୱକୁ ଅଙ୍ଗୀଭୂତ କରିବା କାବ୍ୟିକ ଦାର୍ଶନିକତାର ଉତ୍ତରଣର ଏକ ପର୍ଯ୍ୟାୟ । (୧୦)

ବାସ୍ତବତାକୁ ଅବଦମିତ କରିଦେବାର ପ୍ରବୃତ୍ତିକୁ କମଳାକାନ୍ତ ଗ୍ରହଣ କରି ପାରିନାହାନ୍ତି । ତେଣୁ କନ୍‌ଫେସନାଲ କବି ହିସାବରେ ତାଙ୍କର ସଫଳତା ନିଶ୍ଚିତ ରହିଛି । ଶ୍ରୀ ବସନ୍ତ କୁମାର ପଣ୍ଡାଙ୍କ ମତାମତ ଏ ପ୍ରସଙ୍ଗରେ ଉଲ୍ଲେଖଯୋଗ୍ୟ—"କବି କବିତା ରାଜ୍ୟରୁ ସହଜରେ ନିର୍ବାସିତ ହୋଇପାରେ ନା । ଅଥଚ ପ୍ରତିଟି ମୁହୂର୍ତ୍ତରେ ଦକଟେ ଗୁମ୍ଫା ଭିତରେ ଅନିଚ୍ଛାକୃତ /ଇଚ୍ଛାକୃତ ନିର୍ବାସନ ହେଉଥାଏ । ଏହା ହୁଏତ କାବ୍ୟନାୟକର ଆତ୍ମ ବିଚ୍ଛିନ୍ନତାର ଓ ଆତ୍ମ ସଚେତନାର ଗୋଟିଏ ଦିଗ ବା ଆତ୍ମ ବିଶ୍ଳେଷଣରୁ ନିଜକୁ ଉଖାରି ନିଜର ନିଜତ୍ୱକୁ ବୁଝି ପ୍ରଥମ ପୁରୁଷରେ ନିଜକୁ ସମ୍ବୋଧି /ଶୋଧି ସତ୍ୟକୁ ଚିହ୍ନେଇ କରିବାର ଅକପଟ ପଣିଆ ? (୧୧) ଏହା ଆଧୁନିକ କାବ୍ୟଧାରାର ଯେ ଏକ ବୈପ୍ଳବିକ ଚେତନାର ଆନ୍ଦୋଳନ ଏହା ଯେ କେହି ସ୍ୱୀକାର କରିବେ । ତେଣୁ ଏଇ ଭଙ୍ଗୁର ଜୀବନର ବିଚାରରେ ସେ ଈଶ୍ୱର ବୋଲି ଘୋଷଣା କରିବାକୁ ଦ୍ୱିଧା କରନ୍ତି ନାହିଁ । 'ମୁଁ ଓ ଈଶ୍ୱର' କବିତାରେ କବି କହନ୍ତି ।

"ଯେ ଈଶ୍ୱର : ସେ ମୁଁ । /ସେ ଉପୁର ଅବତାର, ଓ ମୁଁ ଅବତାର ଉପୁର । /ସେ ଭଙ୍ଗାଗଢ଼ାର ଅନ୍ଧ ବଢ଼େଇ, ଓ /ମୁଁ ମୋ ବଢ଼େଇର /ବଡ଼ ଦେଉଳ ।" (ଖସିବାର ବେଳ) ଏହା ସହିତ ଆମେରିକାର କବି ଆଲେନ୍ ଗିନ୍‌ସବର୍ଗ (Allen Ginsberg) ଙ୍କ ଗୋଟାଏ କବିତା ମିଳାଇ ପଢ଼ା ଯାଇପାରେ—"Yesterday I saw God. What did he look like ? Well, in the afternoon I climbed up a ladder—he has a cheap cabin in the country, like Morroe, Ny the chicken farms in the wood.

---

୧୦ । ମୁଣ୍ଡ, ଶୁଭେନ୍ଦୁ—'ଖସିବାର ବେଳ' ସମୀକ୍ଷା—ଇସ୍ତାହାର-ଜାନୁଆରୀ /ମାର୍ଚ୍ଚ—୧୯୮୩ ।

୧୧ । ପଣ୍ଡା, ବସନ୍ତ କୁମାର—କମଳାକାନ୍ତଙ୍କ କାବ୍ୟ ଚେତନାର ଯନ୍ତ୍ରସ୍ୱର—ମାର୍ଚ୍ଚ, ନବଲିପି, ୧୯୮୨ ।

He was a lonely old man with a white beard." (Narrative) ସାଧାରଣ ଦୃଷ୍ଟିରେ ଈଶ୍ୱର ବେଶ୍ ସମ୍ଭ୍ରାନ୍ତ ଓ ଦାଢ଼ୁଆ ମନେ ହୁଅନ୍ତି ! କିନ୍ତୁ କବି ଦୃଷ୍ଟିରେ ସେ ଚତୁର ମଣିଷର ଏକ ଷଡ଼ଯନ୍ତ୍ର । ଏପରି କାହିଁକି ମନେ କରନ୍ତି କବି ? ଡେଣାକଟା ପକ୍ଷୀ ପାଇଁ ଯେମିତି ଆକାଶ, ଅବାଧ ସ୍ୱାଧୀନତାର ଅଧିକାରୀ କବି ପାଇଁ ସେମିତି ଈଶ୍ୱର । ସେଥିପାଇଁ ଈଶ୍ୱରଙ୍କୁ ନିରୁଦ୍ଦିଷ୍ଟ କରି ଦେବାର ଦୁଃସାହସ କବିଙ୍କଠାରେ ସମ୍ଭବ । (୧୨)

କମଲାକାନ୍ତଙ୍କ ଏଇ ଧରଣର କବିତା ଆତ୍ମ ପ୍ରକ୍ଷେପଣ ଓ ଅନ୍ତର୍ଦ୍ୱନ୍ଦ୍ୱର ସ୍ୱତଃ ସ୍ଫୁରଣ ଢଙ୍ଗରେ ସମୁଦ୍ଭୂତ । ଜୀବନର ନିଷ୍ଠୁର ବାସ୍ତବତା ଏହାଦ୍ୱାରା ବହୁ ପରିମାଣରେ ଉଦ୍‌ଘାଟିତ ହୋଇଯାଏ । କବିତାର ନିର୍ମଳତା ଓ ସରଳତା ପାଇଁ ଏଭଳି ଆତ୍ମପରିଚୟ ଓ ସ୍ୱୀକାରୋକ୍ତିର ଗୁରୁତ୍ୱ ରହିଛି । ତେବେ ସଂକ୍ଷେପରେ କୁହାଯାଇପାରେ—ସ୍ୱୀକାରୋକ୍ତି ଯନ୍ତ୍ରଣାର କବିତା । ରୋଜାନ୍‌ଥାଲଙ୍କ ଭାଷାରେ—"Confessional poetry is a poetry of suffering. The suffering is generally unbearable because the poetry so often projects breakdown and paranoia." (୧୩) । ଏହା ଏକ ଉଚ୍ଚତର ଆତ୍ମପ୍ରବଣତା । ଆତ୍ମକେନ୍ଦ୍ରିକତା, ନାଟକୀୟତା ଏହାର ଅଙ୍ଗ । ଫଳ ବିଶେଷରେ ଏହାକୁ ଅସ୍ଥିର ମାନସିକତାର ପ୍ରତିରୂପ କୁହାଯାଇଥାଏ । ଏ ପ୍ରକାର ଅଭିଯୋଗ ସବୁକାଳେ, ସବୁଯୁଗେ କବି ପାଇଁ ନିର୍ଦ୍ଦିଷ୍ଟ । ତେବେ କେତେକ କନ୍‌ଫେସନାଲ କବିଙ୍କଠାରେ ଏ ଲକ୍ଷଣ ପରିଦୃଷ୍ଟ ହେଉଥିଲେ ମଧ୍ୟ ସେମାନେ ଯେ ମୁଖ୍ୟତଃ କବି ଓ କଳାକାର, ଏହା ସ୍ୱୀକାର କରିବାରେ ଅସୁବିଧା ହୁଏ ନାହିଁ । କବି ଶ୍ରୀ ଲେଙ୍କା ଏ ପ୍ରସଙ୍ଗରେ ଲେଖିଛନ୍ତି—

"ମୁଁ ନିଜେ ଗାଉଛି ଗୀତ ।
ମୋ ରକ୍ଷିତ କଲଙ୍କ ସାରଙ୍ଗୀ ଧରି
ଦେଖନ୍ତୁ ଓ୍ୱା ସୁପ୍‌ପୀ ଟୋକା ପଣ,
ଈଶ୍ୱର୍ ସ୍ୱରର ଓଠେ
ଖିଲ୍‌ଖିଲ୍ ବସନ୍ତ ଉଙ୍କାର ।"
(ପ୍ରାର୍ଥନା : କଣ୍ଟିତ ରୂମକୁ ଓ ସମ୍ପୂର୍ଣ୍ଣ ନିଜକୁ—କବିତାର ମୂର୍ତ୍ତି")



୧୨ । କବିତାର ମୂର୍ତ୍ତି—'ନିରୁଦ୍ଦିଷ୍ଟ ବ୍ୟକ୍ତି ସମ୍ପର୍କରେ' ।

୧୩ । Rosenthal, M. L. The New poets American and British poetry since world war II, Landon, 1970, P. 130.

# ନବମ ଅଧ୍ୟାୟ

## ସୌନ୍ଦର୍ଯ୍ୟବୋଧର ପରିଧି

ସୌନ୍ଦର୍ଯ୍ୟ ଚେତନା ଛଡ଼ା କବିତାର କଳ୍ପନା ଅବାନ୍ତର । ମନ ଓ ହୃଦୟର ଗମ୍ଭୀରତମ ପ୍ରଦେଶରୁ ଉତ୍ସାରିତ ଅନୁଭୂତି ସହ କଳ୍ପନା ଏକୀଭୂତ ହେଲେ ବାସ୍ତବତା କାବ୍ୟ-ସୌନ୍ଦର୍ଯ୍ୟର ରୂପ ନିଏ । ଯାହାର ଅନୁଭୂତି ଯେତେ ଗମ୍ଭୀର, ତା'ର ସୌନ୍ଦର୍ଯ୍ୟବୋଧର ପରିଧି ସେତେ ବ୍ୟାପକ । କବିତା ଅନୁଭୂତିର ଏକ ବିବରଣୀ ନୁହେଁ, ବରଂ ସେ ଅନୁଭୂତିର କଳ୍ପନାଶ୍ରୟୀ । ବାସ୍ତବକୁ ଅସ୍ୱୀକାର କରି କଳ୍ପନାର ଶୈଳ୍ପିକ ସ୍ଥିତି ମୂଲ୍ୟାୟନ । କବି କମଳାକାନ୍ତଙ୍କ କାବ୍ୟିକ ସୌନ୍ଦର୍ଯ୍ୟର ଅନ୍ତରାଳରେ ଏହି ରହସ୍ୟ ବିଦ୍ୟମାନ । ମାତ୍ର ସୌନ୍ଦର୍ଯ୍ୟବୋଧ ଓ ସୌନ୍ଦର୍ଯ୍ୟ ଦୃଷ୍ଟି କଥା ଦୁଇଟି ସମାନ ନୁହେଁ । ସୌନ୍ଦର୍ଯ୍ୟବୋଧ ସବୁ କବିଙ୍କର ଥାଏ, ମାତ୍ର ସୌନ୍ଦର୍ଯ୍ୟ ଦୃଷ୍ଟି ସମସ୍ତଙ୍କର ନ ଥାଏ (୧) ସୌନ୍ଦର୍ଯ୍ୟ ଦୃଷ୍ଟିରେ ଥାଏ ଗୋଟାଏ ଦାର୍ଶନିକ ମାନ୍ୟତା; ଥାଏ ସାର୍ବଜନୀନତା । ମାତ୍ର ବ୍ୟକ୍ତିକ ସୌନ୍ଦର୍ଯ୍ୟ-ବୋଧ ଏହି ମହତ୍ତ୍ୱ ଲକ୍ଷ୍ୟ ସ୍ଥଳରୁ ଦୂରେଇ ଯାଇଥାଏ । ଏହି ଦୃଷ୍ଟିରୁ କମଳାକାନ୍ତଙ୍କ ବ୍ୟକ୍ତିଗତ ସୌନ୍ଦର୍ଯ୍ୟାନୁଭବ ସୌନ୍ଦର୍ଯ୍ୟ ଦୃଷ୍ଟିରେ ରୂପାନ୍ତରିତ । "ଏଠି ସବୁ ଧାନ ବିଲ" କବିତା ତାହାର ପ୍ରମାଣ ଦେଇ ପାରିବ । "ଏଠି ସବୁ ଧାନ ବିଲ । /ପବନର ପାହାଥାରେ /ସବୁଜିମା ସଜାଡ଼ୁଚି ବେଣୀ /ନରମ ସକାଳ ଧୁଏ /କ୍ଳାନ୍ତିର ମଇଳା କ୍ଷେତରୁ, /ବହିଯାଏ କଳତାନେ ଯମୁନା ଉଜାଣି ।" (ସ୍ମରଣ-ବିସ୍ମରଣ) । ସୌନ୍ଦର୍ଯ୍ୟ ଧାରଣାର ଦିଗନ୍ତପ୍ରସାରୀ ଆଭିମୁଖ୍ୟ ଆକାଶ, ପବନ ଓ ମାଟିର ମନଛୁଆଁ ପ୍ରଭାବଠାରୁ ଦୂରେଇ ଯାଇ ନାହିଁ । ସରସର ପାଣି କାହୁଅର ଅନୁଭୂତି ସାର୍ବିକ ମୂଲ୍ୟବୋଧର ମହିମାରେ ଯଶସ୍ୱୀ । ଧାନ ବିଲର ଚିତ୍ର ଦେବା ସଙ୍ଗେ ସଙ୍ଗେ ସେ ଅନୁଭୂତି ଆମ ନିକଟରେ ଦୁର୍ଲଭ ହୋଇ ରହୁ ନାହିଁ । ସମସ୍ତଙ୍କର ମନ ଓ ହୃଦୟ ଭିତରକୁ ତାହା ସଞ୍ଚରି ଯାଉଚି । ଝଙ୍ଗ ଫୁଲ ପାଖୁଡ଼ାରେ ପୁଞ୍ଜୀଭୂତ ଶୋଚନାର ଛାଇ, ଘାସର ପାହାଚ, ସବୁଜିମାର ଲହଡ଼ି ଭଙ୍ଗା ଦୃଶ୍ୟ ସୌନ୍ଦର୍ଯ୍ୟ ଚେତନାର ଉଦ୍‌ବୋଧକ ।

---

୧ । ମହାନ୍ତି, ଗିରିବାଳା—'କବିତା ଓ ତାର ସୌନ୍ଦର୍ଯ୍ୟ ବିସ୍ତର'—ବିଶ୍ୱସ୍ୱରସ୍ଥ ଦୀପିକା—୧୯୮୦, ପୃ. ୧୧୪ ।

ଅନ୍ୟ ପକ୍ଷରେ, ଏପରି ଅନେକ ବସ୍ତୁ ରହିଯାଏ, ଯାହା ପାଠକ ବା ଶ୍ରୋତା ନିଜ ଅନୁଭୂତି ଭିତରକୁ ସମ୍ପୂର୍ଣ୍ଣ ଆଣି ପାରେ ନା । କବିତାପ୍ରେମୀଙ୍କ ମନରେ କବିତାର ରସ ସଞ୍ଚାର ହୁଏ ସତ, କିନ୍ତୁ ସେତେ ଥର ପଢ଼ିଲେ ବା ଶୁଣିଲେ ବି ଉପଭୋଗ ମେଣ୍ଟେ ନାହିଁ । ନୂଆ ନୂଆ ଭାବରେ ସେ ରସ ଚେତନା ପାଖରେ ରସବୋଦ୍ଧା ପହଞ୍ଚିଯାଏ । କିନ୍ତୁ ପାଠକ ବିନା ଆୟାସରେ କବି ସୃଷ୍ଟିର ଅଭ୍ୟନ୍ତର ମଣ୍ଡଳରେ ପହଞ୍ଚି ଯାଇ ପାରେ ବୋଲି ଆମେ କହି ପାରିବା ନାହିଁ । ଶିଳ୍ପୀଗୁରୁ ଅବନୀନ୍ଦ୍ରନାଥ ଠାକୁର କହନ୍ତି—ପକ୍ଷୀଟିଏ ଗୋଟାଏ ଗଛରୁ ଅନ୍ୟ ଗଛକୁ ଉଡ଼ିଯାଇ ବସିଲାବେଳେ ପୂର୍ବ ଗଛ ସହିତ ତାର ସମ୍ପର୍କ ଛିନ୍ନ ହୋଇ ଯାଇଥାଏ ଏବଂ ସେ ଯେଉଁ ଆକାଶ ପଥ ଦେଇ ଅନ୍ୟ ଗଛ ପାଖରେ ପହଞ୍ଚେ, ତାହାର କୌଣସି ପ୍ରଶ୍ନ ଉଠେ ନା (୨) କାବ୍ୟ ରସିକ ସେହିପରି କବିର ପ୍ରତ୍ୟକ୍ଷାନୁଭୂତି ସହିତ ସଂଯୋଗ ସ୍ଥାପନ କରିବା ଏକ ଅସମ୍ଭବ ବ୍ୟାପାର । ଏପରି ସ୍ଥଳେ କବିଙ୍କ କିଛି ବୁଝି ହୁଏ, କିଛି ବୁଝି ହୁଏ ନା । ଏଇ ଅବସ୍ଥାଟା ସୌନ୍ଦର୍ଯ୍ୟ ସୃଷ୍ଟି ପାଇଁ ନିତାନ୍ତ ଆବଶ୍ୟକ । ଶିଳ୍ପୀର ସାଧନାହିଁ ଆନନ୍ଦର ସାଧନ । ବାହାରେ ଶିଳ୍ପୀ ଯେତେବେଳେ ନିସ୍ତରଙ୍ଗ, ହୃଦୟ ଓ ମନ ଭିତରେ ସେତେବେଳେ ସେ ଅସ୍ଥିର ଓ ଅଶାନ୍ତ । ତାର ସନ୍ଧାନ ପାଠକର ଅବଧାରଣାକୁ ବା ଆସିବ କିପରି ? ରୂପପାୟୀ କବି କିନ୍ତୁ ରୂପସ୍ଥ ସତ୍ତ୍ୱାକୁ ପ୍ରକାଶ କରିବାରେ ଅତି ମାତ୍ରାରେ ବ୍ୟସ୍ତ । ସେଇ ରୂପସତ୍ତ୍ୱ ପ୍ରକାଶିତ ହୁଏ ସୌନ୍ଦର୍ଯ୍ୟର ଲାବଣ୍ୟମୟ ସମ୍ଭାରକୁ ନେଇ । ଏଇଟାହିଁ ପ୍ରକୃତରେ ଏସ୍ଥେଟିକ୍ ଟ୍ରୁଥ୍ । ରସ ଆସ୍ୱାଦନ ଏଠି ବଡ଼ କଥା । ଶ୍ରୀ ଲେଙ୍କା ଏହାର ସମର୍ଥକ ।

'ଭଲ କରି ଜାଣେ କବି
କାହିଁକି ଓ କେଉଁମିତି ଛଟପଟ
ଈଶ୍ୱରଙ୍କ ଯାବତୀୟ ସୁନ୍ଦର ସୃଷ୍ଟିର
ଆକର୍ଷଣ, ରହସ୍ୟ କବଳେ ।"

(ଗୋଲକ ଧନ୍ଦା—ସ୍ରୋତର ନାମ ଋଜୁ)

ସେ ରହସ୍ୟହିଁ ସୁନ୍ଦରର ରହସ୍ୟ । ରୂପବତୀ ନାରୀର ଆକର୍ଷଣ ଏଇଥିପାଇଁ ଦୁର୍ନିବାର । ଶ୍ରୀ ଲେଙ୍କାଙ୍କ ଅବବୋଧ ଏଇ ଧାରଣାକୁ ବାନ୍ଧେ । ଗୋଟାଏ ପଟେ ସୌନ୍ଦର୍ଯ୍ୟ ଚେତନା ସାର୍ବଜନୀନତାର ଉନ୍ମୁକ୍ତ ଚୌହଦୀ ଏବଂ ଅନ୍ୟ ପାଖରେ ତାହା ରହସ୍ୟର ରହସ୍ୟ । ତାଙ୍କ କବିତାର ବିସ୍ତୃତ କାଳରେ ଏଇ ବୈବିଧ

୨ । ବର୍ମା, ସୁଧୀର କୁମାର—'ନନ୍ଦନତତ୍ତ୍ୱ' ପଶ୍ଚିମ ବଙ୍ଗ ରାଜ୍ୟ ପୁସ୍ତକ ପର୍ଷଦ, କଲିକତା—୧୯୬୯—ପୃ. ୨୬୨ ।

ଲକ୍ଷ୍ୟ କରିବାର କଥା । ଯେପରି "ହେ ମୋର ବାନ୍ଧବୀମାନେ" କବିତାରେ କବିଙ୍କର ଅନୁଭୂତି ବ୍ୟକ୍ତିଗତ । କିନ୍ତୁ ତାହା ପ୍ରକାଶିତ ହେବାବେଳେ ଇଙ୍ଗିତ-ପୂର୍ଣ୍ଣ । ସୁତରାଂ ପରିବେଷଣର ଅକୃତ୍ରିମତା ବା ଘଟଣାର ପ୍ରକୃତ ଚିତ୍ର ଏଇ କବିତାରୁ ଆଶା କରିବା ବୃଥା । ତେଣୁ ସେ ବର୍ଣ୍ଣନାକୁ ବାସ୍ତବ ସତ୍ୟ ନ କହି ରୂପର ସତ୍ୟ (Aesthetic truth) କହିବା ଯଥାର୍ଥ । ଦୃଷ୍ଟାନ୍ତ ସ୍ୱରୂପ :

"ତୁମେ ସବୁ ଯେଉଁମାନେ ବସନ୍ତର ବୋଝ ବୋହି
ଫୁଲେଇ ମୟୂରୀ ନାଚେ
ଭ୍ରାନ୍ତିର କଥାରି ଝିପି ଖୋଜିବୁଲ ଅଗଣିତ ମୁଖର ପ୍ରହର —
ଅଥବା ମୋ ସ୍ପନ୍ଦନକୁ ଲୁଚି ଲୁଚି ଦେଇ ତୁମ ଝଙ୍କାଳା ଇଚ୍ଛାରେ
ହୃଦୟର ବନ୍ଧନରୁ ମୋତେ ତୁମେ ମୁକ୍ତ କର ନିର୍ବିକାର ମନେ,
ହେ ମୋର ବାନ୍ଧବୀମାନେ ! ତୁମେ ସବୁ ବେଦନାର ମଧୁର ଆଷାଢ଼ !
ତୁମେ ମୋ ଉତ୍କଳା ନଦୀ —ଶାମୁକାର ସ୍ୱପ୍ନ ଆଗୋ
କସ୍ତୁରୀର ବିମୁଗ୍ଧ ସଞ୍ଚାର ।"

(ହେ ମୋର ବାନ୍ଧବୀମାନେ—୪, ସ୍ମରଣ-ବିସ୍ମରଣ)

ବାସ୍ତବ ଜଗତର ସତ୍ୟତା ଏଠାରେ ପୂର୍ଣ୍ଣ ଭାବରେ ଅସ୍ୱୀକୃତ ନ ହେଲେ ବି ଅବିକଳ ପ୍ରତିଫଳିତ ହୋଇ ପାରି ନାହିଁ । ଏହାହିଁ ତ ଶିଳ୍ପାନନ୍ଦର ସୁନାକାଠି । ସେଇ ସୁନାକାଠିଟିକୁ ନେଇ ବାସ୍ତବ ଘଟଣାର ସତ୍ୟତା କିଛି ମାତ୍ରାରେ ହୁଏତ ଦେଖାଯାଇପାରେ । କିନ୍ତୁ ଏପରି ଦେଖିବାର କୌଣସି ଅର୍ଥ ନାହିଁ । ରବୀନ୍ଦ୍ରନାଥ ଏହାକୁ ଲକ୍ଷ୍ୟ କରି କହିଥିଲେ—"ସେଇ ସତ୍ୟ ଯା ରଚିବେ ତୁମି, /ଘଟେ ଯା' ତା ସବ୍ ସତ୍ୟ ନହେ ।" କବି ଦୃଷ୍ଟିରେ ସତ୍ୟହିଁ ତାର କବିତା, ଯାହା ଘଟିଯାଏ ତାହା ଶିଳ୍ପ ସତ୍ୟ ନୁହେଁ । ବନ୍ଧ ସର୍ବିଗ୍ରହିତରାୟଙ୍କ କବିତାରୁ ଏହାର ପ୍ରମାଣ ମିଳେ । 'ରାଜନେମା' କବିତାରେ ସେ କହନ୍ତି —ଯାହା ସତ୍ୟ ତାହା କବିତା /ମଣିଷର ଜୀବନବୋଧର ଛନ୍ଦତା ।" ମାତ୍ର ପରେ ସେ ତାଙ୍କର ମତ ପରିବର୍ତ୍ତନ କରିଛନ୍ତି । ତେବେ ଏଇ ସ୍ୱବିରୋଧ ସାହିତ୍ୟରେ ସୁପ୍ରତିଷ୍ଠିତ ଏବଂ ଉପଯୁକ୍ତ ସ୍ଥଳରେ ତାହା ଗୃହୀତ ।

କବି ଶ୍ରୀ ଲେଙ୍କା ଆତ୍ମସମାହିତ ଯୋଗୀଟିଏ । ଆନନ୍ଦ ଜଳରେ ବୁଡ଼ି ରହିବା ତାଙ୍କର ସାର୍ଥକତା । ଯାହାଙ୍କର ଭାବ ନିମଜ୍ଜନ ଯେତେ ସଫଳ, ସେ ସେତେ ସଫଳ କବି । ଜୀବନର ଗଭୀରରୁ ସେ ଆହରଣ ତାଙ୍କ କାବ୍ୟଚେତନାର ହସ୍ତ । କବି ଶ୍ରୀ ଲେଙ୍କା ଗୋଟାଏ ପଦରେ କାବ୍ୟସତ୍ୟ ଓ ବସ୍ତୁସତ୍ୟର ଚମତ୍କାର ସମନ୍ୱୟର ରୂପ ଦେଇଛନ୍ତି— "ବାହ୍ୟା କବି ରୂପେ ହାର । ଛନ୍ଦେ ଗୀତ ।/ଛୁଏଁ

ନା ମିଛ ବୃନ୍ଦାବନ ।" ( କବି ଅଦାତ—ଗୀତ ଗା' ନାରେ ପକ୍ଷୀ ) । କବିର 'ବାଉଳା' ହେବାଟା କାବ୍ୟିକ ସତ୍ୟ ଏବଂ 'ମିଛ ବୃନ୍ଦାବନ'କୁ ନ ଛୁଇଁବା ବସ୍ତୁ ସତ୍ୟ ବା ଜୀବନ ସତ୍ୟ । ଶ୍ରୀ ଲେଙ୍କାଙ୍କ ସୌନ୍ଦର୍ଯ୍ୟଧାରଣାର ବଶିଷ୍ଟତା ଏଇ ପଦରେ ଲୁକ୍କାୟିତ । କବି ଶ୍ରୀ ଲେଙ୍କା ବାସ୍ତବତାକୁ କେଉଁଠି ଏଡ଼େଇ ଦେଇ ଯାଇ ନାହାନ୍ତି । ମଣିଷ ବକ୍ଷରେ, ଏପରିକି ନିଜ ବକ୍ଷରେ ସେ ତାଙ୍କର ଜନ୍ମଦାତାକୁ ଠିଆ କରେଇଛନ୍ତି । ତେବେ କେଉଁଠି ଯେ ଅସ୍ପଷ୍ଟ, ତାହା କବିତାର ଅନୁରୋଧରେ କେବଳ ହୋଇଛି । ପ୍ରଶ୍ନ ଉଠେ, ଯେଉଁଠି ଜୀବନର ଅଖଣ୍ଡ ବାସ୍ତବତାର ଅସ୍ପଷ୍ଟ ଉଚ୍ଚାରଣ କରିବାର ଏତେ ପ୍ରଚେଷ୍ଟା, ସେଠାରେ କବିତା ସ୍ୱୟଂବୋଧ୍ୟ ନ ହୋଇ ବାଖ୍ୟାର ଅପେକ୍ଷା ରଖେ କାହିଁକି ? କାହିଁକି ତା' ସ୍ୱତଃ ଉଦ୍ଭାସିତ ହୋଇ ପାରେ ନା ? କାରଣ, କବିତା ବାସ୍ତବତା ଓ କଳ୍ପନାର ସୁସ୍ଥାଲୋକ, ଜୀବନର ଚର୍ଯ୍ୟାଗୀତ । କବିତା ଯେମିତି କବିର ତପସ୍ୟା, ପାଠକ ପକ୍ଷେ ସେଇପରି ପାଠକୀୟ ନିଷ୍ଠାପରତା । ନହେଲେ କବିତାକୁ ସଠିକ୍ ଭାବେ ହୃଦୟଙ୍ଗମ କରିବା ସମ୍ଭବ ହେବ ନାହିଁ । ମାତ୍ର ପ୍ରକୃତରେ ପାଠକ ଅନାୟାସରେ କବିର ସେଇ ଉଚ୍ଚତାକୁ, ଚେତନାର ଶୀର୍ଷକୁ ଛୁଇଁ ପାରେ କି ? ଆଣି ପାରେ କି ? 'ପାଗଳ କହୁଚି ପାଗଳକୁ ଯେ' କବିତା ତାହାର ସାକ୍ଷ୍ୟ ଦେବ । ପଙ୍କ୍ତିଆରେ ଏମିତି ଗର୍ଜ୍ଜିବ ଘାସ /ବିଛେଇ ଯାଉଥାନ୍ତା, ମୁଣ୍ଡା ପାହାଡ଼ର/ ସହନଶୀଳତାର ଧୂଳିରେ /ଚଳଶ୍ରୀ କଳସୀ ପାଣି କିଏ ଟାଳୁଥାନ୍ତା କି/ ଟୋପେ ହେଲେ ଜନ୍ମର ଶୋଷ /ନ ଥାନ୍ତା ସ୍ୱତନ୍ତ୍ର ଅଶ୍ରୁରେ, /ନହଜ୍ଞି ଭଙ୍ଗା ଦରିଆର ବପୁଳ/ ଗମ୍ଭୀର-ତାରେ । /ଯୌବନର ମଥା /ହେଜ ରଖିଥାନ୍ତା ଜର୍ଜଳା ବୈଶାଖରେ /ଯେ : ପାଗଳ ଡମ୍ବରୁ ଧରି ନାଚୁଥାନ୍ତା /ହୃଦରେ, ଚଉଁରର ତୁଳସୀ ପତ୍ରରେ ! (''ଗୀତ ଗା' ନାରେ ପକ୍ଷୀ'') । 'ପାଗଳ' ଏଠାରେ ସ୍ୱୟଂ କବି । ବକ୍ତବ୍ୟଟି କବିଙ୍କର ସ୍ୱଗତୋକ୍ତି । କବିଙ୍କର ଏଇ କାବ୍ୟିକ କୌଶଳ ସହ ପରିଚିତ ନ ହେବା ଯାଏ, କବିତା ବୁଝାଯାଏ ନା । କଳନା କରି ହୁଏ ନା ତାର ଭାବବୃତ୍ତର ବୈଚିତ୍ର୍ୟମୟ ଉଲ୍ଲାସକୁ । କବିଏ ସ୍ୱତନ୍ତ୍ର । ତେଣୁ 'ଜନ୍ମର ଶୋଷ' /ସୌନ୍ଦର୍ଯ୍ୟର ଶୋଷ ମେଣ୍ଟିବା କେବେ ତାଙ୍କ ପକ୍ଷରେ ସମ୍ଭବ ନୁହେଁ । ତାଙ୍କ ଚେତନାର ଗୋଟାଏ ପାଖରେ ସୋରିଷ ଫୁଲର ମହମହ ବାସ୍ନା, ଅନ୍ୟ ପାଖରେ ଅନ୍ଧକାରର ରାଜତ୍ୱ । ଦୁଇ ସୀମାନ୍ତ ବିନ୍ଦୁ ଯୋଡ଼ି ହୋଇଯାଏ କଳ୍ପନାରେ । ଜନ୍ମ ନିଏ କବିତା । ଏପରି କବିତା ଏକାନ୍ତ ଆକସ୍ମିକ ନୁହେଁ, ବା ବିକଳାଙ୍ଗ ଶିଶୁର ଅବାଂଛିତ ଜନ୍ମ ପରି ଦୁଃଖଦ ନୁହେଁ, ତାହା ସୁନ୍ଦର, ହୃଷ୍ଟପୁଷ୍ଟ ସନ୍ତାନଟିଏ । ଅନ୍ଧାରର ଲଟାରେ ଫୁଲଟିଏ ଫୁଟିବା, ଧୂଆଁ ଧାରିଭି ଢେଉରେ କବିତାଟିଏ ଜୁଟିବା, ମା'ର ପଣତରୁ କାକୁସ୍ତ କ୍ଷୀର ପାନ କରିବା କବିଙ୍କର ସୌନ୍ଦର୍ଯ୍ୟଶୀଳ

ଦୃଷ୍ଟି ନିକଟରେ ଯେପରି ସତ୍ୟ, ସେହିପରି ସତ୍ୟ ବୁଢ଼ାଟିଏ ବାଡ଼ି ଧରି ଚାଲିବା ଓ ମୃତ୍ୟୁ ସଙ୍ଗେ ଲଢ଼ିବା । ଏଇପରି ସ୍ୱପ୍ନରୁ ବାସ୍ତବ, ଚେତନରୁ ଅବଚେତନ ମଧ୍ୟରେ ଚାଲିଛି ମଣିଷର ଅଖଣ୍ଡ ଯାତ୍ରା । ଅଗଣିତ ସ୍ମୃତି ଭିତରେ ମଣିଷ ଆଚ୍ଛନ୍ନ । କେତେବେଳେ ଅତୀତର ମୁଖଶ୍ରୀ ସବୁ କବି ପାଖକୁ ଆସେ ଚେତନାର ପରିମାପ କରିବାକୁ, କେତେବେଳେ ପୁଣି ଆସେ ରକ୍ତର ଆହ୍ୱାନ । ସନ୍ତର୍ପଣରେ ଆସେ ମଣିଷର ଶିକ୍ଷା, ବୁଦ୍ଧି, ବୃତ୍ତିକୁ ଓଲଟ ପାଲଟ କରି ଦେବାକୁ ତାର 'ତୃପ୍ତି ଅତୃପ୍ତି ସବୁ ଦେଖାଦିଏ ବିଭିନ୍ନ ପରିପ୍ରେକ୍ଷୀରେ । ଏସବୁର ଧ୍ୱନି ତାର ସୃଜନ ବୀଣାରେ ଅନୁରଣିତ ହୋଇ ଉଠେ । କବିଙ୍କ ଜୀବନର ଏଇ ପାସ୍‌ୱାର୍ଡ଼ ଭିତରକୁ ପ୍ରବେଶ ଏକ ଦୁରଧିଗମ୍ୟ ବ୍ୟାପାର । ଏଇଥିପାଇଁ କବି ଦିନେ କ୍ଷୋଭ ପ୍ରକାଶ କରି କହିଥିଲେ—'ଆଜିକାଲି ସବୁ କଥା ଟିକିନିଖି ନ କହିଲେ ଶତକଡ଼ା ଅନେଶତ ଲୋକ ବୁଝି ପାରନ୍ତି ନାହିଁ ।' କିନ୍ତୁ ଏଥିରେ କ୍ଷୋଭର କୌଣସି କାରଣ ନାହିଁ । ସବୁ କଥା ଠିକ୍ ଠିକ୍ ବୁଝି ନ ପାରିବାହିଁ ଉତ୍ତମ କଳାର ଭାଗ୍ୟ । ସବୁ କାଳର ଭଲ କବିତାରେ ଏଇ ସତ୍ୟ ନିହିତ । ଏହା କେବଳ ଆଜିର ସମସ୍ୟା ନୁହେଁ । ତେଣୁ ଦୁର୍ବୋଧତା କବିତାର ସୌନ୍ଦର୍ଯ୍ୟ ବର୍ଦ୍ଧକ ।

"ନା । ତୁମେ ଏବକା ଆସ ନାହିଁ ।
ମେଘ ଅନ୍ଧାର ରାତିରେ
ଜୁଳୁଜୁଳିଆ ପୋକ
ତୁମ ନାକ ଚଣାରେ
ବସିଲେ, ଆସିବ ।"

(ନିର୍ବାକ୍—ଚିତା ଅଙ୍କା କାନ୍ଥର ଛବି ··)

ଏ କବିତା ବୁଝି ମଧ୍ୟ ବୁଝି ହୁଏନା । ରସ ପାନ କରି ମଧ୍ୟ ରସଭୋକ୍ତା ଯେପରି ଅତୃପ୍ତ ରହିଯାଏ । ତେବେ ସାଧାରଣ ଭାବେ ପାଠକ ବୁଝେ ଯେ କାବ୍ୟନାୟକ ଯାହାଙ୍କୁ ଏବେ ତାଙ୍କ ନିକଟକୁ ଆସିବାକୁ ବାରଣ କରୁଛନ୍ତି, ସେ ହୁଏତ ଏବେ ପ୍ରେମର ମହତ୍ତ୍ୱ ବୁଝି ପାରିବ ନାହିଁ । ବିପଦରେ ପଡ଼ିଲେହିଁ ପ୍ରେମର ମହତ୍ତ୍ୱ ଫୁଟି ଉଠେ । ଜୁଳୁଜୁଳିଆ ପୋକ ଅନ୍ଧକାର ମଧ୍ୟରେ ଆଲୋକର ସ୍ୱତଃସ୍ଫୂର୍ତ୍ତ ହୁଏ । ସେହିପରି ବିପଦ /ଯନ୍ତ୍ରଣା ପ୍ରେମର ଯଥାର୍ଥ ସୂଚୀପତ୍ର । କହ୍ନିଫୁଲିଆ ରାତିରେ ନିଜକୁ ନିଜେ ଝୁଣ୍ଟି ହେଲା ପରେ ଏଇ ଚେତନାରେ ସବାର ହୁଏ ମଣିଷ । ଏଇ ବାଖ୍ୟା ସତ୍ତ୍ୱେ, ଏହା ଭିତରେ କିଛି ଗୋଟାଏ ହଜିଲା ହଜିଲା ପରି ଲାଗେ । ସେଇ ହଜିଲା ସୂତାର ସନ୍ଧାନରେ କବି ଓ ପାଠକ ବ୍ୟସ୍ତ । ଅନେକ କବିତା ଅଛି, ଯାହା ପଢ଼ିବାକୁ /ଶୁଣିବାକୁ ଖୁବ୍ ଭଲ ଲାଗେ । ଅଥଚ ସ୍ପଷ୍ଟ ଭାବରେ ସେଗୁଡ଼ିକ

ବୃଦ୍ଧି ହୁଏ ନା । ଅନୁଭବରେ ତା' ସଞ୍ଚରି ଯାଏ । କବିତା ଗୋଟାଏ ଗ୍ଲାସ୍ ଡିଷ୍ଟିଲ୍ଡ ଓ୍ୱାଟର୍ ନୁହେଁ ଯେ ତୃଷାର୍ତ୍ତଙ୍କୁ ଚରମ ତୃପ୍ତି ଦେଇ ଦେବ ! କିନ୍ତୁ କବିତା ଡିଷ୍ଟିଲ୍ଡ ଅନୁଭୂତିର ଅନବଦ୍ୟମୟ ପ୍ରକାଶ । 'ମୋ ମା ପ୍ରତି' କବିତାକୁ ଏହାର ଦୃଷ୍ଟାନ୍ତ ଦିଆଯାଇପାରେ ।

"ମୁଁ ଘର ଅଟଗଣ୍ଡ, ମୂର୍ଖ ଓ ବୁଦ୍ଧିଆ ପିଲ !
କି ବୁଝିବି ତୋର ସମୁଦ୍ର ମାୟା । କି ବୁଝିବି ମାଆର କଷଣ ?
ମୁଁ ଏବେ ଝୁଲୁଛି ସୁନା ଜଳି ପୋଡ଼ି ତୋ ଆଖି ନିଆଁରେ
ଝଟକୁଛି ମାଆଲୋ ମୁଁ ବୁଡ଼ନ୍ତା ସୂର୍ଯ୍ୟଟା ପରି
ବିକି ଗଲିଣି ତୋ ଲୁହର ସମ୍ପତ୍ତି ମୁଁ ବଜାର ହାଟରେ ।"
(କବିତାର ମୁହଁ)

ନିଜ ଦୋଷ, ତ୍ରୁଟିର ସ୍ୱୀକାରୋକ୍ତି ଭିତରେ ମାତୃ ବିୟୋଗର ବେଦନା-ବୋଧ ଏଥିରେ ଉଜ୍ଜୀବିତ । ଏଇ ବେଦନାବୋଧ ବୋଧଗମ୍ୟ ନ ହେଲେ କବିତାର ପ୍ରକୃତ ବ୍ୟଞ୍ଜନା ଉପଲବ୍ଧି କରିବା ସମ୍ଭବ ହୁଏ ନାହିଁ । ମା' ପ୍ରତି ଶ୍ରଦ୍ଧା ଓ ଭକ୍ତିର ନିଦର୍ଶନ ଏ କବିତା । କାବ୍ୟନାୟକର ଅଶ୍ରୁସଜଳ ଆଖି ସହ ଭାବ ଅଭିବ୍ୟକ୍ତିର କଣ୍ଠ ତେଣୁ ଗମ୍ଭୀର ହୋଇ ଉଠିବା ସ୍ୱାଭାବିକ । "ମାଆ ଲୋ ମୁଁ ଏଇନେ ଫେରୁଛି ପିଇ ସରାପ" କହିଲାବେଳେ ଗଭୀର ବେଦନା ସହ ଅନୁଭୂତିର ସ୍ୱଚ୍ଛତା ବୃଦ୍ଧିହୁଏ ଏବଂ ସୌନ୍ଦର୍ଯ୍ୟାନୁଭବର ଝଲକା ଆଡ଼କୁ ପାଠକୀୟ ଦୀର୍ଘଶ୍ୱାସ ସଞ୍ଚରିଯାଏ । ଆଖି ନିଆଁରେ ଝୁଲୁ ସୁନା ପରି ଜଳିବା, ବୁଡ଼ନ୍ତା ସୂର୍ଯ୍ୟ ପରି ଝଟକିବା ବା ବଜାର ହାଟରେ ଲୁହର ସମ୍ପତ୍ତି ମୂଲାଇବା ଭିତରେ କବିପ୍ରାଣର ସେଇ ସୌନ୍ଦର୍ଯ୍ୟବୋଧର ସୂକ୍ଷ୍ମତା ଅନୁଭବ କରି ହୁଏ ।

ବସ୍ତୁ ଗୋଟିଏ । ମାତ୍ର ଦେଖିବାର ଭଙ୍ଗୀ ଭିନ୍ନ ଭିନ୍ନ । ଏଇ ଭିନ୍ନତାହିଁ ସ୍ୱତନ୍ତ୍ରତା । ସୀମା ମଧ୍ୟରେ ଅସୀମକୁ ଦେଖିବା ଆନନ୍ଦର ଉଦ୍ଦେଶ୍ୟ । କବିତାର ଜଗତରେ ତେଣୁ ସସୀମ /ଅସୀମ, ସମ୍ଭବ /ଅସମ୍ଭବ ସବୁ କିଛିର ପରିଚୟ । କବିସୂର୍ଯ୍ୟଙ୍କ ପ୍ରେୟସୀ କାଳିକୋଇଲି 'ଚନ୍ଦ୍ରକଳା' କେଳିକଳା ପ୍ରବୀଣା ଅପୂର୍ବ ସୁନ୍ଦରୀ ହୋଇପାରେ । ବୋଦ୍‌ଲେୟାରଙ୍କ ପ୍ରେମିକା ଜନ୍ମାନ୍ତରୀଣ ଜ୍ୟୋତିର୍ମୟୀ ହୋଇପାରେ । ଦାନ୍ତେ, ମିଲ୍‌ଟନଙ୍କ ହାତରେ ନାରକୀୟତା ଅପୂର୍ବ ଶ୍ରୀ ଲାଭକରେ କବି କଳ୍ପନାର ଅଦ୍ଭୁତ ଶକ୍ତି ବଳରେ । କମଳାକାନ୍ତ ଏହାର ସ୍ୱୀକୃତି ନିଜ କବିତାରେ ଦେଇନ୍ତି । "କାହ୍ନି ମଞ୍ଜିଠାରୁ ବଳି /କାଳୀ ଓ ଜାମ୍ବୁଷ ଝିଅକୁ /ଭଲ-ପାଇବା ପାଏ/ ପ୍ରେମ କରିବା କବିତାକୁ /ତେଣୁ ମୋ ଦେଇ /କବିତା ହୁଏ ନା : କବି ନା ଜାଣେ କିଛି /କବିତା ନା ଜାଣେ କବି /ଗଢ଼ ନା ଜାଣେ ନଷ୍ଟ ।"

(ନିତ୍ୟ ନୂତନ - ପୃ. ୩୪) ବସ୍ତୁନିଷ୍ଠ ଦୃଷ୍ଟିଭଙ୍ଗୀ ମାଧ୍ୟମରେ କବି ନିଜ କବିତା ପ୍ରତି ଆତ୍ୟନ୍ତିକ ଶ୍ରଦ୍ଧାର ପରିଚୟ ଦେଇଛନ୍ତି ଓ ତନ୍ମଧ୍ୟସ୍ଥ ଅଶୁଭ, ଅସୁନ୍ଦରର ମର୍ଯ୍ୟାଦାକୁ ଅସ୍ୱୀକାର କରି ନାହାନ୍ତି ।

ପ୍ରାଚ୍ୟ ଓ ପାଶ୍ଚାତ୍ୟ ଜଗତରେ ଭରତମୁନିଙ୍କଠାରୁ ଆରିଷ୍ଟଟଲଙ୍କ ପର୍ଯ୍ୟନ୍ତ ସାହିତ୍ୟର ଗତି ପ୍ରକୃତିନେଇ ବହୁବିଧ ଆଲୋଚନାର ସୂତ୍ରପାତ ହୋଇଛି । ଭାରତର ପ୍ରାଚୀନ ଅଳଙ୍କାରବାଦୀମାନେ ଓ ଅର୍ଥାଳଂକାର ଶବ୍ଦାଳଙ୍କାର ପ୍ରୟୋଗର ଚମତ୍କାରିତା ଦେଖାଇ କବିତାର ପ୍ରୟୋଜନବୋଧକୁ ସନ୍ତୁଷ୍ଟ କରୁଥିବାବେଳେ ରୀତିବାଦୀମାନେ କହିଛନ୍ତି— କବି, ବିଷୟର ସାକ୍ଷାତ୍କାର ଘଟାଏ ନାହିଁ, ଘଟାଏ ଆନନ୍ଦସ୍ୱାଦ୍ୟ ପଦ ସଂଘଟନା । କୁନ୍ତକ ବକ୍ରୋକ୍ତିକୁ କାବ୍ୟର ଆତ୍ମାରୂପେ ପ୍ରତିଷ୍ଠା ଦେବାକୁ ନାନାପ୍ରକାର ଯୁକ୍ତି ଉପସ୍ଥାପନ କଲେ । ରସବାଦୀମାନେ ସ୍ଥାୟୀ ଭାବକୁ ଉଦ୍ଦୀପ୍ତ କରି ରସ ସୃଷ୍ଟି ଉପରେ ଗୁରୁତ୍ୱ ଦେଇ ଗଲେ । ଆନନ୍ଦବର୍ଦ୍ଧନ ପ୍ରଭୃତି ଧ୍ୱନିବାଦୀମାନେ ବ୍ୟଞ୍ଜନାକୁ କାବ୍ୟର ପ୍ରଧାନ ଲକ୍ଷଣ ବୋଲି ଯୁକ୍ତି କଲେ । ଆବେଗବାଦୀମାନେ କହିଲେ, ବସ୍ତୁ ବା ରୂପର ଉପସ୍ଥାପନା ସାହିତ୍ୟ ନୁହେଁ । ସାହିତ୍ୟ ହେଉଛି, ବସ୍ତୁ ଓ ଭାବକୁ ଅବଲମ୍ବନ କରି ସାହିତ୍ୟିକର ନିଜସ୍ୱ ଭାବାବେଗକୁ ପ୍ରକାଶ କରିବା ଏବଂ ରସିକର ଭାବାବେଗକୁ ଚରିତାର୍ଥ କରିବା (୩) ଶ୍ରୀ ଲେଙ୍କା ଏ ସବୁ ଶାସ୍ତ୍ରୀୟ ବିତର୍କ ଭିତରକୁ ପ୍ରବେଶ କରିନ୍ତି ନାହିଁ । କିନ୍ତୁ ତାଙ୍କ କବିତାରେ ଏସବୁ ଲକ୍ଷଣ ଖୋଜି ବାହାର କରିବା ଅସମ୍ଭବ ନୁହେଁ । ତେବେ ତାଙ୍କର ମୂଳ ଲକ୍ଷ୍ୟ ହେଉଛି, ଆନନ୍ଦ ସୃଷ୍ଟି (ରସ ଚେତନା ଓ ଭାବ ଚେତନା ଦୃଷ୍ଟିରୁ) । ଏଥିପାଇଁ ସେ କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ସମ୍ପ୍ରଦାୟର ମତକୁ ଗ୍ରହଣ କରିନେଇ ପାରି ନାହାନ୍ତି । ଆରିଷ୍ଟୋଟଲଙ୍କ 'Poetics' ଭାଷାରେ କହିବାକୁ ଗଲେ ଶ୍ରୀ ଲେଙ୍କାଙ୍କ କବିତା ହେଉଛି ଗୋଟାଏ 'aesthetic whole' । ଅନୁଭୂତି ଓ ଆବେଗର ସୌନ୍ଦର୍ଯ୍ୟାତ୍ମକ ପ୍ରକାଶ ।

''ଆହା ଲୋ ନିରମାଖୀ ଅଳଏସା ଜହ୍ନର ଆରଶି ।
ବାରେ ମୋର ବୋଲ ମାନ । ପ୍ରୀତିକୁ ସେ ଡର ମରି କରେ ଲୋ କୁହାର ।
ସେ ପୁଣି କଅଣ କରେ ଜାଣିଚୁଟି ! ଗୋଡ଼ ଟିପି, ଲୁଗା ଟିପି
ଟିପି ତାର ନିଃଶ୍ୱାସ ଓ ଆଖି —କାନରେ ଦେଖେ ଓ ଶୁଣେ,
ଦେହରେ ଦେହକୁ ଭିଡ଼ି ବୁଝାଇଲେ। ବିଶ୍ୱନାର ମାନେ ।
ବୁଝେ ସେ ବିଶ୍ୱିତ ପୃଥ୍ୱୀ । ବିସ୍ମିତ ବି ମେଘଭରା ଆକାଶ ଓ
ନରଷାର ଫୁଲ ଫୁଟା ଲୁହର ଫଗୁଣେ ।''

(ମାନଭଙ୍ଗ—ସ୍ମରଣ-ବିସ୍ମରଣ)

---

୩ । ନନ୍ଦୀ, ସୁଧୀରକୁମାର—ନନ୍ଦନ ତତ୍ତ୍ୱ—ପୃ, ୧୫୦ ।

କବିଙ୍କର ଜୀବନାଦର୍ଶ ଓ ଜୀବନବାଦ ଏହାଦ୍ୱାରା ନିର୍ଦ୍ଧାରିତ । ସମସ୍ତଙ୍କର ବୋଧଗମ୍ୟ ଗୋଟାଏ ଅର୍ଥ ଏଥିରୁ ବାହାର କରାଯାଇପାରେ । ମାତ୍ର କେଉଁ ମନୋଭୂମି କବିଙ୍କୁ ଏଇ ରଚନା ପାଇଁ ପ୍ରେରଣା ଦେଇଥିଲା ଏବଂ କବିଙ୍କର ମାନସିକ ସ୍ଥିତି ତାହାକୁ କପରି ଭାବରେ ଗ୍ରହଣ କରିଥିଲା, ବୁଝିବା ସାଧାରଣ ପାଠକ ପକ୍ଷରେ, ଏପରିକି ସମାଲୋଚକଙ୍କ ପକ୍ଷରେ କଷ୍ଟକର । ଏଠି ଶବ୍ଦଗୁଡ଼ିକ ଠିକ୍‌ଭାବେ କମ୍ୟୁନିକେଟିଭ୍ ବା ସଞ୍ଚରଣଶୀଳ ହେବା ଅସମ୍ଭବ । ପାଠକର ବାହାରେ କବିଙ୍କର ଏଇ ରହସ୍ୟମୟ ଜଗତ ସବୁବେଳେ ରହସ୍ୟମୟ ହୋଇ ରହିଯାଏ । ,ତେଣୁ ପାଠକ, ସମାଲୋଚକ ନିଜର ଗୋଟିଏ ରସଜଗତ ନିର୍ମାଣ କରିବା ଆବଶ୍ୟକ ହୁଏ, ଯାହାକୁ ଭିତ୍ତି କରି ସେ କବିକୁ ବୁଝିବାକୁ ଚେଷ୍ଟା କରେ । ଶ୍ରୀ ଲେଙ୍କାଙ୍କ ବହୁତ କବିତା ଏହାର ସଫଳ ଦୃଷ୍ଟାନ୍ତ । ତାଙ୍କ କବିତାର ଅନୁଭବ ଏକାନ୍ତଭାବେ ବ୍ୟକ୍ତିଗତ, ତେଣୁ ଶବ୍ଦଚୟନ, ବିଷୟବସ୍ତୁର ସଂଯୋଜନର ବ୍ୟକ୍ତିଗତତା ନେଇ ସନ୍ଦେହ ପ୍ରକାଶ କରିବାର କୌଣସି କାରଣ ନାହିଁ । ଏଇ ବ୍ୟକ୍ତିଗତ ଅନୁଭୂତି ଓ ଭାଷା ମାଧ୍ୟମରେ ବିଷୟବସ୍ତୁକୁ ସାର୍ବଜନୀନ କରିଦେବାରେ କବି କୌଶଳର ଚମତ୍କାରିତା । ସୁତରାଂ ଏଇ କବିତାର ଆଲୋଚନା ସବ୍‌ଜେକ୍‌ଟିଭ୍ ହେବାକୁ ବାଧ୍ୟ । 'ନାସ୍ତି' କବିତାଟିକୁ ଏଇ ପ୍ରସଙ୍ଗରେ ଗ୍ରହଣ କରାଯାଇପାରେ ।

"ଅନ୍ୟଥା /ଏପରି ଭାବିବା ଠିକ୍ : ତୁମେ ମୋ ପାପ ପୁଣ୍ୟର ନିର୍ଦ୍ଧାରିତ /ଅଧିବାସ । ଆତ୍ମ ପ୍ରକାଶର /ନିଷ୍କପଟ ଗୋପନୀୟତା ! ମୋ/ ଅସ୍ଥିର ପ୍ରତ୍ୟୟର ପ୍ରଥମ ଓ ସର୍ବଶେଷ /ସମ୍ବୋଧନ, କବିତା, ତୁମେ ନାସ୍ତି ।"

(ନିତା ଅନ୍ଧା କାନ୍ଥର ଛବି—)

ମାତ୍ର ମଣିଷର ଏଇ ବ୍ୟକ୍ତିଗତ ଅନୁଭୂତିର କଥା ଓ ଶବ୍ଦାର୍ଥ ବ୍ୟଞ୍ଜନାର କଥା ସାଙ୍ଗେ, ଅସ୍ୱୀକାର କରନ୍ତି (୪) କବି ଶ୍ରୀ ଲେଙ୍କାଙ୍କର ଏଥିରେ ସାହିତ୍ୟିକ ମର୍ଯ୍ୟାଦା କ୍ଷୁଣ୍ଣ ହେବାର କୌଣସି କାରଣ ନାହିଁ । ସାହିତ୍ୟ କମିଟେଡ୍ (Committed) ହେବାକୁ ବାଧ୍ୟ ବୋଲି ଯାଙ୍କେ, ଯାହା କହନ୍ତି, ଶ୍ରୀଲେଙ୍କା ତା' ସହ ଏକମତ ହୋଇ ପାରିବେ ନାହିଁ । କିନ୍ତୁ କମଳାକାନ୍ତ ଜୀବନ ପ୍ରତି କମିଟେଡ୍, ମାତ୍ର ସାହିତ୍ୟକୁ କମିଟ୍‌ମେଣ୍ଟ ରୂପେ ଗ୍ରହଣ କରି ପାରିନାହାନ୍ତି । କମିଟେଡ୍ ହେବା ଦ୍ୱାରା କବିର ସ୍ୱାଧୀନତା ଖର୍ବିତ ହୋଇଯାଏ । ଶ୍ରୀ ଲେଙ୍କା ଏଥିପାଇଁ କୌଣସି ସର୍ତ୍ତ ରଖିବା ପାଇଁ ରାଜି ନୁହନ୍ତି । ସର୍ତ୍ତ ହୀନତା ତାଙ୍କ କବିତାର ପ୍ରଥମ ସର୍ତ୍ତ । ନିଜସ୍ୱ ଜୀବନଧାରା ତାଙ୍କ କବିତା ପାଇଁ ଏକମାତ୍ର ପ୍ରେରଣା । ଯାହା ତାଙ୍କ ଅନୁଭବର ପରିସରଭୁକ୍ତ, ତାହା ତାଙ୍କର କବିତାଭୁକ୍ତ । ସେ ଅନୁଭବ ସହ ଆଉ କାହାର

୪ । ଉତ୍ସବ—ପୃ. ୧୪୮ ।

ଅନୁଭବ ମିଳୁ ବା ନ ମିଳୁ କବି ସେଥିପାଇଁ ଆଦୌ ଚିନ୍ତିତ ନୁହନ୍ତି । ତେଣୁ ଶ୍ରୀ ଲେଙ୍କାଙ୍କ କବିତା ଜୀବନବିକାଶ ଉପରେ ପ୍ରକୃତି ମୂଳକ ନିବିଡ଼ ଅନୁଭବ ଦେବାରେ ସମର୍ଥ । ମୋର ବିଶ୍ୱାସ, କବି ସାମାଜିକ ଜୀବନରେ ଯେଉଁ ସବୁ ସ୍ତର ଅତିକ୍ରମ କରିଛନ୍ତି, ସେସବୁ ଅବସ୍ଥାର ଏକ ଏକ ଭାବାତ୍ମକ ଶିଳ୍ପରୂପ ତାଙ୍କ କବିତା । ଜନ୍ ରସ୍କିନ୍ଙ୍କ ଭାଷାରେ—"The greatest thing a human soul ever does in the world is to see something and tell what it saw in plain way. To see clearly is paoery, prophesy and religion all in one." (Modern painters) । ସେଇଁ କବିତା ଏଣ୍ଡ ସଙ୍ଗୀ ଓ ପାଣ୍ଡୁସରକୁ ଯଦି 'କାବ୍ୟମଣ୍ଡଳର ଅନ୍ତର୍ଭୁକ୍ତ କରି ଧାରିଲା, ତାହାଇଁ ସତ୍ କବିତା । ସହଜ ଭାବରେ ସହଜ କଥା ଶୁଣେଇ ଦେବା କମଳାକାନ୍ତଙ୍କ କବିତାର ଉଦ୍ଦେଶ୍ୟ ନୁହେଁ । ତେଣୁ ସ୍ୱାଭାବିକ ଭଙ୍ଗୀକୁ ଅତିକ୍ରମି ଯିବା ପାଇଁ ଦରକାର ବ୍ୟଞ୍ଜନା ଓ କଳ୍ପନା । 'ନିରୁଦ୍ଦିଷ୍ଟ ବ୍ୟକ୍ତି ସମ୍ପର୍କରେ' ଏ ଦୃଷ୍ଟିରୁ ଏକ ଚମତ୍କାର କବିତା । ନିରୁଦ୍ଦିଷ୍ଟ ବ୍ୟକ୍ତି ଜଣକ ହେଉଛନ୍ତି ଈଶ୍ୱର, ଯାହାଙ୍କର ସନ୍ଧାନ ଗାଁ ଗଣ୍ଡା, ସହର, ଦେଶ ଦେଶାନ୍ତରରେ ମିଳିବା କଷ୍ଟସାଧ୍ୟ । ନାଟକୀୟ ବିନ୍ୟାସ ମାଧ୍ୟମରେ କବି ଚମତ୍କାର ସୌନ୍ଦର୍ଯ୍ୟ ଚେତନା ଭିତରେ ପାଠକଙ୍କୁ ବୁଡ଼ାଇ ଦେଇଛନ୍ତି ।

"କିଏ ଅଛ ଦାସ ଦାସୀ, ମଣିବାସ୍ସ ନଅଲେ ଖବର ।
ସାମ୍ପ୍ରତିକର ନିଖୋଜ ଲୋକର ନାମ ଧାମ, ଗାଁ ଗଣ୍ଡା,
ସହର ଓ ଦେଶ ଦେଶାନ୍ତର ।"

(ନିରୁଦ୍ଦିଷ୍ଟ ବ୍ୟକ୍ତି ସମ୍ପର୍କରେ)

ବହୁତ ଖୋଜିଲା ପରେ ସେ ଯେଉଁ ଈଶ୍ୱରଙ୍କ ସନ୍ଧାନ ପାଇଛନ୍ତି ସେ ସୁନ୍ଦର ସୌମ୍ୟ ମୂର୍ତ୍ତି ନୁହନ୍ତି । ସପ୍ତଫେଣୀ ଚଦର ଘୋଷ୍ଟି ହୋଇ ସେ ଯନ୍ତ୍ରଣା କାତର । କବିଙ୍କ ଭାଷାରେ—

ବର୍ତ୍ତମାନ ସମ୍ବାଦ ମିଳିଲା, ସେ ଶୋଇଛି
ଅଚେତ ନିଦରେ । ଶିମୁଳି ଗଛର ଡାଳେ ।
ସପ୍ତଫେଣୀ ଚଦର ଘୋଡ଼ାଇ ଦେଇ ପରିଯନ୍ତେ । ଓ
ନାନାଜାତି ଫୁଲର ବର୍ଣ୍ଣଣା ଧରି ହାଓ୍ୱା କରେ
ପ୍ରୀତିର ସୁବର୍ଣ୍ଣ ଓ ସବୁ ସବୁ ତୁମାର ଶବଦ ଶୁଭେ ।
ବର୍ତ୍ତମାନ ତା ପାରୁଣେ ଠିଆ ହୋଇ ଦାଏ କରତାଳି ।
'ମୋ ସହିତେ ନଗ୍ନ ଜନେ, ଦାସୀ ପରିବାସ୍ସ ।।"

( କବିତାର ମୂହୁଁ )

'କଳା କାହ୍ନୁ' କବିତାର ନୂତନ ବିଶ୍ଳେଷଣ ପାଠକଙ୍କୁ ମଧ୍ୟ ଏକ ନୂତନ ସୌନ୍ଦର୍ଯ୍ୟଲୋକର ସନ୍ଧାନ ଦିଏ । 'କଳା'-'କାହ୍ନୁ' -ପ୍ରେମ ଓ ଆଧ୍ୟାତ୍ମିକତାର ମିଳନ ବିନ୍ଦୁ, ଆଧୁନିକ ଜୀବନର ଏକ 'ନିର୍ଭୁଲ ଖିଅଡ଼ା' । ଜୀବନର ଗତାନୁଗତିକତାରୁ ମୁକ୍ତି ଖୋଜେ କଳା, କଳାକାର ମଧ୍ୟ । ସବୁ ବିଡ଼ମ୍ବନା ମଧ୍ୟରେ କାହ୍ନୁ ବଂଶୀ ଫୁଙ୍କେ, କବି ଲେଖେ କବିତା । କାରଣ କଳାକାରର ଏହା ଅସ୍ଥି ମଜ୍ଜାଗତ । ଶ୍ରୀ ନେଙ୍କା କବିତାର ପ୍ରାରମ୍ଭରେ ଯେଉଁ ରମଣୀୟତାର ପରିବେଶ ସୃଷ୍ଟି କରିଛନ୍ତି, ତାହା ଏହିପରି :

"ହେ କଳା କାହ୍ନୁ ; ଜହ୍ନ ରାତର ଉଦାସ ନିଶ୍ୱାସ
କଅଁଳ ଆଖି କେମିତି ମୁଦି ହୋଇ ଆସୁଚି ଅଣ୍ଡା ପବନରେ,
ମବନର ଭିଜା ରୁମାଲରେ, ବାସ୍ନା ଭିଜା ଫୁଲର
ସୋହାଗ ମଖା ଓଲଟିରେ । ମନୁଆଁ, ମନମତାଣିଆ;
ଟାଆଁସା ଚୁଲିଆ, ଖିଆଲି, କାହୁଆ : "

( ସ୍ରୋତର ନାମ ରୁତ )

ସହଜ କଥାକୁ କବି ବଙ୍କେଇ କହିବାରେ ଯେତେ ଅଭ୍ୟସ୍ତ, ସେ ସେତେ ସଫଳ କବି । ରସାପ୍ଳୁତ ହୋଇ ଉଠେ ସାଧାରଣ କଥା । ଆକାଶରେ ଜହ୍ନ ଉଠିଛି, ମେଘ ଜହ୍ନକୁ ଢାଙ୍କି ଦେଉଛି, ନଈ ବହୁଛି ନ କହି ସେ କହନ୍ତି — "ମେଘର ପଲସ୍ତରା ଦିଆ ଆକାଶ କେମିତି ଫେରାଇ ଦିଏ /ଜହ୍ନ ରାତର ଧସ୍ତାଧସ୍ତି ଦୁଃଖକୁ ?" ଅଥବା "କେମିତି ଉଚ୍ଛନ୍ନା କରି /ମୁହଁ ମୋଡ଼ି ଫେରିଯାଏ /ଆପଣାର ଛେଉରର ଗର୍ଭକୁ ?" (କଷ୍ଟୁରି ଖଣ୍ଡ —ସ୍ରୋତର ନାମ ରୁତ) । 'ସୁନାଫସଲ', ପ୍ରୀତି ଓ ପ୍ରତୀତି'ରେ କବିଙ୍କର ସୌନ୍ଦର୍ଯ୍ୟ ଚେତନାର ଏପରି ପ୍ରସାରିତ ଦିଗ୍‌ବଳୟ ଦୃଷ୍ଟିଗୋଚର ହୋଇ ନ ଥିଲା । କିନ୍ତୁ ଟା ପାରଂପରିକ ଭଙ୍ଗୀରେ ଏସବୁ କବିତାର ଭାବମଣ୍ଡଳ ଗଢ଼ି ଉଠିଥିଲା । 'ସୁନାଫସଲ'ର 'ରାମିଆର ସଂସାର', 'କଥାଟିଏ', 'ଆତ୍ମନେପଦୀ' ଏବଂ ପ୍ରୀତି ଓ ପ୍ରତୀତି'ର 'ତମେ ଯଦି ଦେଖା ହୁଅ', 'ଫୁଲ', 'ଭସା ମେଘ' ଆଦି କବିତା ଏହି ପ୍ରସଙ୍ଗରେ ସ୍ମରଣୀୟ । 'ଉଦ୍ଧରଣ'ରେ କବି ସୌନ୍ଦର୍ଯ୍ୟ ସଚେତନ । ବିକ୍ଷିପ୍ତ ଚିନ୍ତା ଓ ଅନିର୍ଦ୍ଦେଶ୍ୟ ଆକୁଳତା ଏହାର ସୌନ୍ଦର୍ଯ୍ୟ ସୃଷ୍ଟି ପାଇଁ ଦାୟୀ । କବିଙ୍କର ରୋମାଣ୍ଟିକ୍ ଦୃଷ୍ଟି ଚିରକାଳ ପ୍ରକାଶ-ଭଙ୍ଗୀକୁ ଗ୍ରହଣ କରି ନେଇଥିଲେ ବି ବାସ୍ତବତାର ଉପସ୍ଥାପନ ଏବଂ ଚିତ୍ରକଳ୍ପର ଦକ୍ଷ ଓ ସୁନ୍ଦର ପ୍ରୟୋଗ କମଳାକାନ୍ତଙ୍କ କବିତାରେ ଯେପରି ପ୍ରତିଫଳିତ ତାହା କ୍ୱଚିତ୍ ଆଧୁନିକ କବିତାରେ ଦେଖିବାକୁ ମିଳେ । ପାଠକ ବା ଶ୍ରୋତା କବିତାଟିଏ ଶୁଣିଲେ ଯଦି ଖୁସି ହୋଇଯାଏ, ତେବେ ତାହା ସେ ସୌନ୍ଦର୍ଯ୍ୟମୁଗ୍ଧ, ଏକଥା ବୁଝିବାରେ ଅସୁବିଧା ରହେ ନାହିଁ । କାରଣ ପାଠକର ଭଲ ଲାଗିବାରେ ସୌନ୍ଦର୍ଯ୍ୟ-ଚେତନା ରହିଛି ।

କମଳାକାନ୍ତ ଜୀବନର ମୁହୂର୍ତ୍ତଗୁଡ଼ିକୁ ସଦୁପଯୋଗ କରିଛନ୍ତି କବିତାର ଚିତ୍ର ନିର୍ମାଣରେ । ଯେଉଁ ମୁହୂର୍ତ୍ତରେ ସେ ସୃଷ୍ଟି ସୁଖର ଉଲ୍ଲାସରେ ଉନ୍ମତ୍ତ ସେତେବେଳେ କବିତା ସ୍ୱତଃ ସୌନ୍ଦର୍ଯ୍ୟବାହୀ । ସକାଳୁ ଆଖି ମିଟିକାଇଲେ କବି ଦେଖନ୍ତି ଆନ୍ତରିକର ଉଚ୍ଛ୍ୱାସ, କିନ୍ତୁ ଏ ଜଗତର ଆନ୍ଦୋଳନଠାରୁ କବିର କାବ୍ୟାନ୍ଦୋଳନ ସ୍ୱତନ୍ତ୍ର । ପୃଥିବୀର ରୂପରସଠାରୁ କବିର ବ୍ୟବଧାନ ଅନେକ । ଏଇ ବ୍ୟବଧାନରୁ କଳ୍ପନା । କବିଙ୍କ ଭାଷାରେ ତାହା ସୁନ୍ଦର : "କଞ୍ଚା ବୟସର ବର୍ଷାଦିନେ /କିଏ ଜାଣିଥିଲା ଦେବୀ ଦେଖିଲେ ସ୍ୱପ୍ନ /କୁଳବଧୂଙ୍କ ପରି ଛିଡ଼ିଏ କବେ : ପବନ /ଏମିତି ନଇଁ ପଡ଼ୁ ଚୋରା ଜଣାଥିଲେ /କହୁଥାନ୍ତି ଶୀତକୁ ଯେ ଧାନକ୍ଷେତ/ର ଝୋଡ଼ରୁ ଝଡ଼ାଇ ଦେଉଥାନ୍ତା ଫୁଲ /ଗୋଟେ ବଉଁଳ, ଖେଳ ଶିଖୁଥିବା, /ଓଠ ଖୋଲୁଥିବା, ଉଡ଼ ଉଡ଼ିକା ଡେଣା /ଲଟପଟ ହେଉଥିବା ଚଢ଼େଇ କହନ୍ତା : ପବନ /ସେ ଗୀତମୟ କହୁଥାଇ ଯାଏ ସାଦ୍‌ନା /ଜଙ୍ଗଲର ଅଭେଦ ରହସ୍ୟ ।"

( ଛନ୍ଦ୍ୟ ନିସ୍ପୃମିତ — ପୃ. ୪ ) ।

ଶ୍ରୀ ନେଙ୍କାଙ୍କ କବିତାରେ ଆମେ ଯେଉଁ ଛବି ଦେଖି ମୁଗ୍‌ଧ ହେଉ, ତାହାକୁ କୌଣସି ମାନ କାଠିରେ ତଉଲିବା ବା ମୂଲ୍ୟାୟନ କରିବା ଅସମ୍ଭବ ସୌନ୍ଦର୍ଯ୍ୟତତ୍ତ୍ୱ ଦୃଷ୍ଟିକୋଣରୁ ତାଙ୍କ କବିତାକୁ ବିଚାର କଲାବେଳେ ସବୁବେଳେ କବିତା ଭିତରୁ ଦିଶେ ଗୋଟାଏ ଗମ୍ଭୀର ଅଥଚ ଯୁକ୍ତିସିଦ୍ଧ ଦାର୍ଶନିକ ରୂପ । କବିଙ୍କର ଇନ୍ଦ୍ରିୟଗତର ଗମ୍ଭୀରତା ଏଥିରୁ ଅନୁମିତ । ସୃଜନଶୀଳତାର ବୋଧହୁଏ ଏହା ସ୍ୱଭାବ ଧର୍ମ । ତେଣୁ କଳ୍ପନା ଶକ୍ତି, ସୌନ୍ଦର୍ଯ୍ୟବୋଧ ଭିତରକୁ ଅସୁନ୍ଦରର ପ୍ରବେଶ ଘଟେ । ତାହା ମଧ୍ୟ କବିତାକୁ ସାର୍ଥକ କରିଦିଏ । ସୁସମାଲୋଚକ ଅଧ୍ୟାପକ ଦାଶରଥି ଦାସ କହନ୍ତି— "କୁତ୍ସିତତା ସୌନ୍ଦର୍ଯ୍ୟର ଅନ୍ୟ ଏକ ଦିଗ । ଆଧୁନିକ କବିଏ ଜୀବନ୍ତ ସୌନ୍ଦର୍ଯ୍ୟ ପ୍ରତି ସଚେତନ ଥିବାରୁ କୁତ୍ସିତତାର ଯନ୍ତ୍ରଣା ଭୋଗୁଛନ୍ତି । ପ୍ରାଣରେ ଅଖଣ୍ଡ ସୌନ୍ଦର୍ଯ୍ୟାନୁଭୂତି ପୋଷିଥିବାରୁ ଜଗତ ଓ ଜୀବନର ପ୍ରତ୍ୟକ୍ଷ ବୀଭତ୍ସତାକୁ ଭେଟୁଛନ୍ତି (୫) ସୁନ୍ଦର ଭିତରେ ଅସୁନ୍ଦରର ପ୍ରବେଶ ପ୍ରଥମ କରି ଦେଖାଦେଇଥିଲା ସଚ୍ଚିଦାନନ୍ଦଙ୍କ କବିତାରେ । କମଳାକାନ୍ତଙ୍କ କବିତାରେ ଅଶୁଭର ପ୍ରବେଶ ମୃତ୍ୟୁର ନୀଳ ନିର୍ଜନ ଗୁହା ଦ୍ୱାରା ଆକ୍ରାନ୍ତ !

"ତୁମେ ମନେ ପଡ଼ୁ ନାହିଁ ତ ! ମନର ସାବ୍‌ନା ତଥା/
ଭୂଇଁ ଉପରେ ନହରାଇ ଦଉଡ଼ୁ /କଲ୍‌ଖାନାକୁ ଯାଉଥିବା/
ହଡ଼ା ନଷ୍ଟର ଗ୍ରାଇ, ଦରମଲା କୁକୁରକୁ /ଘୋଷାରି ଘୋଷାରି
ନେଉଥିବା /ମ୍ୟୁନିସିପାଲିଟି ମେହେନ୍ତରର କାର୍‌କାଟିଆ /ଝାଳୁଆ
ମୁହଁର ଦୃଶ୍ୟ ।"

(ଅନୁଶାସନ — ଶନିବାର ବେଳ)

---

୫। ଦାସ, ଦାଶରଥି— ଆଧୁନିକ ଓଡ଼ିଆ କବିତାର ସୌନ୍ଦର୍ଯ୍ୟଚେତନା— ଝଙ୍କାର, ଜ୍ଞାନସ୍ୱାଗ୍ର— ୧୯୭୯ ।

ବେଶ୍ୟାପଡ଼ାର ଦୁର୍ଗନ୍ଧ, କାଳକୋଡ଼ଗ୍ସ ଝିଅର ପ୍ରେମ, ବଉଦ ଡଙ୍କା ସୂର୍ଯ୍ୟ ତାଙ୍କ ପ୍ରସାରିତ କାବ୍ୟର ସୌନ୍ଦର୍ଯ୍ୟର ପ୍ରକୃଷ୍ଟ ପରିଚୟ । ନଈର ଢେଉ, କାଚଧାର ପାଣି, ସମୁଦ୍ରର ଉଚ୍ଛଳତା, ମାଛର କାତ, କଙ୍କି ଫୁଲିଆ ଜହ୍ନ, ଶାମୁକାର ଖୋଲ, ଗୁଣ୍ଡୁଚିର ଖେଳ ଭିତରୁ ସ୍ୱାଭାବିକ ସୌନ୍ଦର୍ଯ୍ୟବୋଧ ଉଦ୍ଭାସିତ ହୋଇଥିଲାବେଳେ ମଦ ଭାଟିର ଗନ୍ଧ, ନାସ୍ତିକ ନାଟକୀୟ ନାରକୀୟତା, ଝାଙ୍କୁଆ ପଣତ କାନିର ଧଙ୍କ ସୌନ୍ଦର୍ଯ୍ୟମୟୀ ଝିଅଟିର ପ୍ରତିକୃତିକୁ ଏବଂ ତାର ସ୍ୱଚ୍ଛନ୍ଦ ବିଚରଣଭଙ୍ଗୀ ତାଙ୍କୁ ସ୍ମରଣ କରାଇ ଦିଏ । ସବୁ ଅନୁଭୂତ କବି ତୂଳୀରେ ସୌନ୍ଦର୍ଯ୍ୟମୟ, ଆନନ୍ଦମୟ, ହୋଇ ଉଠେ । ତେବେ ଏ ସୌନ୍ଦର୍ଯ୍ୟସତ୍ତାର ସ୍ଥିତି କେଉଁଠି ? ସୌନ୍ଦର୍ଯ୍ୟଗ୍ରାହୀ ମନରେ ତାହା ଥାଏ ନା ବସ୍ତୁରେ ଥାଏ ? ପ୍ରକୃତରେ କୌଣସି ଗୋଟାଏ ବସ୍ତୁରେ ସୌନ୍ଦର୍ଯ୍ୟ ନ ଥାଏ, ତାହା ଥାଏ ବସ୍ତୁ ଏବଂ ମନର ସମ୍ମିଳିତ ସତ୍ତାରେ । ଯଥାର୍ଥ କବି ଏଇ ବସ୍ତୁ ଓ ମନର ମିଳନକୁ ଯେତେ ସଫଳ କରେ, ତାର କବିତା ସେତେ ରସାଣିତ ହୁଏ । ବସ୍ତୁକୁ ଛିନ୍ନଭିନ୍ନ କଲେ କିମ୍ବା ମନକୁ ଚିକିତ୍ସା କରି ଖୋଜିଲେ ଏଇ ସୌନ୍ଦର୍ଯ୍ୟସତ୍ତାର ସନ୍ଧାନ ମିଳିବା ଏକାବେଳକେ ଅସମ୍ଭବ । ସୌନ୍ଦର୍ଯ୍ୟାନୁଭୂତି ଯେତେ ନିବିଡ଼, ସୌନ୍ଦର୍ଯ୍ୟ ସୃଷ୍ଟି ସେତେ ଗଭୀର ହୁଏ । ଶ୍ରୀ ଲେଙ୍କାଙ୍କ କବିତାରେ ତଦ୍ରୂପ ଲକ୍ଷଣ ପରିଦୃଶ୍ୟ । ଅଧ୍ୟାପିକା ମୀରା ପାଣିଗ୍ରାହୀଙ୍କ ମତରେ ଶ୍ରୀ ଲେଙ୍କାଙ୍କ କବିତା ଏଇ ଦୃଷ୍ଟିରୁ କଳାତ୍ମକ : "One can place him in the line of modern poets who not only reflects the dark void and lose themselves in vain pessimistic brooding, but who can also look beyond this void to catch those "intimations of immortality" that make life meaningful." (୭)

କବିତା କଳାତ୍ମକ ହେବା ପାଇଁ ତଥ୍ୟଭିତ୍ତିକ ବା ବିବରଣାତ୍ମକ ବିଷୟ ଅବତାରଣା କରିବାର କୌଣସି ଆବଶ୍ୟକତା ନାହିଁ । ଦୃଶ୍ୟରୁ ଦୃଶ୍ୟାନ୍ତରକୁ ଗ୍ଲାଇଡ଼ିବା ହଉଛି ସବୁଜ ଓଡ଼ିଆ କବିତାର ଏକ ଲକ୍ଷଣୀୟ ବୈଶିଷ୍ଟ୍ୟ । "ମନେ ହଉଚି : ଆକାଶ ଗୋଟେ ଚଢେଇ । /ମାଟି ଗୋଟେ ଅରଣ୍ୟ : ତା' ଆଖିରୁ ଜାଗୃତ /ସ୍ୱାତୀତାନ୍ତର ଫୁଲବନ /ରସାତଳର ଶୂନ୍ୟସାଣ । ଚଉକଡରେ /ବେଢ଼ିଥିବା ଲୁହର ଫୁଲସଭା /ଗୀତର ସମୁଦ୍ର : ମନେ ହଉଚି /ଗୋଟେ ଦାରୁଣ ବସନ୍ତର /କାକୁସ୍ଥ ସାମ୍ରାଜ୍ୟ ନାରତ /ଦୁଃଖର ଇନ୍ଦ୍ରପ୍ରସ୍ଥ ।" (ନିତ୍ୟ ବିସ୍ମିତ—

---

୭ । Panigrabi, Mira —'What I Look Like'—Review—"Vision," January—March, 1982.

ପୃ.୨୨) । କବିତାର ଦୀପ୍ତିମୟୀ କଳ୍ପନା ସୌନ୍ଦର୍ଯ୍ୟଚେତନାର ମୂଳ । ଏଇ କଳ୍ପନାରେ ସତ୍ୟ ନିହିତ । ତେଣୁ କଳା ଓ କଳ୍ପନାର ଘଟେ ସମନ୍ୱୟ । ଶ୍ରୀ ଲେଙ୍କା କଳ୍ପନାର ମହାମଣ୍ଡଳକୁ ସ୍ପର୍ଶ କରିବା ପାଇଁ ଶାବ୍ଦିକ ଚମତ୍କାରିତାକୁ ଯଥେଷ୍ଟ ଗୁରୁତ୍ୱ ଦିଅନ୍ତି, ଆତ୍ମିକ ଚମତ୍କାରିତାକୁ ସେପରି ମର୍ଯ୍ୟାଦା ଦିଅନ୍ତି । କେତେକ୍ଷେତ୍ରରେ ଶବ୍ଦର ଆନୁପ୍ରାସିକ ପ୍ରୟୋଗରେ ଖଦ୍ୟୋତକ କାବ୍ୟମାନସର ଦ୍ୟୁତି ଝଟକି ଉଠୁଥିବାବେଳେ, ଅନ୍ୟ ସମୟରେ ତାହା କେବଳ ଶାବ୍ଦିକ ଆଟୋପ ଭିତରେ ବିଶ୍ରାମ ନିଏ । ଏଇପରି ଶାବ୍ଦିକ ଅନୁଗତ୍ୟ ଶ୍ରୀ ଲେଙ୍କାଙ୍କ କବିତାର ଛନ୍ଦସାଧନ କରିଥାଏ । ଡକ୍ଟର ଆନନ୍ଦ ସାହୁଙ୍କ ମତରେ—"ଉଚ୍ଚ ମାନର ଶିଳ୍ପୀ କେବେ ଭଙ୍ଗା ଦର୍ପଣ ଖାଲି ଶବ୍ଦ ଶିଳ୍ପ ଭିତରେ କାରିଗର ହୁଏ ନାହିଁ । ସାହିତ୍ୟର ସୌନ୍ଦର୍ଯ୍ୟ କହିଲେ ତାହା ଏକ ଆତ୍ମିକ ଚମତ୍କାରିତା, ଯାହାକୁ କବିପ୍ରାଣର ପ୍ରେରଣାତ୍ମକ ସଙ୍କେତ ବୋଲି ବୁଝାଯାଇପାରେ । ଗୋଟିଏ ଅଳଙ୍କାରିକ ଶବ୍ଦ ଧ୍ୱନି ଭିତରେ ହୁଏତ ସେ ଯୌକ୍ତିକ ଚମତ୍କାରିତା ନିହିତ, ଯଦି ତାହା ଆତ୍ମାର ବାଣୀ ବା ସଙ୍କେତ ଗ୍ରହଣ କରିଥାଏ । କୃତ୍ରିମ ଶାବ୍ଦିକତା ବା ଆଳଂକାରିକତାର କୌଣସି ସୌନ୍ଦର୍ଯ୍ୟ ନାହିଁ ବୋଲି ବୁଝାଯାଇପାରେ । ସେ ଆତ୍ମାର ଶିଳ୍ପୀ, ସେଥିରେ ମଣିଷର ସମ୍ପୂର୍ଣ୍ଣ ଜୀବନ ଚକ୍ର (whole human cycle) ଏକ ବିଶେଷ ପ୍ରତୀକାତ୍ମକତା ଭିତରେ ଲିପିବଦ୍ଧ ହୋଇଥାଏ ।(୨) ସେଇ ଦୃଷ୍ଟିରୁ ବିଚାର କଲେ କମଳାକାନ୍ତଙ୍କ କବିତା ଆତ୍ମାର ଉଚ୍ଚାରଣ । ପାଠକ କବିତାତ୍ମାର ଅଦ୍ଭୁତ ଜଳସ୍ତ ଭିତରେ ସନ୍ତରଣ କରିପାଏ ସ୍ୱର୍ଗୀୟ ଆନନ୍ଦ । 'ପ୍ରେମ' କବିତାର ପ୍ରଥମ ଲାଇନ୍ ଏହାର ସାକ୍ଷୀ । "ଯେଉଁଦିନ /ଶ୍ମଶାନରୁ ଫେରିବି /ତମ ଶବ ସତ୍କାର କରି /ହୁଏ ତ ମୋର ଶବ ସହ କଥାବାର୍ତ୍ତାରେ /ସାରିସାରି ବିତିଯିବ, /ହୁଏତ ସାରା ରାତିର ଅନ୍ଧାର /କଣାଯିବ /କବିତାର ପ୍ରତିମା ପରି, /ପ୍ରେମର ଜନ୍ମପରି ।।" (ଶିତା ଅଙ୍ଗ କାନ୍ଥର ଛବି : ପରିଧି ବାହାରେ ଅପେକ୍ଷାରତ ପୃଥିବୀ) । ଜୀବନଠାରୁ ପୃଥକ୍‌କରି କବିତାକୁ ଦେଖିବା ଅଜକାଲି ଆଉ ସମ୍ଭବ ନୁହେଁ । ଏକ ସମୟରେ ହୁଏତ ସୌନ୍ଦର୍ଯ୍ୟଚେତନା ଓ ଜୀବନାଦର୍ଶକୁ ଭିନ୍ନ ଭିନ୍ନ ଭାବେ ବିଚାର କରିବାର ପରଂପରା ଥିଲା । ମାତ୍ର ଶ୍ରୀ ଲେଙ୍କା ଏ ପ୍ରକାର ବୈଷମ୍ୟକୁ ତାଙ୍କ କବିତାରେ ଆଦୌ ପ୍ରଶ୍ରୟ ଦେଇ ନାହାନ୍ତି । ବ୍ୟକ୍ତିକ ଉପଲବ୍ଧି ତାଙ୍କ ସୃଜନଶୀଳତାର ଆଦ୍ୟ ପ୍ରେରଣା । ହତାଶା, ପ୍ରବଞ୍ଚନା, ବିଶ୍ୱାସଘାତକତା, ଜୀବନର ବିପର୍ଯ୍ୟସ୍ତଧର୍ମୀ ଅନୁଭୂତି ଭିତରେ ବି ବଞ୍ଚିବାର ସ୍ୱାଦକୁ ଶ୍ରୀ ଲେଙ୍କା ଆସ୍ୱାଦନ କରିଛନ୍ତି । ବହୁ ବାଧା, ବାଧକମାନଙ୍କୁ ଅତିକ୍ରମି ଯାଇଛନ୍ତି କେବଳ ସ୍ନିଗ୍ଧ ସୁରମ୍ୟ

---

୨ । ସାହୁ, ଆନନ୍ଦ—'ସାହିତ୍ୟରେ ସତ୍ୟ ଓ ସୌନ୍ଦର୍ଯ୍ୟବୋଧ—ଝଙ୍କାର, ମେ—୧୯୮୨ ।

ଦୃଷ୍ଟି ଓ ସୃଷ୍ଟି ଶକ୍ତି ବଳରେ । ବିକଶିତ ଫୁଲର ଉଲ୍ଲାସ, ଭଗ୍ନ ବାଦଲର ଲୁଚକାଳି ଖେଳ, ପୂର୍ଣ୍ଣିମା ରାତ୍ରିରେ ଆଖି କାଆଁସ ଭିତରେ ଗୁଡ଼ ରଙ୍ଗର ଉନ୍ମାଦନାର ମଧୁର ସ୍ୱପ୍ନ ମୂର୍ଚ୍ଛନା, ମଣିଷର ଚିତ୍କାର, ରାସ୍ତା କଡ଼ର ଭିକ ମାଗୁଥିବା ସର୍ବହରାର ଆକୃତି, ବନ୍ୟାରେ ସର୍ବସ୍ୱ ହରାଇଥିବା ଆର୍ତ୍ତ ମଣିଷ, ଜୀବନ ସଂଗ୍ରାମରେ ପଛେଇ ଯାଇଥିବା ମଣିଷର ବେଦନାବୋଧ ତାଙ୍କ କବିତାର ସରହଦଭୁକ୍ତ ଏବଂ ସେଗୁଡ଼ିକ ସୌନ୍ଦର୍ଯ୍ୟ ଜଗତରେ ବୈଚିତ୍ର୍ୟ ଓ ବୈବିଧ୍ୟକୁ ସୁନ୍ଦରରୂପେ ଚିତ୍ରିତ କରିଦେଇ ପାରୁଛି । କଲ୍ୟାଣ ଅକଲ୍ୟାଣ, ଶୁଭ ଅଶୁଭ, ପାପ ପୁଣ୍ୟ, ଦ୍ୱନ୍ଦ୍ୱ ଭାବ କବିଙ୍କର ସତ୍ୟଶୀଳ ସୌନ୍ଦର୍ଯ୍ୟାନୁଭୂତ ନିକଟରେ ଧରା ଦେଉଛି । ଅନେକ ସମୟରେ କଳାର ମର୍ଯ୍ୟାଦା ରକ୍ଷା ପାଇଁ କବି ବେଶ୍ ସଂଯତ ଏବଂ ଧୀରବାକ୍ । ବକ୍ତବ୍ୟ ସାଙ୍କେତିକ, ଅଥଚ ସ୍ପଷ୍ଟପୂର୍ଣ୍ଣ । 'ମୃତ୍ତିକା-ଦର୍ପଣ'ର ଅଧିକାଂଶ କବିତା ଓ 'ନିତ୍ୟ ନିସ୍ମିତ'ର ପ୍ରାୟ ସବୁ କବିତା ଏହି ପର୍ଯ୍ୟାୟଭୁକ୍ତ ହେବେ । 'ଚିତା ଅଙ୍କା ଜାନୁର ଛବି ଓ ପରିଧି ବାହାରେ ଅନ୍ୱେଷଣରତ ପୃଥିବୀ' ଏବଂ 'ଉନ୍ମୋଚନ'ର କବିତାଗୁଡ଼ିକ ମଧ୍ୟ ଏହାର ପରିସରକୁ ପ୍ରବେଶାଧିକାର ଦାବୀ କରିବେ । ଜୀବନାନୁଭୂତିର ପ୍ରତୀକାତ୍ମକ ଛନ୍ଦଳବଧିଇଁ କବିତାକୁ ନେଇଯାଏ ଏକ ସମୁନ୍ନତ ସୌନ୍ଦର୍ଯ୍ୟମୟ ସ୍ଥିତି ଆଡ଼କୁ । ସି. ଏମ୍. ବାଓରାଙ୍କ ମନ୍ତବ୍ୟ ଏଠାରେ ଯୁକ୍ତିଯୁକ୍ତ ମନେ ହୁଏ—"The statements of poetry are true not literally but symbolically." (୮) ବ୍ୟାବହାରିକ ଜୀବନର ଟିକିନିଖି ବର୍ଣ୍ଣନା ନିମ୍ନସ୍ତରର ବାସ୍ତବତା ଏବଂ ପ୍ରତୀକବାସ୍ତବତାହିଁ କଳା କ୍ଷେତ୍ରରେ ଉଚ୍ଚତର ବାସ୍ତବତା । ଶ୍ରୀ ଲେଙ୍କାଙ୍କ କବିତାରେ ଏହି ଉଚ୍ଚତର ବାସ୍ତବତାର ପ୍ରୟୋଗ ତାଙ୍କ କବିତାକୁ ଉନ୍ନତ କୋଟିରେ ପହଞ୍ଚାଇ ଦେବାକୁ ସମର୍ଥ ହୋଇପାରିଛି ବୋଲି ନିର୍ଦ୍ୱନ୍ଦ୍ୱରେ କୁହାଯାଇ ପାରିବ । ଶ୍ରୀ ଲେଙ୍କାଙ୍କ କାବ୍ୟଦୃଷ୍ଟି ସ୍ଥିତିବୃଦ୍ଧି ସମ୍ପନ୍ନ । ତେଣୁ ଗୋଟିଏ ଧାରରେ ମଧ୍ୟ କବି କହନ୍ତି—"କମଳାକାନ୍ତ ସୋଣଙ୍କ ଭିତରେ ପାହାନ୍ତ ଦେଖି ପାରୁଥିବା ନିର୍ଦ୍ଦୋଷ ଅପାରଗତା, ଶିଶୁତ୍ୱ ଭିତରେ କବି ଓ ଈଶ୍ୱରଙ୍କ ସାମିଲ୍ କରି ମୁକ୍ତ ହୋଇ ଯାଉଥିବା ଗୋଟେ ନିର୍ଭୀକ କାର୍ଯ୍ୟକତା ।" (୯) କବିତ୍ୱ ପାଇଁ ନିର୍ଭୀକ ଅପାରଗତାହିଁ ଏକ ଆବଶ୍ୟକତା । ସମାଜରେ ଆତଯାତ ହେଉଥିବା ପାଗଳର ମଣିଷଠାରୁ କବି ସେ ନିରାପଦ ଦୂରତ୍ୱ ବଜାୟ ରଖିଥାଏ, ଏହା କହିଲେ ବୋଧହୁଏ, ଭୁଲ୍ ହେବ

୮ । Bowra, C. M.—The Romantic Imagination, Oxford University Press—1950.

୯ । 'ଝିପା'— କେନ୍ଦ୍ରୀୟ ଛାତ୍ରାବାସ, ଭଦ୍ରକ କଲେଜର ମୁଖପତ୍ରରେ ଶ୍ରୀ ଲେଙ୍କାଙ୍କ ସାକ୍ଷାତକାର, ଊନବିଂଶ ସଂଖ୍ୟା—୧୯୮୫-୮୬ ।

ନାହିଁ । କବିଙ୍କର ଏଇଥିରେ ବିଶ୍ୱାସ ଥାଏ ବୋଲି ସେ ତାଙ୍କର ସ୍ୱଚ୍ଛନ୍ଦରୁ ଧରି ବସିଥିବା ହୋଇ ପାରନ୍ତି । ଫୁଲରୁ ଯାହା ବାହାରିଲା ତାହା ହେଲା କବିର ବାର୍ତ୍ତା, ହୃଦୟର ପ୍ରାଣପ୍ରବାହ । କିନ୍ତୁ ନିର୍ଦ୍ଦିଷ୍ଟ ବାର୍ତ୍ତା ଦେବାର ଅଭିପ୍ରାୟ ନେଇ ଲେଖନୀ ଧରିବା ସାମ୍ପ୍ରତିକ କବିର ମୋଟେ ଲକ୍ଷ୍ୟ ନୁହେଁ । ହୁଏତ ଅତୀତରେ ଜାତୀୟତାବାଦ ବା ଜନଜାଗରଣ ପାଇଁ ଏପରି ଲେଖାର ଆବଶ୍ୟକତା ଥିଲା । ମାତ୍ର ଶ୍ରୀ ଲେଙ୍କା ଏସବୁ ବାର୍ତ୍ତା ପାଇଁ ନିଜର ସୃଜନୀଶକ୍ତି ନଷ୍ଟ କରିବାର ପକ୍ଷପାତୀ ନୁହନ୍ତି । ସେ ଯେଉଁ ବାର୍ତ୍ତା ଶୁଣାନ୍ତି ତାହା ଆପଣାର ବାର୍ତ୍ତା, ଅନ୍ତର୍ମୁଖୀନତାର ବାର୍ତ୍ତା, ଯାହା ସହିତ ପ୍ରକୃତି ମଣିଷ ସାମିଲ୍ ହେବାର ସମ୍ଭାବନା ଅବାରିତ । ଶ୍ରୀ ଲେଙ୍କାଙ୍କ ପଦେ କଥା ଉଲ୍ଲେଖ କରିବାର ଲୋଭ ଏଠାରେ ସମ୍ବରଣ କରି ହୁଏ ନାହିଁ । ସେ କହନ୍ତି—"ଏହିସବୁ ଦୃଷ୍ଟିରୁ ବୈଷ୍ଣବ ପାଣିଙ୍କୁ ମୁଁ ବେଶି ଖାତିର୍ କରେ । ତାଙ୍କର ଗୋଟାଏ ଗୀତରୁ ଧାଡ଼ିଏ—'ହାତୀମୁହାଁ ଜଗବନ୍ଧୁ' ବଦଳରେ ମୁଁ "ଘୋଡ଼ାମୁହାଁ ଜଗନ୍ନାଥ" କହିଲେ କ୍ଷତି କ'ଣ ? କାରଣ ଜଗନ୍ନାଥେ ସମସ୍ତଙ୍କୁ ଉପରମୁହାଁ କରି ଦେଲେ । ଭିତରମୁହାଁ ହେବାକୁ ଅନ୍ତତଃ ଘଣ୍ଟାଏ ସମୟ ଦିଅନ୍ତୁ ।" (୧୦) କବି କମଳାକାନ୍ତଙ୍କ କବିତା ଅନୁଶୀଳନ କଲେ ମନେହେବ ଯେ ତାଙ୍କ କବିତାଗୁଡ଼ାକ ଘୋଡ଼ାମୁହାଁ ନୁହେଁ, ଭିତରମୁହାଁ । ସେଥିପାଇଁ ତାଙ୍କ ସୌନ୍ଦର୍ଯ୍ୟଚେତନା ବି ଭିତରମୁହାଁ । ସମସ୍ତଙ୍କ ଅଲକ୍ଷ୍ୟରେ ଅନ୍ତଃ ସଲିଳା ଫଲଗୁପରି ତାର ଗତି । ଗୃହଚଳନ, ପୋଖରୀ ପରିକ୍ରମାର ଯେଉଁ ସ୍ରୋତ ଚହଲୁଛି, ତା' ଭିତରୁ କାଟୁଟା ପରିବର୍ତ୍ତନର ଆଭାସ ହୁଏତ ମିଳିପାରେ, କିନ୍ତୁ ଭିତରର ପୂର୍ଣ୍ଣାଙ୍ଗ ରୂପଟିକୁ କଳନା କରିବା ଏକାବେଳକେ ଅସମ୍ଭବ । କାହିଁକି ନା ମଣିଷର /ଜଗତର ଚେତନା ବହୁରୂପୀ । ଉପନିଷଦର ଭାଷାରେ—'ରୂପଂରୂପଂ ପ୍ରତିରୂପଂ ବଭୂବ ।' ସେଇ ରୂପ ସୁନ୍ଦର ହେଉ ବା ଅସୁନ୍ଦର ହେଉ, କୁତ୍ସିତ ହେଉ ବା କମନୀୟ ହେଉ । ରିଲ୍କେ ବୋଧହୁଏ ସେଥିପାଇଁ ଲକ୍ଷ୍ୟକରି କହିଥିଲେ—"The beautiful is nothing but the beginning of the terrible." ଈର୍ଷା, ହିଂସା, ଦ୍ୱେଷ, ଅବିଶ୍ୱାସର ପୃଥିବୀ ଭିତରେ କବି ଯେତେ ଅନିଚ୍ଛା ପ୍ରକାଶ କଲେ ବି ତା' ଭିତରେ ପ୍ରବେଶ କରିବାକୁ ବାଧ୍ୟ । ତେଣୁ କବିଙ୍କର ଏଇ ଜାଜ୍ୱଲ୍ୟ ଅବସ୍ଥା ବହୁ ପରିମାଣରେ ପାଠକୀୟ ଦୃଷ୍ଟି ଅନ୍ତର୍ଗତ ହେବା ସ୍ୱାଭାବିକ । ଏଇ କାଳୁଷ୍ୟ ଅବସ୍ଥାରୁ ସୌନ୍ଦର୍ଯ୍ୟ କିପରି ଉଦ୍ଭାସିତ ହୁଏ, ତାହା ଶ୍ରୀ ଲେଙ୍କାଙ୍କ ଗୋଟିଏ କବିତାରୁ ଲକ୍ଷ୍ୟ କରାଯାଇପାରେ ।

---

୧୦ । ତତ୍ରୈବ ।

"ଦୁଃଖ ଆସେ ପୃଥିବୀର ପାଦ ଶବ୍ଦ
ଶୁଣି ଶୁଣି, ପରିଚ୍ଛନ୍ନ ଜହ୍ନଟିଏ
ଆକାଶର ବାଘି ବିଛଣାରୁ
ନିଧଡ଼କ ଉଠି ପଡ଼େ ଆଖି ମଳି ମଳି,
ପକ୍ଷୀଟିଏ ଏ ଡାଳରୁ ଉଡ଼ିଯାଏ ଆର ଡାଳେ ।"
(କବିତାର ନାଲି ବନ୍ଧୁଯାଏ—ଗୀତ ଗା' ନାରେ ପକ୍ଷୀ)

ଏ ସୌନ୍ଦର୍ଯ୍ୟଚେତନାର ସୂତ୍ରଧର ନିଜେ କବି । ବେଳେବେଳେ ଅନ୍ତ୍ର ନିଜେ ନିଜର ଠିକଣା ଖୋଜି ହଡ଼ବଡ଼େଇ ଯାଆନ୍ତି କବି । ଶଙ୍କାଗ୍ରସ୍ତ ସଂସାରଟାକୁ ଦେଖିଗଲେ ମନମୁଦ୍ରରେ ପୂର୍ଣ୍ଣ—'ମୂନ୍ଦ୍ର ପୁଣ୍ୟଖୋୟଂ ସଂସାରଃ' । ଇଏ ବି ଏକ ପ୍ରକାର କାବ୍ୟକଳା । ଏ ଦୃଷ୍ଟି ତ ନିଷ୍ଟିତ ସ୍ଥଳେ ଏକ ଦେଶଦର୍ଶୀ ଯୁବକର ସ୍ୱାସ୍ଥ୍ୟୋଜ୍ଜ୍ୱଳ ମୁଖ, ଗୋଲାପ ଫୁଲର ସୌନ୍ଦର୍ଯ୍ୟ ଦେଖିଥିଲେ ହୁଏତ ସେ ଏକଥା କହିବାକୁ ସାହସ କରି ନ ଥାନ୍ତେ । ସେ ଯେଉଁ ସ୍ୱର୍ଗୀୟ ସୌନ୍ଦର୍ଯ୍ୟ ପାଇଁ ପାଗଳ ହୋଇଛନ୍ତି ତାହା ମଣିଷ ନିକଟରେ, ପ୍ରକୃତି ନିକଟରେ ଦେଖିବାର ହୁଏତ ପ୍ରୟାସ କରି ନାହାନ୍ତି । ଜୀବନ୍ତ ସୌନ୍ଦର୍ଯ୍ୟର ଉପେକ୍ଷା କଲେ ଅଦୃଶ୍ୟ ସୌନ୍ଦର୍ଯ୍ୟର ବାସ୍ତବତା ଉପଲବ୍ଧି କେବେକେବେ ଅସମ୍ଭବ । ତେଣୁ ନାରୀର ସୌନ୍ଦର୍ଯ୍ୟ ତାଙ୍କର ସ୍ମରଣୀୟ, ଗ୍ରହଣୀୟ ମଧ୍ୟ । ସେ ସୌନ୍ଦର୍ଯ୍ୟଚେତନାର ସମବକାଶ ଘଟେ ପ୍ରତିମା ନାୟକ, ଅଳକା ସାନ୍ୟାଲ, ଚନ୍ଦ୍ରା ବେହେରାଣୀ ଓ ଶୁକ୍ରଦେବ ଜେନା ଭିତର ଦେଇ । ନୂଆ ନୂଆ ପରିବେଶ ଓ ପରିସ୍ଥିତିର ପରିଧି ଭିତର ଦେଇ ସେମାନଙ୍କର ନୂଆ ନୂଆ ରୂପ ଫୁଟି ଉଠେ । ପାଠକ ସେ ନୂତନ ରୂପସବୁ ନିଜକୁ ସାମିଲ୍ କରି ନିଏ ମଧ୍ୟ । ନିଃସଙ୍ଗ ବେଦନାର ସ୍ମୃତିକୁ ବଞ୍ଚୁଥିବା କବି ଏଇ ପ୍ରତିକୂଳତାକୁ କେବେ ସବୁଦିନ ପାଇଁ ନିଜର କରି ରଖିବାକୁ ଚାହାନ୍ତି ନାହିଁ । ନୈରାଶ୍ୟ, ହତାଶା ନିକଟରେ କବି ନିଜର ଆନୁଗତ୍ୟ ପରିବର୍ତ୍ତେ ପ୍ରେମ, ଅମୃତତ୍ୱ ଓ ସୌନ୍ଦର୍ଯ୍ୟକୁ ଖୋଜନ୍ତି । ଶ୍ରୀ ଲେଙ୍କାଙ୍କ ସୌନ୍ଦର୍ଯ୍ୟଚେତନା ମୂଳରେ ଏଇ ସତ୍ୟ ନିହିତ । ନାରୀ, ପ୍ରକୃତି, ବନ୍ଧୁତା କବିଙ୍କ ସୌନ୍ଦର୍ଯ୍ୟ ସୃଷ୍ଟି ପାଇଁ ଅନୁକୂଳ ପରିବେଶ ସୃଷ୍ଟି କରିଛି । 'ଏଠି ସବୁ ଧାନ ବିଲ', 'ଫୁଲବାଣୀ' 'ସ୍ୱପ୍ନ' 'ମୋ ସ୍ତ୍ରୀ ପାଇଁ ଗୋଟିଏ କବିତା', 'ହେ ମୋର ଦାନ୍ତିଆମାନେ' ପ୍ରଭୃତି ଅନେକ କବିତାକୁ ଏହାର ଦୃଷ୍ଟାନ୍ତ ରୂପେ ଗ୍ରହଣ କରାଯାଇପାରେ । କେବଳ ଏତିକି ନୁହେଁ, ବ୍ୟକ୍ତିକ ଅନୁଭୂତି ସାର୍ବଜନୀନତା ପ୍ରାପ୍ତ ହୋଇ ଅପୂର୍ବ ସୌନ୍ଦର୍ଯ୍ୟିକ ଗୁଣରେ କବିତାର ଅଙ୍ଗ ଲାବଣ୍ୟକୁ ବିମଣ୍ଡିତ କରିଛି । ଉତ୍କଳର ଗିରି ନଦୀ ଭଳି ଶ୍ରୀ ଲେଙ୍କାଙ୍କ କବିତା ଛଳ ଛଳ ନାଦରେ ସୌନ୍ଦର୍ଯ୍ୟ ସ୍ରୋତର ପ୍ରବଳ ପ୍ରବାହକୁ

ଧାରଣା କରି ଅଗ୍ରସର ହୋଇଛନ୍ତି । ସେ କବିତାର ନାରୀ ଯେତେବେଳେ ଦେଖିଲେ ବି ପୂର୍ଣ୍ଣଗର୍ଭା, ପୂର୍ଣ୍ଣଯୌବନା । ସୁନ୍ଦରେ ତୃପ୍ତି କେତେବେଳେ ବି ଅବସାଦ ନାହିଁ । କେବଳ ନୂତନତାର ଉଚ୍ଛ୍ୱାସରେ /ଉନ୍ମତ୍ତତାରେ ତାହା ଭରା । ଶ୍ରୀ ଲେଙ୍କାଙ୍କ କବିତାକୁ ଦୀର୍ଘଜୀବୀ କରିବାକୁ ଏଇ ଧରଣର କବିତାର ଯେ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି, ଏହା ନିଃସନ୍ଦେହରେ କୁହାଯାଇ ପାରେ ।



# ଦଶମ ଅଧ୍ୟାୟ

## ରମାକାନ୍ତଙ୍କ କବିତାର ବାକ୍‌ଭଙ୍ଗୀ, ଚିତ୍ରକଳ୍ପ ଓ ନାଟକୀୟତା

କବିତା କାହିଁକି ସୁନ୍ଦର ହୁଏ ତାହାର କାରଣ ହଠାତ୍ ଖୋଜି ପାଇବା କଷ୍ଟସାଧ୍ୟ । ଆମର ଆନନ୍ଦଘନ ଉପଲବ୍ଧି କେଉଁ ଉପାଦାନ ବା ଉପକରଣକୁ ନେଇ ଗଢ଼ି ଉଠେ ତାହା ତତ୍‌କ୍ଷଣାତ୍ ସ୍ପଷ୍ଟ ହୁଏ ନାହିଁ କି କହି ହୁଏ ନାହିଁ । କବିତାକୁ ବ୍ୟବଚ୍ଛେଦ କଲେ ବି ଅସଲ ରହସ୍ୟଟି ଧରା ଦିଏ ନାହିଁ । ସବୁ ଭଲ କବିତା ମୂଳରେ ଏଇ ସତ୍ୟ ନିହିତ । [illegible] ଯାହା ଭିତରେ ଲୁଚିଥିବା ଏଇ କାବ୍ୟିକ ସତ୍ୟକୁ ଉନ୍ମୋଚନ କରିବାର ପ୍ରୟାସ ଯେଉଁମାନେ କରନ୍ତି ସେମାନେ ମୃଗତୃଷ୍ଣା ପଛରେ ତୃଷାତୁର ହୋଇ ଧାଇଁବା ବ୍ୟତୀତ ଅଧିକ କିଛି କରି ପାରନ୍ତି ନାହିଁ । ତାହାକୁ ଠିକ୍ ଠିକ୍ ବୁଝି ପାରୁଥିଲେ ଯୁଗ ଯୁଗ ଧରି କବିତାର ଆଲୋଚନା ହୋଇ ନ ଥାନ୍ତା କି ଶତ ଶତ ବ୍ୟାଖ୍ୟା ପ୍ରସ୍ତୁତ ହୋଇ ନ ଥାନ୍ତା । ପ୍ରଜାପତିଙ୍କ ସୃଷ୍ଟି ପରି କବିସୃଷ୍ଟି ରହସ୍ୟମୟ । ବାଚନଭଙ୍ଗୀ ଏହାର ମୂଳ । କବିତା ବୁଝିବା ନ ବୁଝିବାର କାରଣ ଏଇ ବାକ୍‌ଭଙ୍ଗୀ । ଯେତେ ଭଲ କବିତା ହେଲେ ବି ତାହା ବୁଝା ଅବୁଝାର ସମନ୍ୱୟ । ଭାବ ସଂକ୍ରମଣ ଅବଶ୍ୟ କବିତାର ମୂଳ । ଶ୍ରୀ ଲେଙ୍କାଙ୍କ କବିତା ଏଇ ପ୍ରସଙ୍ଗରେ ବିଚାର୍ଯ୍ୟ । ଏ ପର୍ଯ୍ୟନ୍ତ ତାଙ୍କ କବିତାର ଭାବ ମଣ୍ଡଳକୁ ଆମେ ପରିକ୍ରମା କରୁଥିଲୁ । କିନ୍ତୁ କବିତା କେବଳ ତାର ଭାବବସ୍ତୁକୁ ନେଇ ବଞ୍ଚିପାରେ ନାହିଁ । ବାକ୍‌ଭଙ୍ଗୀର ଐଶ୍ୱର୍ଯ୍ୟ କବିତାର ପ୍ରାଣ ପ୍ରବାହ ପାଇଁ ଭାବ ସଙ୍ଗେ ସଙ୍ଗେ ସାମିଲ୍ ହେବାକୁ ବାଧ୍ୟ । ଆଧୁନିକ କବିତାର ସମାଲୋଚକ ଓ ପାଠକମାନେ ସେଥିପାଇଁ ଭାବାନୁଭୂତି ଅପେକ୍ଷା କାବ୍ୟରୂପ (form) ଉପରେ ଅଧିକ ଗୁରୁତ୍ୱ ଦେଇ ଆସିଛନ୍ତି । ଅନେକ ସ୍ଥଳରେ କାବ୍ୟରୂପର ମହତ୍ତ୍ୱ ଠିକ୍ ଭାବେ ଉପଲବ୍ଧି ନ କରି ସେମାନେ କବିତାର ଦୋଷ-ତ୍ରୁଟି ଦେଖାଇବାର ଉଦ୍ୟମ କରିଛନ୍ତି । ମୋର ମନେହୁଏ, ଶ୍ରୀ ଲେଙ୍କାଙ୍କ କବିତା ସମ୍ପର୍କରେ ଯେଉଁସବୁ ପାଠକଙ୍କ ଅଭିଯୋଗ ରହିଛି ତାହା ଏଇ ଫର୍ମକୁ ନେଇ । ତେବେ ଏଇଟା ଏକଦମ ସତ ଯେ କଣ୍ଟେଣ୍ଟ ଓ ଫର୍ମର ସମାନୁପାତୀ ଭୂମିକା କବିତାର ସଫଳତା ପାଇଁ ଦାୟୀ । ଉଭୟ ମଧ୍ୟରେ ଟିକିଏ ଏଣେତେଣେ କମ୍ ହେଲେ କବିତାର ଭାରସାମ୍ୟ ରକ୍ଷା କରିବା ସହଜ ହୁଏ ନାହିଁ । କେବଳ ଭାବକୁ ନେଇ ମଧ୍ୟ କବିତାର ସାର୍ଥକ ସୃଷ୍ଟି ହୁଏ ନାହିଁ । ଫର୍ମ ବଳରେ

କବିତାକୁ କବିତା ବୋଲି ଚିହ୍ନି ହୁଏ, ଅନ୍ୟଥା ଏହା ସମ୍ଭବ ନୁହେଁ । ଜୀବନ-ବୋଧର ଅନ୍ତରଙ୍ଗତା ଶ୍ରୀ ଲେଙ୍କାଙ୍କ ବ୍ୟକ୍ତିଜୀବନର ପରିଚୟ, ମାତ୍ର ଫର୍ମର ଯଥାର୍ଥ ପ୍ରୟୋଗ ତାଙ୍କ କାବ୍ୟଜୀବନର ପରିଚୟ । ମିଥ୍, ପ୍ରତୀକ, ଚିତ୍ରକଳ୍ପ, ଭାଷା, ଶବ୍ଦ, ଛନ୍ଦ, ନାଟ୍ୟକୀୟ ବିନ୍ୟାସ ମାଧ୍ୟମରେ ତାଙ୍କ କାବ୍ୟରୂପର ପରିଧି ବିସ୍ତୃତ । ନିଜସ୍ୱ ଜୀବନ ପରିପ୍ରେକ୍ଷୀରେ ତାଙ୍କର ଏଇ ରୂପଗତ ଦକ୍ଷତା ପ୍ରଦର୍ଶିତ ।

**ମିଥ୍ ଚେତନା :** ଆଧୁନିକ କବିତାର ଉନ୍ମେଷ କାଳରେ ମିଥ୍ ଚେତନାର ଅନୁପ୍ରବେଶକୁ କାବ୍ୟଜଗତ ସାଦରେ ସ୍ୱୀକୃତି ଦେଇଥିଲା । ପୁରାଣ ଇତିହାସର ଗୋଟିଏ ଗୋଟିଏ କଥା, ଘଟଣା ବା ଚରିତ୍ରକୁ ନେଇ ଆଧୁନିକ ଜୀବନ ପରିପ୍ରେକ୍ଷୀରେ ତାହାର ବିଶ୍ଳେଷଣ କରାଯାଉଥିଲା । ସଚ୍ଚିଦାନନ୍ଦ, ଗୁରୁପ୍ରସାଦ, ରମାକାନ୍ତ, ସୀତାକାନ୍ତ ମିଥ୍‌କୁ ନେଇ ଆପଣାର କାବ୍ୟମଣ୍ଡଳର ବ୍ୟାପ୍ତିକୁ ବହୁ ଭାବରେ ବଢ଼ାଇ ଦେଇ ପାରିଛନ୍ତି । ଏମାନଙ୍କ ଭିତରେ ସୀତାକାନ୍ତ ମିଥ୍ ପ୍ରତି ଆପଣାର ଅଧିକ ଦୁର୍ବଳତାର ପରିଚୟ ଦେଇଛନ୍ତି । କିନ୍ତୁ ଏଇ କାଳର କବି ଶ୍ରୀ ଲେଙ୍କା ମିଥ୍ ପ୍ରତି ସେପରି ଆଗ୍ରହ ପ୍ରକାଶ କରିନାହାନ୍ତି । ତେବେ ପୁରାଣ, ଇତିହାସକୁ ସେ ଯେ ତାଙ୍କ କାବ୍ୟ ପରିସର ଭିତରୁ ନିର୍ବାସିତ କରି ଦେଇଛନ୍ତି, ଏହା କହିବେ ଭୁଲ୍ ହେବ । କୃଷ୍ଣ, ରାଧା, ରାମଚନ୍ଦ୍ର, ଧୃତରାଷ୍ଟ୍ର, ଯଶୋଦା, ଯଶୋଧାରା, ଇନ୍ଦ୍ରଦ୍ୟୁମ୍ନ, ଈଶ୍ୱର, ଦ୍ରୌପଦୀ, ସାବିତ୍ରୀ, ଖ୍ରୀଷ୍ଟ ପ୍ରଭୃତିଙ୍କ ଉଲ୍ଲେଖ ତାଙ୍କ କବିତାର ଭାବ-ବଳୟକୁ ପ୍ରସାରିତ କରିଛି । ବିଶେଷ କରି 'ସ୍ମରଣ-ବିସ୍ମରଣ', 'ନିତ୍ୟ ନୈମିତ୍ତିକ' କବିତା ଗ୍ରନ୍ଥରେ ଶ୍ରୀ ଲେଙ୍କାଙ୍କ ମିଥ୍ ପ୍ରୟୋଗର କେତୋଟି ମାତ୍ର ଦୃଷ୍ଟାନ୍ତ ଦେଖିବାକୁ ମିଳେ । ଅନ୍ୟ ଗ୍ରନ୍ଥରେ ସେ ଯେଉଁସବୁ ମିଥ୍‌ର ବ୍ୟବହାର କରିଛନ୍ତି, ତାହା ଆନ୍ତରିକତା ଶୂନ୍ୟ ମନେହୁଏ । ଶ୍ରୀ ଲେଙ୍କା ମିଥ୍ ପ୍ରତି ଅନାଗ୍ରହୀ ହେବାର କାରଣ ରହିଛି । ପ୍ରଥମରୁ କହି ରଖିଛୁ, ଶ୍ରୀ ଲେଙ୍କା ଜୀବନର ଜଣେ ମୁଗ୍ଧ ବନ୍ଦନାକାରୀ । ନିଜେ ବଞ୍ଚିଥିବା ଜୀବନକୁ, ଜୀବନର ଶୈଳୀକୁ, ଜୀବନର ଭୂମିକୁ ଯେପରି ସେ ଅନୁଭବ କରନ୍ତି, କାଳ୍ପନିକ ସୁଷମା ଭିତର ଦେଇ ତାହାର ପ୍ରକାଶ ପାଇଁ ସେ ଅଧିକ ସଚେତନ । ତେଣୁ ପୁରାଣ, ପୁରାତତ୍ତ୍ୱ ଇତିହାସର କଙ୍କାଳ ହାଡ଼ରେ ସେ ଆପଣାର କବିତାର ସୌଧ ନିର୍ମାଣ କରିବାକୁ ଆଦୌ ଚାହାନ୍ତି ନାହିଁ । ଯେଉଁଠି ସେ ମିଥ୍‌ର ଆଶ୍ରୟ ନେଇଛନ୍ତି, ସେଠି ବର୍ତ୍ତମାନର ବିବେଧାଭାସ ଦେଖାଇବାକୁ ସେ ସଚେଷ୍ଟ । କୃଷ୍ଣଙ୍କ ରୂପ ଓ ଚରିତ୍ରକୁ କବି ଗ୍ରହଣ କରି ନେଇଛନ୍ତି ସାଂପ୍ରତିକ ଜୀବନର ଜଟିଳ ଛଦ୍ମସତ୍ତା ରୂପେ । କଳା, ପ୍ରେମ ଓ ଆଧ୍ୟାତ୍ମିକତାର ସେ ଏକ ସମନ୍ୱିତ ବିଗ୍ରହ । ତାଙ୍କୁ ସବୁ

ପ୍ରତୀକଧର୍ମିତା ଭିତରେ ବଂଶୀ ପ୍ରସଙ୍ଗ । ଉଦ୍ଦେଶ୍ୟ—ପ୍ରତୀକଧର୍ମିତାକୁ, ରୂପକଧର୍ମୀ ପ୍ରବୃତ୍ତିକୁ ଅତିକ୍ରମିଯିବା । କଳାକାର ଠିକ୍ ସେଇଆ ଚାହେଁ, ଚାହେଁ ଗତାନୁଗତିକ ସ୍ଥିତିଶୀଳତାରୁ ମୁକ୍ତି । ସମସ୍ତ ପ୍ରକାର ଔପଚାରିକତାକୁ ଏଡ଼ାଇ ଚାଲିଯିବାର ଭଙ୍ଗୀ କୃଷ୍ଣଙ୍କ ଜୀବନରେ ଯେପରି ପ୍ରତିଫଳିତ, କଳାକାରର ଜୀବନରେ ସେପରି ପ୍ରକାଶିତ ହେବାର ଆବଶ୍ୟକତା ଖୁବ୍ ବେଶି (୧) କବି ଦୃଷ୍ଟିରେ ମୁରଲୀ ସେବକର ପ୍ରତୀକ । ବଂଶୀର ମଧୁର ଆଳାପ ଭିତରୁ ଲଜ୍ଜାବତୀ ନାୟିକା ପ୍ରତି କାବ୍ୟନାୟକର ଆକର୍ଷଣ ଜନ୍ମିବା ଏକ ନୂତନ ଭଙ୍ଗୀ । "ତୁମର ମୁରଲୀ ଧ୍ୱନି ନାଚିବି ମୁଁ /ଜଙ୍ଗଲର ଚରାବାଟ ଆଖିର ଜହ୍ନରେ ଓ /ଲଜକୁଳୀ ଲତାର ଦେହରେ ଜଡ଼ାଇବି ଚଳଚଳ ଆଖିର ଝରିଲା ଲୁହ ।" (ଆଖି—ସ୍ମରଣ-ବିସ୍ମରଣ) । ପୁରାଣ ସହ ସାଦୃଶ୍ୟ ନୁହେଁ, ବୈଷମ୍ୟ ପ୍ରଦର୍ଶନହିଁ ଶ୍ରୀ ଲେଙ୍କାଙ୍କ କବିତାର ବିଶେଷତ୍ୱ । ଏଇ ବୈଷମ୍ୟର ଭଙ୍ଗୀ କାଳେ ପୁରୁଣା ହୋଇଯିବ ସେଥିପାଇଁ କବି ଖୁବ୍ ସତର୍କତାର ଆଶ୍ରୟ ନେଇଛନ୍ତି । ସବୁବେଳେ ସେ ନିତ୍ୟ ନୂତନ ଭାବ ସଂକ୍ରମଣ ଉପରେ ଗୁରୁତ୍ୱ ଦିଅନ୍ତି । 'ବିନୋଦିଆ' କବିତାରେ ତାଙ୍କର ଏଇ ପ୍ରକାର ଅଭିମତ ଉଲ୍ଲେଖଯୋଗ୍ୟ ।

"ତୁମକୁ ଡାକିଲେ ହେଲେ ପୁରୁଣା ଢଙ୍ଗରେ ଯଦି
ଏଣୁ ତେଣୁ କରୁ ଥାଏ, ବହାନା ଥାଏ
ଆଉ ଭୁଲ, ବୁଝିବ ନାହିଁ, ହେ ବିନୋଦିଆ ।
ମୁଁ ଆଜି କୌଣସି ଭାବରେ ନାହିଁକି ଅଭାବରେ ନାହିଁ ।"
(ବିନୋଦିଆ—ଦୁଃଖ ସହ କଥାବାର୍ତ୍ତା)

ବିନୋଦିଆଙ୍କୁ 'କୁଆଁମଇଁତା' ପଥ ଚଳାଇ ଦେଇ 'ମୁକ୍ତିର ଈଶ୍ୱର' କହିବା ଯାହା ତାଙ୍କୁ 'ଖାନନଗରର ଜଗୁଆଳି' କହିବା ପ୍ରାୟ ସେଇଆ (୨) ଆଧୁନିକ କବିତାରେ ମିଥ୍‌ର ଆବଶ୍ୟକତା ସପକ୍ଷରେ ଲିଲିୟାନ ଫେଡ଼ାର କହନ୍ତି—ମିଥ୍ ଅବଚେତନ ଅଭିଜ୍ଞତାର ଦୁଇଟି ମୂଳ ଅଞ୍ଚଳର ବର୍ଣ୍ଣନାତ୍ମକ ଗଠନ ( Narrative Structure ) । ( କ ) ପୁରାଣ ତତ୍କାଳ ଜର୍ଗର ଅବଦମିତ କାମନା, ଭୀତି ବା ସେଥିରୁ ସଜାତ ଦ୍ୱନ୍ଦ୍ୱର ପ୍ରକାଶ କରେ । ପୁରାଣର ବିଷୟବସ୍ତୁ ଏହାକୁ ସ୍ପଷ୍ଟ କରେ । (ଖ) ଫିଲୋଜେନେଟିକ୍ ବିକାଶର ପ୍ରାଥମିକ ପର୍ଯ୍ୟାୟରେ ବାଁକ୍ତ ଚୈତନ୍ୟର ମହିମା ପୁରାଣ ଦ୍ୱାରା ମୂର୍ତ୍ତି ହୁଏ (୩) ଏଇ ସଙ୍ଗେ କାଳୁ ସଂଯୋଜନ

---

୧ । କାଳାକାନ୍ତ—'ସ୍ରୋତର ନାମ ରୀତ'—ପୃ. ୧୫ ।

୨ । 'କ ଯାଏ ବଞ୍ଚି ଥିବା ମରେ'—'ଗୀତ ଗା' ନାରେ ପକ୍ଷୀ'—ପୃ. ୭୨ ।

୩ । Fader, Lillian—Ancient Myth in Modern doetry, P. 197.

ସ୍ୱୀକୃତ ନୁହେଁ । ପୁରାଣକୁ ଗୁରୁତ୍ୱ ଦେଇ ମିଥ୍‌ର ଅସ୍ତିତ୍ୱ ମଧ୍ୟ ଇତିହାସରେ ଅଛି । ତେଣୁ ପୁରାଣରେ ସଭ୍ୟତା ବିକାଶର ଏକ ବିବର୍ତ୍ତନ ନିହିତ । ବ୍ୟକ୍ତିକ ଓ ସାମାଜିକ ଅନୁଭୂତିର ପ୍ରତୀକୀ ବ୍ୟଞ୍ଜନା ଏହାର ମୂଳ କଥା ।

ତେବେ ମିଥ୍ ପାଇଁ ଖୁବ୍ ଗୋଟାଏ ମୁଣ୍ଡ ଘୁରାଇବାର ଆବଶ୍ୟକତା ଶ୍ରୀ ଲେଙ୍କା ଅନୁଭବ କରନ୍ତି ନାହିଁ । ଲୁବୁଣାରଥ ପରି ଅଣଲେଉଟା ସମୟରେ ମିଥୀୟ ଚରିତ୍ରଗୁଡ଼ିକ ସମ୍ବର୍ଦ୍ଧନ ପାଇଁ ମାନବୀୟ ପ୍ରକୃତିର ପ୍ରତିଚ୍ଛବି ବହନ କରିବାକୁ ଅସମର୍ଥ । ଜୀବନର ଅଖଣ୍ଡତାରେ ବିଶ୍ୱାସ ରଖିପାରୁ ନ ଥିବା କବି ତେଣୁ ମିଥ୍ ପ୍ରତି ସବୁବେଳେ ଆପଣାର ବିଶ୍ୱାସଭାଜନତା ଦେଖାଇ ପାରିବେ ନାହିଁ । ପାଶ୍ଚାତ୍ୟ ଦେଶର ଆଧୁନିକ କବିମାନେ ଏହି ପନ୍ଥାଟିକୁ ମଧ୍ୟ ଗ୍ରହଣ କରି ନେଇଛନ୍ତି । ଶ୍ରୀ ଲେଙ୍କା ତାଙ୍କର ପ୍ରତିକ୍ରିୟା ସ୍ପଷ୍ଟ ଭାବରେ ଶୁଣାଇ ଦେଇଛନ୍ତି—"ହେ ମୋର ବାନ୍ଧବୀମାନେ ! ଈଶ୍ୱର ନାଚଘର /ଆଜି ଏତେ ଶୂନ୍‌ଶାନ୍ ?" ( ହେ ମୋର ବାନ୍ଧବୀମାନେ—୫ ) । କବି ବୁଝାଇ ଦେବାକୁ ଚାହାନ୍ତି ଯେ କ୍ଳୀବତ୍ୱର ପର୍ବ ଆଜି ଶେଷ ହୋଇଛି । ବୃହନ୍ନଳାର ଲଜ୍ଜିତ ରୂପ ଆଜି ପୁରୁଷକାରର ପ୍ରଚଣ୍ଡ ଆଘାତରେ ବିପର୍ଯ୍ୟସ୍ତ । ସୁତରାଂ ନପୁଂସକ ସାଜି, ଆତ୍ମଗୋପନର ବିଡ଼ମ୍ବିତ ଇଲାକାରେ ବସି ରାଜ୍ଞୀ ଉତ୍ତରାକୁ ନୃତ୍ୟଶିକ୍ଷା ଦେବାର କୌଣସି ଆବଶ୍ୟକତା ନାହିଁ । ସେହିପରି ନାରୀ ମଧ୍ୟ ସୀତା ସାବିତ୍ରୀଙ୍କ ଆଦର୍ଶରେ ଆଜି ଆଉ ଚାଲି ପାରିବ ନାହିଁ । ପାହାଡ଼ୀ ଝରଣା ପରି ଆଜିର ନାରୀ ଗତିଶୀଳତାରେ ବିଶ୍ୱାସୀ, ସ୍ଥିତିଶୀଳତାରେ ନୁହେଁ । ଅପେରାର ସୀତା ରାମ, ସାବିତ୍ରୀ ସତ୍ୟବାନ ଗୋଟାଏ ମିଛ ଯାଦୁଘରର କଙ୍କାଳ ପରି ଅର୍ଥହୀନ । ସତୀତ୍ୱ ଆଜିର ନାରୀ ପାଖରେ ଅଚଳ ଦୋପଇସି । ସତୀ ସାବିତ୍ରୀଙ୍କ ରାସ୍ତାରେ ଆଜିର ସମାଜ /ମଣିଷ ଚାଲିବାକୁ ବାଧ୍ୟ ନୁହେଁ । ଜୀବନର ଗତି ସହ ବଦଳିଯାଏ ବ୍ୟକ୍ତି ଚରିତ୍ର । କବିଙ୍କ ଭାଷାରେ—ସାବିତ୍ରୀଙ୍କ ସମସ୍ୟା ଆଜି ବହୁମୁଖୀ—'ନଡ଼ା ଛପର ଘରେ ସାବିତ୍ରୀ, /ପୁଣ୍ୟ ଶ୍ଳୋକର ବଖରାରେ ସାବିତ୍ରୀ, /ଯନ୍ତ୍ରଣାର ନାହୁଡ଼ରେ ସାବିତ୍ରୀ' (ନିତ୍ୟ ନୈମିତ—ପୃ. ୪୧) । ଥରେ ବଞ୍ଚିଯାଇଥିବା ଜୀବନକୁ ଆଉ ଭେଟିବା ସମ୍ଭବ ନୁହେଁ । ମାନବସତ୍ତାର ଅସଲ ପରିଚୟ ମିଳେ ଆପଣାର ଚିନ୍ତା ଓ ଚରିତ୍ରର ବିଶ୍ଳେଷଣରେ । ତାହାକୁ ପ୍ରକାଶ କରିବା ପାଇଁ ମିଥ୍‌ର ଗୁରୁତ୍ୱ ଗ୍ରହଣ ନ କଲେ ବି କବିତ୍ୱର ପରାକାଷ୍ଠାରେ ତାର ସ୍ପଷ୍ଟତା ପ୍ରମାଣିତ ହୋଇଥାଏ । ଯେଉଁଠି ମିଥିକ୍ ଚରିତ୍ରକୁ ଅସ୍ୱୀକାର କରାଯାଏ, ସେଠାରେ ଭାବ ପ୍ରକାଶରେ ନିଷ୍କପଟତା ବା ଅକୃତ୍ରିମତା ଦେଖାଯାଏ ।

**ପ୍ରତୀକ ଓ ଚିତ୍ରକଳ୍ପ :**—ଚିତ୍ରକଳ୍ପର ବିଚିତ୍ର ବର୍ଣ୍ଣାଳି ସୃଷ୍ଟି କରିବାରେ କମଳାକାନ୍ତଙ୍କ ଦକ୍ଷତା ସ୍ୱୀକୃତ । ଏପରିକି ପ୍ରତୀକ ଅପେକ୍ଷା ଚିତ୍ରକଳ୍ପର ମନୋରମ

ଉଦ୍ୟାନରେ ସଞ୍ଚରଣଶୀଳ ଏଇ କବିମନ ଏହାକୁ ସର୍ବଶ୍ରେଷ୍ଠ ବାଚନଭଙ୍ଗୀ ସ୍ତବରେ ଗ୍ରହଣ କରି ନେଇଛନ୍ତି । ସମାଜ, ମଣିଷ ଓ ଜଗତର ବିଭିନ୍ନ କ୍ଷେତ୍ରରୁ ଚିତ୍ରକଳ୍ପର ଚୟନ ତାଙ୍କ କାବ୍ୟମାଧୁର୍ଯ୍ୟର ସ୍ୱକୀୟତା ଓ ବର୍ତ୍ତୁଳତାର ସ୍ମାରକୀ । ଚିତ୍ରକଳ୍ପନାର ଔଜ୍ଜ୍ୱଲ୍ୟରେ ଇନ୍ଦ୍ରିୟଗ୍ରାହ୍ୟ କଳ୍ପନାର ଲୀଳା ସୃଷ୍ଟି ନିପୁଣତାର ଚମତ୍କାରିତାରେ ଉଦ୍ଭାସିତ । ଅଧ୍ୟାପକ ବୃନ୍ଦାବନଚନ୍ଦ୍ର ଆଚାର୍ଯ୍ୟଙ୍କ ମତରେ—"ଚିତ୍ରମୟ କାରୁକାର୍ଯ୍ୟ ସମ୍ବଳିତ ତାଙ୍କ ( କମଳାକାନ୍ତଙ୍କ ) ପ୍ରକାଶଭଙ୍ଗୀ ଅନେକ ସ୍ଥଳରେ ଶବ୍ଦ ଚୟନର ସଂଯମ ଓ ଶୁଚିତା ମଧ୍ୟରେ ପ୍ରକଟିତ ହୋଇ ପାଠକ ମନରେ ବୌଦ୍ଧିକ ପ୍ରେରଣା ସୃଷ୍ଟି କରିଥାଏ ।" (୪) ସଜୀବତା, ଗ୍ରାହ୍ୟତା ଓ ତୀବ୍ରତାର ସାମର୍ଥ୍ୟରେ ଶ୍ରୀ ଲେଙ୍କାଙ୍କ କବିତା ଆଶ୍ଚର୍ଯ୍ୟ ଭାବାନ୍ଦୋଳନର ସନ୍ଧାନୀ । ବ୍ୟକ୍ତି ଚରିତ୍ରର ଅନ୍ତଃରୂପ ବିଶ୍ଳେଷଣ ସାଂପ୍ରତିକ କବିତାର ଉପଜୀବ୍ୟ ହୋଇଥିବାରୁ ଇମେଜ୍ ମଧ୍ୟ ଅନେକ ସମୟରେ ଅସ୍ପଷ୍ଟ ଏବଂ ଅନ୍ତର୍ଗୂଢ଼ । ଘଟଣାର ଘନଘଟା ଭିତରେ ଶ୍ରୀ ଲେଙ୍କାଙ୍କ ରୂପକଳ୍ପ ହିଁ ଶରୀରୀ । ପ୍ରାତ୍ୟହିକ ଜୀବନ ଧାରା ଭିତରେ ଅନେକ କଥା, ଅନେକ ଚିତ୍ରାବଳୀ ସାମ୍ନା କଲାବେଳେ ତାର ସୂକ୍ଷ୍ମ ସତ୍ତା କବି ମନରେ ରହିଥାଏ ଏବଂ କବିତା ରଚନା ବେଳେ ତାହା ଶିଳ୍ପାୟିତ ହୋଇଉଠେ । ବିଭିନ୍ନ ଉପାୟରେ ଏଇ ସବୁ ଅନୁଭୂତ ଚିତ୍ରଙ୍କର ମାନସଲୋକରେ ପହଞ୍ଚିଯାଏ । ପଞ୍ଚଜ୍ଞାନେନ୍ଦ୍ରିୟର ଭିନ୍ନତା ନେଇ ବାହ୍ୟ ଜଗତର ମାନସିକ ପ୍ରତିଚିତ୍ର ପାଞ୍ଚପ୍ରକାର ହୋଇଥାଏ । ଚକ୍ଷୁଦ୍ୱାରା ଅଙ୍କିତ ପ୍ରତିଛବି ଚାକ୍ଷୁଷ (visual), ଶ୍ରବଣ ଦ୍ୱାରା ଶ୍ରାବଣିକ (auditory), ନାସାଦ୍ୱାରା ନାସିକ (alfactory), ସ୍ପର୍ଶେନ୍ଦ୍ରିୟ ଦ୍ୱାରା ସ୍ପାର୍ଶିକ (factual), ଓ ରସନାଦ୍ୱାରା ରାସନିକ (gustatory) ସ୍ୱାଦ ମିଳେ । ମନୋବୈଜ୍ଞାନିକମାନେ ଏହା ସହିତ ଆଉ ଦୁଇଟି ଉପାଦାନ ଯଥା ଜୈବିକ (organic), ପେଶୀଜ ବା ବେଗଜ (kinaesthetic), ଯୋଗ କରନ୍ତି । (୫) ଶ୍ରୀ ଲେଙ୍କାଙ୍କ କବିତାରୁ ଏଇପରି ଇନ୍ଦ୍ରିୟ ସମ୍ବେଦ୍ୟ ବହୁଳ ଦୃଷ୍ଟାନ୍ତ ଖୋଜା ଯାଇପାରିବ । କେତୋଟି ଦୃଷ୍ଟାନ୍ତ ଏଠାରେ ଦିଆଯାଇପାରେ ।

୧ । "ମଧ୍ୟାହ୍ନର ନିରବତା /ତୃଣାଚ୍ଛନ୍ନ କଳ୍ପକଣ୍ଠୀ ନଭେଲ ପୃଷ୍ଠାରେ /ଓ କୁନି କୁନି ଚଢ଼େଇଙ୍କ ଡେଣାରେ ଡେଣାରେ /ମଧ୍ୟାହ୍ନ ସେକୁଛି ଦେହ"
(ସକାଳ, ସନ୍ଧ୍ୟା ଓ ଦ୍ୱିପ୍ରହର—୩—କବିତାର ମୁହଁ)

---

୪ । ଆଚାର୍ଯ୍ୟ, ବୃନ୍ଦାବନ ଚନ୍ଦ୍ର—ଓଡ଼ିଆ ସାହିତ୍ୟର ସଂକ୍ଷିପ୍ତ ପରିଚୟ—୧ମ ସଂସ୍କରଣ, ୧୯୬୪—ପୃ. ୩୦୫ ।

୫ । ଶୁକ୍ଳ, ଅନନ୍ତଚରଣ—ଚିତ୍ରକଳ୍ପ ଓ ଚିତ୍ରକଳ୍ପବାଦ—'ବସୁନ୍ଧରା'—୨ୟ ବର୍ଷ /୧ମ ସଂଖ୍ୟା । ସମ୍ପାଦକ— ଡକ୍ଟର ଗୋପାଳ ଚନ୍ଦ୍ର ମିଶ୍ର ।

୨। 'ଅକସ୍ମାତ୍ ବରଫ ଭଳି ଶୀତଳ ମେଘ ଉଡ଼ିଯାଏ ଏଣେ ତେଣେ ଧଳା ବକ ପରି, (ଜନ୍ମଦାତାର ଅନ୍ୟ ନାମ—ଜନ୍ମଦାତାର ମୂର୍ତ୍ତି)

୩। "ବଡ଼ ବୋହୂର ନାକଫୁଲ ଝାଲଣାରେ /ଗୋଟି ଗୋଟି ହୋଇ ଝରିପଡ଼ୁଛି /ଗଙ୍ଗ ଶିଉଳିର ମହକଭରା ଗନ୍ଧ ଏବଂ ଏକୋଇର ବଜା /ବଶିକେଶନରେ କାନରେ ଝୁଙ୍କି ପଡ଼ୁଚି /ବାଣ୍ଟିକାଳର ତାଳପତ୍ରର ବୋଝ !"

( କାପାଳିକ—ଗୀତ ଗା' ନା.ରେ ପକ୍ଷୀ )

୪। "ଫୁଟା, ଝିଙ୍କରୁ ନିଗିଡ଼ି ପଡ଼ୁଥିବା କେଇ ଟୋପା ଅନ୍ଧରକୁ ଜାଣି ହୁଏ ଯେ ଆକାଶରେ ଆଜି ଜହ୍ନ ଉଇଁବ ନାହିଁ ।'

(ନିତ୍ୟ ବୃନ୍ଦାବନ—ଗୀତ ଗା' ନା ରେ ପକ୍ଷୀ)

୫। "ଖଳଦାଗର ଶୀଭୁଆ ପବନ ପରି /ଯାହା ବା ଉଡାଉଚି ମଗଜକୁ /ସବୁ ପିଇ ନଉଚି ସନ୍ସନିଆ ରକ୍ତର ଓଦା ଚତ୍ରତରା ।"

(ନିତ୍ୟ ନୟମିତ—ପୃ. ୧୦)

୬। "କେମିତି ସକାଳ ହୁଏ /ଦୁଧଆଳି ଗାଈ ପରି /ବ୍ୟସ୍ତତାର କଅଁଳ ବାଛୁରୀ ?"

(ବସ୍ତୁ—ଖସିବାର ବେଳ)

ଏହିସବୁ ଉଦ୍ଧୃତାଂଶଗୁଡ଼ିକରୁ ପ୍ରଥମ ଓ ଦ୍ୱିତୀୟ ଉଦ୍ଧୃତାଂଶ ଚକ୍ଷୁସ୍ ଚିତ୍ରକଳ୍ପ । ତୃତୀୟଟି ଶ୍ରାବଣିକ, ଚତୁର୍ଥ–ନାସିକ, ପଞ୍ଚମ—ସ୍ପାର୍ଶିକ ଏବଂ ଷଷ୍ଠ ଚିତ୍ରକଳ୍ପଟି ରାସନିକ । ଏସବୁରେ କବି କଳ୍ପନାର ନିତ୍ୟ ନୂତନ ପରିଚୟ ଉତ୍କୀର୍ଣ୍ଣ । ଇନ୍ଦ୍ରିୟଜ ଅନୁଭୂତିଗୁଡ଼ିକ ମଧ୍ୟରୁ ଚକ୍ଷୁସ୍ ଓ ଶ୍ରାବଣିକ ଚିତ୍ରକଳ୍ପ ସୃଷ୍ଟିରେ କବିଙ୍କର ନିଷ୍ଠା ଅଧିକ । ଅନ୍ୟାନ୍ୟ ଇନ୍ଦ୍ରିୟ ତୁଳନାରେ ଦର୍ଶନେନ୍ଦ୍ରିୟଦ୍ୱାରା ବାହ୍ୟରେ ସଂଘଟିତ ପ୍ରତିଫଳନକୁ ସହଜରେ ଉପଲବ୍ଧି ସ୍ତରକୁ ଆଣିପାରେ । ସେଥିପାଇଁ ଚକ୍ଷୁସ୍ ଚିତ୍ରକଳ୍ପ ଆମ ମନରେ ଗଭୀର ରେଖାପାତ କରିଥାଏ । ଆକ୍ଷରିକ ଅର୍ଥରେ ଏହି ଚିତ୍ରକଳ୍ପମାନ କେବଳ ଚକ୍ଷୁସ୍ ପ୍ରତିଫଳନକୁ ବୁଝାଉଥିଲେ ବି ବ୍ୟାପକ ଅର୍ଥରେ ଏହା ସମସ୍ତ ଜ୍ଞାନେନ୍ଦ୍ରିୟର ପ୍ରତିଫଳନ । ପୁଣି ଇନ୍ଦ୍ରିୟାନୁଭୂତ ଭିତର ଦେଇ ଅତୀନ୍ଦ୍ରିୟ ଉପଲବ୍ଧିରେ ପହଞ୍ଚିବା କବିଙ୍କ ଚିତ୍ରକଳ୍ପର ମହତ୍ତ୍ୱ । "ଦେଖୁଚ : ସାମ୍ନାରେ ସାଁବାଳୁଆର /ରାଜକୀୟ ଢଙ୍ଗ ପରି /ଗୃହିଚ ଗୋ ପାପ ।" (ପାପପୁଣ୍ୟ—ଉନ୍ମୋଚନ) । ସାଁବାଳୁଆର ଚାଆଁସା ଲୋମ ସ୍ପର୍ଶପ୍ରଦ । ଗତି ତାର ଉଦ୍ଧତ ଓ ଧୃଷ୍ଟତାପୂର୍ଣ୍ଣ । ତାର ଜୀର୍ଣ୍ଣ ଖୋଳାଭିତରୁ ଜନ୍ମ ହୁଏ ସୁନ୍ଦର ପ୍ରଜାପତି । ସେମିତି ପାପର ପାଖେ ପାଖେ ମଣିଷ । ମଣିଷ ପାଖେ ପାଖେ ପୁଣ୍ୟ । ପୁଣ୍ୟ ଓ

ପାପର ଇଲାକା ପାଖରେ ସାମଗ୍ରିକ ହଟେ ଜୀବନର ମହନୀୟତା । ତେଣୁ ମଣିଷ ଚାହେଁ ନା ନୈରାଶ୍ୟର ସ୍ତୂପରେ ଜୀବନର ଠିକଣା ହଜାଇ ଦେବାକୁ । ସେ ଚାହେଁ ଅଥଚ ଜୀବନ ପାଖେ ସ୍ୱପ୍ନର ସ୍ୱାଧିକାର ପ୍ରତିପନ୍ନ କରିବାକୁ । ଏଠାରେ ଇନ୍ଦ୍ରିୟଗମ୍ୟ ଭାବନା ପରିଶେଷରେ କୌଣସି ଇନ୍ଦ୍ରିୟ ମଧ୍ୟରେ ସୀମିତ ହୋଇ ରହି ପାରୁନି । ଅମୂର୍ତ୍ତ ଉପଲବ୍ଧିରେ ଯାଇ ପାଠକ ପହଞ୍ଚି ଯାଉନ୍ତି ।

ବୌଦ୍ଧିକତା କମଲାକାନ୍ତଙ୍କ ଚିତ୍ରକଳ୍ପର ଏକ ମାତ୍ର ଲକ୍ଷଣ ନୁହେଁ । ବୌଦ୍ଧିକତା ସହ କାବ୍ୟିକ ଅନୁଭୂତି ତାଙ୍କ ଚିତ୍ରକଳ୍ପର ଭାବମଣ୍ଡଳ ନିର୍ମାଣ କରିଛି । ପୁଣି କେତେବେଳେ ବୌଦ୍ଧିକତା ବିମୂର୍ତ୍ତ ଭାବ ସଂବାହନ ତାଙ୍କ କବିତାର ବସ୍ତୁ-ବୋଧ ବସ୍ତୁତକୁ ଟପାଇ ଦେବାରେ ସମର୍ଥ ହୋଇପାରିଛି । ଦୁଇଟି ଉଦାହରଣ ଦିଆଯାଉ—

୧ । ଦ୍ୱିପ୍ରହରର ଖରା, ରକ୍ତ ରକ୍ତ ସନ୍ଧ୍ୟାର ସିଢ଼ିକୁ<br>
ଟପ୍ କରି ଡେଇଁ ପଡ଼େ । ମସ୍ଲିଣ ସଞ୍ଜ<br>
ରାତିର କୋଳକୁ ଓ ରାତିର ଅଳରା କେଶ<br>
ସାଉଁଟିଇ ସଜ ଫୁଲ—କଁଅଳ ସକାଳ<br>
ହସି ଦିଏ ଫିକ୍ କରି ।"

(ହସ୍ୟସ ଯଦିଓ କମ୍—ସ୍ମରଣ-ବିସ୍ମରଣ)

୨ । "ମୋର ଶବ୍ଦ ହଜିଯାଏ /ନାନା ବାସ୍ନା ଗୀତ ପରି /ଶରତର ମଥା ହାଲ, ବେଣୀ ଖୋଲା /ଜଳ ଭଉଁରୀରେ ଏବଂ ମୋର ସବୁ /ଦୁଃଖ, ଚକାଡ଼ୋଳା ବ୍ରହ୍ମାଣ୍ଡ ଭିତରେ ।" (କଥାର ମଞ୍ଜି—ସ୍ରୋତର ନାମ ରୂତ)

ପ୍ରଥମ ପଦରେ ଏକ ଭାବପ୍ରବଣ ଅନୁଭୂତି ବୌଦ୍ଧିକ ବ୍ୟଞ୍ଜନାକୁ ଶାଳୀନ ଭାବରେ ପ୍ରକାଶ କରିବାରେ ସ୍ୱରସାମ୍ୟ ରକ୍ଷା କରିଛି । 'ଦ୍ୱିପ୍ରହରର ଖରା' କାମନାର ଉତ୍ତାପକୁ ପ୍ରତୀକିତ କରିବା ସଙ୍ଗେ ସଙ୍ଗେ ସୂଚେଇ ଦେଇଛି ଯେ କାମନାର ହୁତାଶନ ନିକଟରେ ବୟସ ବିଚାରର କୌଣସି ଅର୍ଥ ନାହିଁ । ପୁରୁଷଠାରୁ ନାରୀର ବୟସ ବେଶି ହେଲେ ବି ତାହା ସ୍ପୃହଣୀୟ । କିନ୍ତୁ ଏହା ବିରୁଦ୍ଧରେ ସମାଜ ପ୍ରତିବାଦ କରେ ଓ ସମସ୍ତ ତାହାକୁ ସ୍ୱୀକୃତି ଦିଏ ନାହିଁ । ଚମତ୍କାର ସିମ୍ବଲ ମାଧ୍ୟମରେ କବି ମଣିଷର ଏଇ ଦୈହିକ ଦାବୀକୁ ମାନସିକ ସ୍ତରକୁ ଉନ୍ନୀତ କରାଇ ପାରିଛନ୍ତି । ଯୌନଚେତନାର ନିର୍ଦ୍ଧାରଣ ପାଇଁ ଦ୍ୱିପ୍ରହର ପରେ ସଞ୍ଜ, ସଞ୍ଜ ପରେ ରାତି ଆସେ । ରାତି ହିଁ କେବଳ ବୟସର ଦ୍ୱନ୍ଦ୍ୱ ବା ବ୍ୟବଧାନକୁ ଆବୃତ କରିପାରେ । ଜୀବନରେ ଆସେ ନୂତନ ଛନ୍ଦ, ନୂତନ ରସସିକ୍ତ ମାଧୁରିମା । ପରଦିନର ସକାଳ କଅଁଳ

ଫ୍ରେମରେ ଫାଟିପଡ଼େ । ଜୀବନର ମାଧୁର୍ଯ୍ୟ ନେଇ ଥିବା ହୃଷ୍ଟମନା ନାରୀ ଓ ପୁରୁଷ । ଦ୍ୱିତୀୟ ପଇଟିରେ ଆଧୁନିକ ସମାଜର ଅର୍ଥସର୍ବସ୍ୱ ମନୋବୃତ୍ତିର ଚିତ୍ରଣ କରାଯାଇଛି । ଜୀବନର ରୁଟିନ୍‌ଗତ କାର୍ଯ୍ୟରେ ଅର୍ଥର ଭୂମିକା ସବୁଠୁ ବେଶି । ଅର୍ଥ ବିନା 'ଶରତର ମଥା ଧୁଆ', 'ବେଣୀ ଖୋଲା', 'ଚଳଭଗ୍ନ' ରୂପର ଦୃଶ୍ୟ ଉପସ୍ଥାପନ । ଅନ୍ୟ ଚିନ୍ତାରେ ବ୍ୟଥିତ ଗୃହାଜନର ଚିତ୍କାରଟିଏ ପ୍ରକୃତିର ସବୁ ପରିବର୍ତ୍ତନ ଲକ୍ଷ୍ୟ କରେ । କିନ୍ତୁ ପ୍ରକୃତିର ସବୁ ରମଣୀୟତା ଓ ମାଦକତା ତା'ପାଇଁ ଅର୍ଥହୀନ ହୋଇଥାଏ ।

ଚିତ୍ରକଳ୍ପର ଏଇ ଅର୍ଥଦ୍ୟୋତକତା କିନ୍ତୁ ଊନବିଂଶ ଶତକରେ ସ୍ୱୀକୃତ ହୋଇ ନ ଥିଲା । ଉଦ୍ଦିଷ୍ଟ ଆବେଗ ଓ ଅନୁଭୂତିର ବଳିଷ୍ଠ ବାହକ ଏଇ କାବ୍ୟିକ ଭଙ୍ଗୀକୁ କବିତ୍ୱର ଦୁର୍ବଳତା ରୂପେ ଚିହ୍ନିତ କରିବାକୁ କମ୍ ପ୍ରୟାସ କରାଯାଇ ନ ଥିଲା । ଚଳିତ ଶତାବ୍ଦୀର ଦ୍ୱିତୀୟ ଦଶକରେ ଯଦି 'ଇମେଜିଷ୍ଟ ସ୍କୁଲ' ଗଢ଼ି ଉଠି ନ ଥାନ୍ତା, ତେବେ ଚିତ୍ରକଳ୍ପ ସେଇପରି ଅପାଂକ୍ତେୟ ହୋଇ ରହିଯାଇ ଥାଆନ୍ତା । ଏଇ ଆନ୍ଦୋଳନର ଅନ୍ୟତମ ପ୍ରବକ୍ତା ଏଜ୍ରା ପାଉଣ୍ଡ କହିଥିଲେ—ଯାବ୍ ଜୀବନରେ ଜଣେ କବି ଯଦି ଗୋଟିଏ ଭଲ ଚିତ୍ରକଳ୍ପ ସୃଷ୍ଟି କରିପାରେ, ତେବେ ତାର କାବ୍ୟ-ଜୀବନ ସାର୍ଥକ ହୁଏ । ଶ୍ରୀ ଲେଙ୍କା ଏଇ ଦୃଷ୍ଟିରୁ ବହୁ ଚମତ୍କାର ଚିତ୍ରକଳ୍ପର ସ୍ରଷ୍ଟା । ତାଙ୍କର ଚିତ୍ରକଳ୍ପ କବିତା ଭିତରେ କବିତାଟିଏ, ଶାମୁକା ଭିତରେ ମୁକ୍ତାଟିଏ । କବିଙ୍କ ଅବଚେତନ ମନ ଭିତରେ ସଙ୍ଗୋପିତ ଚିତ୍ରାବଳୀ କବିତା ଭିତରକୁ ଲମ୍ଫ ଦିଏ ସୁନା ପଞ୍ଜୁରୀରେ ରହିଥିବା ଶୁକପକ୍ଷୀ ଭଳି । ଗୋଟିଏ ଗୋଟିଏ ପଦରେ ସ୍ୱପ୍ନ ଜଗତର ତଥା ବାସ୍ତବ ଜଗତର ଓଲଟ ପାଲଟ ହୋଇଯାଏ । ଗତାନୁଗତିକତା ବିରୁଦ୍ଧରେ ଦୃଢ଼ ହୋଇ ଉଠେ କବି କଣ୍ଠ । ଯେମିତି—"ପୁରୀ : ପୃଥିବୀ ବ୍ୟାପୀ କଳୁଷିତ ଆଶ୍ୱସ୍ତ ମାନବିକତା" (ପୁରୀ—ଉନ୍ମୋଚନ) । ଦୀର୍ଘକାଳ ସଞ୍ଚିତ କବିଙ୍କର କ୍ଷୋଭ, ଅଶାନ୍ତି ଗୋଟାଏ ପଦରେ ଶେଷ । ଧର୍ମକ୍ଷେତ୍ର ପୁରୀର ତଥାକଥିତ ମାନବିକତାରେ ଅମାନବିକତାର ଆସ୍ତରଣ । ପୁଣ୍ୟ ଅପେକ୍ଷା ପାପର ପ୍ରଲୋଭନ ଏଠି ଅଧିକ । ସମନ୍ୱୟର ଦେବତା ବୋଲି ପୃଥିବୀବ୍ୟାପୀ ଚହଳ ପକାଉଥିବା ଠାକୁର ବୈଷମ୍ୟର ହେତୁ । ମନ୍ଦିର ଭିତରେ ବସିଥିବା ଦେବତା ମଣିଷର ଘୋଡ଼ା ଜଲାର ଇତିହାସ । ଚିତ୍ରକଳ୍ପର ସୃଷ୍ଟିକ୍ରିୟା ଭିତରେ କବିଙ୍କର ସମାଲୋଚନାତ୍ମକ ଦୃଷ୍ଟି ବେଶ୍ ତୀକ୍ଷ୍ଣ । ନିଜସ୍ୱ ଅନୁଭୂତିକୁ ବାସ୍ତବାୟିତ କରିବାରେ କବିଙ୍କର ଶକ୍ତି ଅସୀମ । କବିଙ୍କ ବ୍ୟକ୍ତିକ ଜୀବନର ଆଧ୍ୟାତ୍ମିକ ବିଶ୍ୱର ଏହାଦ୍ୱାରା ପ୍ରତିଫଳିତ ହୋଇଥିବାର ଲକ୍ଷ୍ୟ କରାଯାଇ ପାରିବ । ଏ ଅନୁଭୂତି କିନ୍ତୁ ଖୁବ୍ କମ୍ ଲୋକଙ୍କର ଆସେ । ସ୍ଥୂଳ ବିଶେଷତ୍ୱରେ ମୋଟେ ଆସେ ନାହିଁ । କବି ଚେତନାର ସ୍ଥିତି ସାଧାରଣ ମଣିଷଠାରୁ କେତେ ଊର୍ଦ୍ଧ୍ୱରେ ତାହା ଏଥିରୁ ଅନୁମାନ କରାଯାଇ ପାରିବ । ମାତ୍ର ଚେତନାର

ଉଚ୍ଚତାରେ ରହି ଶ୍ରୀ ଲେଙ୍କା ପାଠକମାନଙ୍କ ଦାବୀକୁ ଉପେକ୍ଷା କରି ନାହାନ୍ତି । ପାଠକ ମନରେ ଚିତ୍ରକଲ୍ପର ନିର୍ଦ୍ଦିଷ୍ଟ ଆବେଗଟିକୁ ଚହଲାଇ ଦେବା ପାଇଁ ତାଙ୍କର ଯତ୍ନର ଅନ୍ତ ନାହିଁ । ପ୍ରମାଣ ତ ହାତ ପାଆନ୍ତାରେ—

୧ । "ଶରତ ରାତିର ଆହ୍ଲାଦଭରା ଜହ୍ନର ବିଷାଦ
ଯେମିତି ବୃଷ୍ଟିପାତରେ ଢଳ୍‌ ବାଲା ଫେରିବାଲା
ଋତୁଙ୍କର ନାଟକୀୟତା ।"

( ଭିନ୍ନ ସ୍ୱାଦର କବିତା—ଗୀତ ଗା' ନାହିଁ ପକ୍ଷୀ )

୨ । "ଜେଜେମାଆଁ କୁଣ୍ଡଳୀରେ ଝୁଲି ଝୁଲି ଥକା ପଡ଼େ/ରାତିର ପବନ ।"

( ନିଜସହ ଗୋଟେ ସାକ୍ଷାତକାର ) ପୃ.—୭ ।

୩ । "ମଲ୍ଲୀଫୁଲର, ନାନାଜାତି ଅତର ଓ ଇଷ୍ଟିକର ପଞ୍ଜାମା ରଙ୍ଗରେ ହଜିଯିବା ଗେଣ୍ଡେଇ ହୁଏ ।"

( ସକାଳ, ସଞ୍ଜ ଓ ଦ୍ୱିପ୍ରହର—କବିତାର ମୁହଁ )

ଫେରିବାଲା ତା' ନିକଟରେ ମହଜୁଦ୍ ଥିବା ସାମଗ୍ରୀଗୁଡ଼ାକୁ ବିକ୍ରୀ କରିବା ପାଇଁ କେତେ ଭଙ୍ଗୀରେ, କେତେ ଛଟକରେ ଲୋକଙ୍କୁ ବୁଝାଇବାକୁ ଚେଷ୍ଟା କରେ । ରାସ୍ତା କଡ଼ରେ, ହାଟ ବଜାରରେ, ବସ ଟ୍ରେନ୍‌ରେ ସେ ତାର ପସରା ଧରି ଗରାଖଙ୍କୁ ଆକର୍ଷଣ କରିବା ପାଇଁ ଉଦ୍ୟମ କରେ । କଥାରେ ଆନ୍ତରିକତାର ବାଜ ଭୁଲି ଭୁଲି ଅନ୍ତର ହୋଇଯାଏ ଯେ । ତଥାପି ଶସ୍ତା ଦରରେ କିଣିଥିବା ଜିନିଷଗୁଡ଼ାକର ପ୍ରକୃତ ସ୍ୱରୂପ ଜଣାପଡ଼ିଗଲେ ଲୋକେ ତା' ଉଦ୍ଦେଶ୍ୟରେ ଗାଳି ବର୍ଷଣ କରନ୍ତି । 'ଶରତ ଋତୁର ଜହ୍ନ' ଠିକ୍ ସେଇଭଳି । ଶରତର ଭସା ବାଦଲ ଆଢ଼ୁଆଳରେ ତୋଫା ଜହ୍ନ ଲୁଚିଯାଏ । କେତେ ମଉଜରେ, କେତେ ରଙ୍ଗରେ କଥା କହୁଥିବା ଜହ୍ନ ଆପଣ ଛୁ ଫେରିବାଲା ଭଳି ମେଘ ତଳେ ଲୁଚିଇ ଦିଏ । ଜୋସ୍ନାର ମଧୁ ସ୍ୱାଦ ଧାରରେ ଆସକ୍ତ ହୋଇ ପଡ଼ୁଥିବା ମଣିଷ ମନରେ କ୍ଷଣିକ ନୈରାଶ୍ୟ ଜାଗି ଉଠେ । ଦ୍ୱିତୀୟ ଓ ତୃତୀୟ ଦୃଷ୍ଟାନ୍ତରେ ନିର୍ଦ୍ଦିଷ୍ଟ ଅର୍ଥ ସଂକ୍ରମଣ ପାଇଁ ସ୍ୱାଭାବିକତାର ପ୍ରତ୍ୟୟ ସୃଷ୍ଟି କରେ । ଚିତ୍ରକଳ୍ପ ଅନେକ ସମୟରେ ତୁଳନାତ୍ମକ ଚିତ୍ର ମାଧ୍ୟମରେ ଆପଣାର ବକ୍ତବ୍ୟ ପେଶ୍ କରେ । ବିଭିନ୍ନ ମାନସିକ ଅବସ୍ଥା, ଅନୁଭୂତି ଏକୀକୃତ ହୋଇଯାଏ ଚିତ୍ର କଳ୍ପନାରେ । ବସ୍ତୁଗତ ଓ ଭାବଗତ ବିଷୟକୁ ପ୍ରତ୍ୟକ୍ଷ ଭାବରେ ବ୍ୟବହାର କରି ଶ୍ରୀ ଲେଙ୍କା ନିଜ ମାନସିକ ଅବସ୍ଥାର ପୋଡ଼ଣୀଟିକୁ ଖୋଲି ଦେଇଛନ୍ତି କହିଲେ ଅତ୍ୟୁକ୍ତି ହେବ ନାହିଁ । ତାଙ୍କ ଚିତ୍ରକଳ୍ପଗୁଡ଼ିକୁ ଆଖିରେ ଦେଖିହୁଏ, କାନରେ ଶୁଣି ହୁଏ ଏବଂ ଅନ୍ତରରେ ଉପଲବ୍ଧି କରିହୁଏ । କିନ୍ତୁ 'ଉତ୍ତରଣ'ରେ

ଏ ଦୃଷ୍ଟିରୁ କିଛୁଟା ଦୁର୍ବଳତା ଅବଶ୍ୟ ଲକ୍ଷ୍ୟ କରି ହେବ । ଅତ୍ୟନ୍ତ କଷ୍ଟ କଳ୍ପନା ଭିତରେ ତାଙ୍କ କାବ୍ୟିକ ସେନ୍‌ସିବିଲିଟିଗୁଡ଼ିକ କବିତାର ଅନ୍ତରାଳରେ ରହିଯାଏ । ଶ୍ରୀ ସୀତାକାନ୍ତ ମହାପାତ୍ର ଏଇ ପ୍ରସଙ୍ଗରେ କହନ୍ତି—"× × × ଶବ୍ଦ ଗ୍ରନ୍ଥନରେ ଅନେକ କ୍ଷେତ୍ରରେ ଅସାବଧାନତା ପରିଦୃଷ୍ଟ ହୁଏ, ଯାହା ଫଳରେ ଚିତ୍ରକଳ୍ପ ବା ରୂପକ ଜରିଆରେ ବ୍ୟକ୍ତ ନିରପେକ୍ଷ, ନିର୍ଲିପ୍ତ ଭାବପ୍ରକାଶ ସମ୍ଭବ ହୋଇନି । ଅନ୍ୟ ପକ୍ଷରେ ଶବ୍ଦର ପଟୁଆରରେ କବି ଯେ ନିଜେ ବିମୁଗ୍ଧ ଓ ନିଜେ ଲାଇଟ୍ ମଶାଲ ଧରି ସେ ଶୋଭାଯାତ୍ରାରେ ଆଗେଇ ଯାଉଛନ୍ତି, ଏ କଥା ମନକୁ ବାରମ୍ବାର ଆସେ । ନିର୍ଦ୍ଦିଷ୍ଟ, କଠିନ, ସଂଯତ ଶବ୍ଦ ବ୍ୟବହାରର ଅଭାବରେ ଇମେଜଗୁଡ଼ିକ ମଧ୍ୟ ବିଖଣ୍ଡିତ ଓ କ୍ଲିଷ୍ଟ । କୌଣସି ନିର୍ଦ୍ଦିଷ୍ଟ (concrete) ରୂପ ସେମାନେ ଦେଇ ପାରୁ ନାହାନ୍ତି ।" (୭) ନିଦର୍ଶନ ସ୍ୱରୂପ ଗୋଟାଏ ଦୃଷ୍ଟାନ୍ତ ନିଆଯାଉ—

"ତୁମମାନଙ୍କ ସଙ୍ଗୀତର ଅସଙ୍ଗତି ଓ ସାଙ୍କେତିକତାର ସ୍ୱର୍ଣ୍ଣ କେନ୍ଦ୍ରକ ସତ୍ତାର ମୁଁ ଏକ ଦୁର୍ବିନୀତର ଅନର୍ଗଳ ଆଶୀର୍ବାଦର ପ୍ରମାଣ ।" (ଉତ୍ତରଣ) ଆବେଗର ନିର୍ଦ୍ଦିଷ୍ଟ ରୂପ ଏଠାରେ ଅସ୍ପଷ୍ଟ । ତେଣୁ ଇମେଜ୍‌ର ଉଦ୍ଦେଶ୍ୟ ବ୍ୟାହତ । ବୋଧହୁଏ ସାଇକୋ ଆନାଲିସିସ (Psycho-analysis)ର ପ୍ରଭାବ ହେତୁ କାବ୍ୟଭାବନାର ସ୍ପଷ୍ଟତା ଉପେକ୍ଷିତ । କିନ୍ତୁ ଗୋଟାଏ କଥା ଏଠାରେ ସ୍ମରଣ ରଖିବା ପ୍ରୟୋଜନୀୟ ମନେହୁଏ ଯେ 'ସୁନାଫସଲ', ଓ 'ପ୍ରୀତି ପ୍ରତୀତି'ର କବି ଯେତେବେଳେ ପାରମ୍ପରିକ କାବ୍ୟରଚନାର ଭଙ୍ଗୀ ପରିହାର କରି ନୂତନ ଭଙ୍ଗୀଟିକୁ ଗ୍ରହଣ କରିଛନ୍ତି, ସେତେବେଳେ ସେ ବେଶି ପରିମାଣରେ ଏକ୍ସପେରି-ମେଣ୍ଟାଲ ହୋଇଯିବାର ଆକାଂକ୍ଷା ପୋଷଣ କରିଛନ୍ତି । ଯାହା ଫଳରେ ଚିତ୍ରକଳ୍ପ ପ୍ରୟୋଗରେ ସେ କିଛୁଟା ସ୍ୱେଚ୍ଛାଚାରୀ ହୋଇ ପଡ଼ିଛନ୍ତି । କିନ୍ତୁ ଏହା ସତ୍ତ୍ୱେ ତାଙ୍କର ପ୍ରତନ୍ୟାଶୀଳ ମନର ପରିଚୟ ପାଇବାରେ ଅସୁବିଧା ରହେ ନାହିଁ ।

"ହେ ମୋର ଧଳ ଧଳ ଗୁଗଲ ଓ ଭୁଜଙ୍ଗର ବଂଶଧର
ହେ ମୋର ମଦମତ୍ତ ପ୍ରୟୋଜନର କ୍ଷିପ୍ର ଶୁଭ୍ର ଶିକାର ଆସକ୍ତି ।"

ଜଟିଳ ଜୀବନ ଜିଜ୍ଞାସାର ଅନୁରୋଧରେ ଏ ପ୍ରକାର ଚିତ୍ରକଳ୍ପ କବିମାନସର ପ୍ରେରଣା ଭୂମି ହୋଇ ପଡ଼ିଛି । ମାତ୍ର ଏ ସଙ୍କଟରୁ ଆପଣାକୁ ଖୁବ୍ ଶୀଘ୍ର ମୁକ୍ତ କରିଛନ୍ତି କବି । ଓସ୍ତାଦ ହାତର କରାମତି ଚିତ୍ରକଳ୍ପରେ ଆଣି ଦେଇଛି ବିଚିତ୍ର ବ୍ୟଞ୍ଜନା । 'ସ୍ମରଣ ବିସ୍ମରଣ' ହିଁ 'ଉତ୍ତରଣ'ର ଉତ୍ତରିତ ଅବସ୍ଥାର ଅତଳ ଗୁହାଟିକୁ ପାଠକଙ୍କୁ ଧରାଇ ଦେଇ ପାରିଛି ।

୭ । ମହାପାତ୍ର, ସୀତାକାନ୍ତ— 'ଉତ୍ତରଣ'ରେ ଅଭିମତ ଦ୍ରଷ୍ଟବ୍ୟ ।

"ବନାନୀ ! ତୁମର ଏ ଭଙ୍ଗାଗଢ଼ା ପାହାଡ, ଓ
ଓଷଧୀର ସବୁଜ ପତ୍ରରେ
ଝୁଲାଏ ବସନ୍ତ ଯେବେ ଗୁଡ଼ପତ୍ର ବାଅଇ ଶରତ
ଓ ଅଞ୍ଜୁଳାଏ ହେମନ୍ତର ଲୁହରେ ଧୋଇ
ବର୍ମା ଶୁଏ ଅଜଗର ସାପର ସ୍ମୃତିରେ —
ମୋତେ ଖୁବ୍ ଭଲ ଲାଗେ ।"
(ବନାନୀକୁ—ସ୍ୱର୍ଣ୍ଣ-ବିସ୍ମରଣ)

ଓଷଧୀର ସବୁଜ ପତ୍ର, ବସନ୍ତର ଝୁଲାଇବା, ଶରତର ଗୁଡ଼ପତ୍ର ଦେବା, ଅଜଗର ସାପର ସ୍ମୃତିରେ ବର୍ମା ଶୋଇବା ଚିତ୍ରକଳ୍ପଗୁଡ଼ିକ କବିଙ୍କ ବର୍ଣ୍ଣାଢ଼୍ୟ ସୌନ୍ଦର୍ଯ୍ୟବୋଧର ଧୂନ୍ନମସ୍ତ ରୂପ । ଏହାଦ୍ୱାରା କବିତାର କଂକ୍ରିଟ୍‌ନେସ୍ ଜଣାପଡ଼େ । କେବଳ ଏତକ ନୁହେଁ, ଏ କବିତାର ପ୍ରତିଟି ରୂପକଳ୍ପ ଗୋଟିଏ ମାଆର ଅନେକ ସନ୍ତାନ ଭଳି ଆନ୍ତରିକତା ସୂତ୍ରରେ ବନ୍ଧା । ଗୋଟିକୁ ଛାଡ଼ି ଅନ୍ୟଟିର ସ୍ଥିତି ଦୁର୍ବଳ । ମାତ୍ର ରୂପକଳ୍ପ ଏପରି ନିବିଡ଼ ବନ୍ଧନର ପରାଧୀନତାକୁ ଯେ ସବୁବେଳେ ମାନି ନେବ, ଏପରି କିଛି ନୁହେଁ । ତେବେ ବିଭିନ୍ନ ଚେତନାକୁ କବି ଏକତ୍ରିତ କରିବାରେ ଚେତନାର ସ୍ୱାଧୀନତା ଖର୍ବିତ ହୁଏ ନାହିଁ । ଇଲିଅଟ୍ ଓ ତାହାକୁ ଚେତନାର ସମନ୍ୱୟ ( unification of sensibility ) ନାମ ଦେଇଗଲେ । କବି ମାନସରେ ଚେତନାଗୁଡ଼ିକର ଏକତ୍ରୀକରଣ ଉପରେ ସମ୍ପୃକ୍ତ ଶ୍ରୀ ଜେନା ତାହାର ପ୍ରମାଣ ଦେଇଛନ୍ତି 'ମଣିଷ' କବିତାରେ ।

"ଦୋ ମୁଣ୍ଡିଆ ସାପ, କେଞ୍ଚୁଆ ମଣି /ମନ ପେଟ୍ସ ପରି ବଦେକ,
ଛଞ୍ଚାଣ ପରି ଇଚ୍ଛା /ଓ କଙ୍କି ପରି ସ୍ୱପ୍ନ /କାମ୍ଭୀର ପରି ସ୍ଥିରତା କେମିତି
ବସା ବାନ୍ଧିଛି ଦେଖ ।" (ସ୍ରୋତର ନାମ ରତ୍ନ) ।

ଗୁଚ୍ଛାଏ ଚିତ୍ରକଳ୍ପ (a set of images) ଦ୍ୱାରା କବିର ଦୌଡ଼ କେତେ ବାଟ ଧରିବାରେ ଅସୁବିଧା ହୁଏ ନାହିଁ । ବିଷୟର ବୈଚିତ୍ର୍ୟ ଦୃଷ୍ଟିରୁ ରୂପକଳ୍ପର ମହିମାକୁ ଉପଲବ୍ଧି ସ୍ତରକୁ ଆଣିବାକୁ ପଡ଼େ ।

କବି ଶ୍ରୀ ଜେନା ଚିତ୍ରକଳ୍ପର ନୂଆ ନୂଆ ପ୍ରୟୋଗରେ ସବୁବେଳେ ଆଗ୍ରହୀ । ଖଣ୍ଡିତ ଓ ପୂର୍ଣ୍ଣାଙ୍ଗ ଚିତ୍ରକଳ୍ପ ରଚନାରେ ତାଙ୍କର ଅନୁଶୀଳନାତ୍ମକ ଦୃଷ୍ଟିକୋଣ ସବୁବେଳେ ପ୍ରାଣବନ୍ତ । କେତେକ ଚିତ୍ରକଳ୍ପାତ୍ମକ କାବ୍ୟାଂଶ ଭିତରୁ ଆମେ ତାର ପରିଚୟ ପାଇ ପାରିବା । ଯଥା—ଜୀବନର ସଫେଦ ଆକାଶ, ପବନର ପାନ୍ଥଆରେ ସବୁଜିମା ସଜାଡୁଛି ବେଣୀ, ମୋ ଦେହର କୂଳେ କୂଳେ କାଶତଣ୍ଡୀ ଫୁଲର୍

ଲହର, ଲାଜକୁଳୀ ଲତାର ଦେହରେ ଭଙ୍ଗ ମୋଡ଼ି ହେଉଥିବା ଶେଫାଳିର ମୁହଁ ଓଠ, ଦରବୁଡ଼ା ସୂର୍ଯ୍ୟ, ନେଳୀ ଆକାଶର ବହ୍ନିଲତା, ଅରଣ୍ୟର ନାଦ, କଦମ୍ବ ଫୁଲିଆ ଚୂଳ, ବସନ୍ତ ଅନ୍ତରେ ଝଡ଼ିଲୁଚ ଫୁଲର ହାଡ଼, କାକୁଡ଼ି ଫୁଲର ଦୁଃଖ ଦେଖା ନଦେଖା ପୀରତର ସୋହାଗକୁ ଖୋଜେ, ଦେହୋଗଁରେ ଅଭିଜାତ ହସର ଅବେଗ, ଅନାବନା ଶବ୍ଦର ପାଦୁଖଣ୍ଡ, ଝରିହାନିଆ ନଈର ଶୋଷ, କରୁଣାର ସଦ୍ୟ ସକାଳ, ନିରୁକ୍ତ ବେଦନାର ମନ୍ଦାରମାଳ, ଦୁଃଖର ଉଜ୍ଜ୍ୱଳ ଝରି, ମନସ୍ତାପର ଗର୍ମିଷ୍ଟ କୋଣ, ଖୁସିବାସିର ନିଭୃତ ଅନ୍ଧକାର, ପୋଡ଼ଖିଆ, ବୁଢ଼ୀଆଣ୍ଡ ମଣିଷ ପଣିଆର ନିଃଶବ୍ଦ, ଜହ୍ନିଫୁଲର ସୋହାଗ, ରଣିଫୁଲିଆ ରାତର ହୃଦୟ, ଅନ୍ତାଳବାର ଜପନ୍ତ ପାଶା, ହସାବ ନିଦାଣର ନିଷ୍ଠୁର ହୃଦୟସ୍ଥତା, ଅଚିଣା ଜଣ୍ଡା-ବଣର ସିଂହାସନ, ତଉପାଶରେ ଡ଼ମାଡ଼ମା ଆଖିର କପଟ ବୃନ୍ଦାବନ, ପୁମିକୁଆର ନିଷ୍ଠୁ ହୃଦୟ ମମତା, ଫଣଫଣିଆ ଜହ୍ନର ମୁହଁ, ବାଘୁହର ମଣିଷର ପେକୁଆ ଆଖିର କୋରଡ଼, ବାଦୁଡ଼ିଆ ଅନ୍ଧାର, କରୁଣାର ବୃନ୍ଦଆଡ଼, ହିଂସାର ମେଘନାଦ ପାଟେଶ୍ୱ, କଳାରାତର କଚଟିରୁ ବୋହି ପଡ଼ୁଥିବା ଜାକର, ନର୍କର ଜଧିବନ, ମିଳୁଥା କୋଧର ବାଦଶାହୀ ଗଜଲ, ବ୍ୟାକୁଳତାର କେବଳ ଅଥୟ ଫଗୁଣ, ସମୟର ବୁଢ଼ା ହାଣ୍ଡି, ଦୁଃଖର ନଣ୍ଡା ପାହାଡ଼, ସମୟର ଦାନ୍ତୁରୀ ମୁହଁ ଫୁଲ, ବସ୍ୟାର ଗୋଲକ, ଅଗଣାର ନୃଶଂସ ଖରା, ଖୁସିର ମଞ୍ଜି ବଡ଼, ଝରିପଡ଼ୁଥିବା ଫୁଲର ଦୁଃଖିତ ଡେଣା, ପରମ ଦୁଃଖର ପୁଷ୍ପିତ ଶବାଧାର, ମେଣ୍ଢାଭଳି କାଳୁସ୍ଥ ସମୟ, ମୌନତାର ଜେଲଘର, ଖେଦୁଅର ଚର୍ଣ୍ଣପର୍ବତ, ମେଘର ପଲସ୍ତରା ଦିଆ ଆକାଶ, ଜହ୍ନରାତର ଧସ୍ତାଧସ୍ତି ଦୁଃଖ, କଳାହାଣ୍ଡିଆ ମେଘ ପରି ସମୟ; ଗୁମ୍ ସୁମ୍ ପବନର କାନ୍ଦଣା, ଘାସର କଅଁଳ ଆହ୍ଲାଦ, ମୌନତାର ମେଘନାଦ ପାଟେଶ୍ୱ, ଅଂଧାରର ପିଠି, ଅଜଗର ସାପର ଛଳନା, ଦୁଃଖର ଚଦର, ଚତୁର୍ଭୁଜ ପ୍ରୀତି, ବଢ଼ିପାଣିର କୌତୁକ, ଅସହାୟ ପିଲାଟି ପରି ଭାଗ୍ୟ, ଅଂଧାରର ପବନ ନର୍କ, ଲଙ୍ଗଳିଆ ସ୍ମୃତି ଇତ୍ୟାଦି । ବହୁବଚନର ସଞ୍ଚିତ ଅଭିଜ୍ଞତା ରୂପକଳାଶ୍ରୟୀ ହୋଇ ଉଠିଛି । ପ୍ରତିଟି ବାକ୍ୟାଂଶ କବି ଚେତନାର ଅଗଣାକୁ ବହୁ ରଙ୍ଗରେ ରଙ୍ଗାୟିତ କରନ୍ତି ।

ସାଦୃଶ ବ୍ୟଞ୍ଜକ ଶବ୍ଦ ମାଧ୍ୟମରେ ଜଗତର ଗୋଟିଏ ଗୋଟିଏ ରୂପ ଉଦ୍‌ଘାଟିତ ହେବା ଚିତ୍ରକଳ୍ପର ଲକ୍ଷ୍ୟ । ହ୍ୟୁମ୍ କହନ୍ତି—ସାଦା କଥା କହି କିଛି ଲାଭ ନାହିଁ । ପାଉଣ୍ଡ ଏ କଥାରେ ଏକମତ । ସେ କହନ୍ତି—"An image is that which presents an intellectual and emotional complex in an instant of time.", ଇଲିଅଟ୍ ଏହାକୁ କାବ୍ୟିକ ଅନୁଷଙ୍ଗ ବା 'Objective Co-relative' ଭିତରକୁ ନେଇ ଯାଇ ଏକ

ନୂତନ କାବ୍ୟସୃଷ୍ଟି ଦେବାର ପ୍ରୟାସ କରନ୍ତି । କବିତାରେ ବ୍ୟବହୃତ ଶବ୍ଦ ଯଦି ସମ୍ପୂର୍ଣ୍ଣ ନୂଆ ହୁଏ, ତେବେ ତାହା ଭାବ ସଂକ୍ରମଣର ବାଧକ ହୋଇ ଠିଆ ହୁଏ । କବି ତେଣୁ ପୁରୁଣା ଶବ୍ଦକୁ ନୂଆ ଭଙ୍ଗୀରେ ସଜାଏ । ସ୍ଥଳ ବିଶେଷରେ କବି ନୂଆ ଶବ୍ଦ ଯେ ବ୍ୟବହାର କରନ୍ତି ନାହିଁ, ଏକଥା ନୁହେଁ, କିନ୍ତୁ ତାହା ଏପରି ଭଙ୍ଗୀରେ କୁହଯାଏ ଯେ, ନୂତନ ଚେତନାର ଆଭାସ ତା' ଭିତରୁ ମିଳିଥାଏ । ବସ୍ତୁଗତ ଧାରଣାକୁ ଚିତ୍ରକଳ୍ପ ବିନିର୍ମିତିକ ସମ୍ବନ୍ଧ ସଂଯୁକ୍ତ କରିହୁଏ । ବସ୍ତୁଗତ ଧାରଣା ପୁରୁଣା ହୋଇପାରେ, କିନ୍ତୁ ତାହା ଅଭିନବ ସମ୍ବନ୍ଧ ସଂଯୁକ୍ତୀକରଣ ହେତୁ ନୂତନ କାବ୍ୟ ସୁଷମାର ଆବିର୍ଭାବ ଘଟେ । ଶ୍ରୀ ଲେଙ୍କାଙ୍କ କବିତାରୁ ତାହାର ବହୁଳ ଦୃଷ୍ଟାନ୍ତ ଦିଆଯାଇ ପାରେ ।

୧ । କୁକୁର ପରି ବିଶ୍ୱସ୍ତ /ଜୀବଟିଏ /ମୋ ଦୁଃଖ ।

(ପୋଷା କୁକୁର—ଉନ୍ମୋଚନ)

୨ । ପକେଟରେ ଚୋରି ହୋଇଥିବା /ପଚିଶ ଟଙ୍କା କାଗଜ ଭଳି /ଦେଶର ଭବିଷ୍ୟତ,/ ସିଗାରେଟ୍ ଧୂଆଁ ଭଳି /ଅନ୍ଧାର ଯାଉଥିବା /ଅନୁଭୂତିର ବାସ୍ନାପରି /ଲୋକଙ୍କ ଭାଗ୍ୟ—(ଅର୍ଥହିନ୍—ଉନ୍ମୋଚନ) ।

୩ । ମୁଁ ଉଚା ପାହାଡ଼ ଶିଖରୁ ଝୋଲଟିଏ ପରି / ଖସୁଥିଲି ବେଳେ ତଳକୁ, ସବୁଜ କଅଁଳ ଘାସର ନିଃସଙ୍କୋଚ ସ୍ନେହର ଇଲାକାକୁ । (ଭିନ୍ନସ୍ୱାଦର କବିତା—ଗୀତ ଗା' ନାରେ ପକ୍ଷୀ )

୪ । ଡାକ୍ତର ଖାନାରେ ମୁର୍ଦ୍ଦାର ଭଳି /ଗଢ଼ୁଥିବା ତୁମ ବାପାଙ୍କ ସ୍ନେହ ସଜଳ କରୁଣାର ଭସ୍ମକୁ—(ତୁମେ ଯେଉଁମାନେ ଆସୁଚ—ଗୀତ ଗା' ନା ରେ ପକ୍ଷୀ)

୫ । କିନ୍ତୁ ମନେ ନ ପଡ଼ିବା ବେଳେ /ଭଙ୍ଗା ଦର୍ପଣ ଭଳି /ସମସ୍ତଙ୍କ କାନ୍ଦଣା ଦିଶେ । —(କେଉଁ ନ ଥିଲା ବେଳେ) ।

୬ । ଜଦ୍‌ଖୋର /ସ୍ତ୍ରୀ ଲୋକଟି ପରି /କେତେବେଳେ ବର୍ଷା ତ /କେବେ ଖରାର/ ନଗ୍ନକ ପରିହାସରେ /କୁଡ଼ କୁଡ଼ ଆଗ୍ନେୟ ଚପଳତା । (ଖଣ୍ଡକୃତି)

୭ । ମୁଁ ତେଣୁ ଘୁରି ବୁଲେ ବାରବୁଲା ଯୋଗୀ ପରି

କାମନା କୁଣ୍ଡଳୀ ପିଙ୍ଗଳାର ନଅରୁ ନଅର ।

(ଆଖି—ସ୍ମରଣ-ବିସ୍ମରଣ)

ପ୍ରତିଟି ଚିତ୍ରକଳ୍ପରେ ରହିଛି ତୁଳନା । ପାଠକ ନିଜର ବସ୍ତୁଗତ ଧାରଣାକୁ ନେଇ କ୍ରମଶଃ ତାଙ୍କର ସ୍ୱପ୍ନ ମିଳାଇ ପଢ଼ିଲେ କବିତାର ଅନ୍ତର୍ନିହିତ ରସଧାରାର

ପରିଚୟ ପାଇ ପାରିବେ । କିନ୍ତୁ ଏଲ ମେଟାଫର ପାରଂପରିକ କାବ୍ୟର ମେଟାଫର ପରି ଦେଖାଯାଏ ନାହିଁ । ସେଥିପାଇଁ ଚିତ୍ରକଳ୍ପକୁ ବା ଇମେଜକୁ କବିତାରୁ ସିଧାସଳଖ ଭାବେ ଉପମାନ ଓ ଉପମେୟକୁ ଆହରଣ କରି ହେବ ନାହିଁ । ଆଉ ଏକପ୍ରକାର ଚିତ୍ରକଳ୍ପ ଅଛି । ସେଉଁଠି ଠିକ୍ ତୁଳନା ନ ଥାଏ, ଥାଏ କେବଳ କବିଙ୍କର ଅନୁଭୂତି । ଯେପରି—"ମନ୍ଦାଗ୍ନି ଜ୍ୱଳାଉଚି ରୋ ଦେହର ଶାଖାରେ ଶାଖାରେ" (ମାନଭଞ୍ଜ—ମୂଲଣ ବସୁବଣ) । ଟମୀସୂପୀର ଆଭିଜାତ୍ୟ କବି ଲକ୍ଷ୍ୟ କରିଛନ୍ତି ନଟିନୀ ରମଣୀର ଅଙ୍ଗ ପ୍ରତ୍ୟଙ୍ଗରେ । ଯେମନକଲ୍ପ ଗର୍ଭବତୀ ହେବାର ନବୋଢା ଲୁହର ଜଳ ହୋଇ ଝରି ପଡୁଛି ବାଲ୍ମିକିଙ୍କ ଚକ୍ଷୁରୁ । ଅଧୀର ଆବେଗରେ ପୋଡ଼ି ଯାଉଛି ପ୍ରେମର ସାମ୍ରାଜ୍ୟ । ପ୍ରେମିକର ସେନ୍ଦୁରର ବଂଶୀ ଆଜି ପ୍ରେମିକା ଲୁହର ତପସ୍ୟା । ଅନୁତାପରେ ଦଗ୍ଧୀଭୂତ ଅସ୍ଥିର ଅଳସୀ ଦେହ । ଭବିଷ୍ୟତର ଦୁର୍ଦ୍ଦଶାକୁ ସେ ଆତଙ୍କିତ ଦୃଷ୍ଟିରେ ଅନାଉଛି । ତାର ଜଳନ୍ତା ଲୁହରେ ଶୁଙ୍ଖି ପଡ଼ୁଛି 'ମମତାର କୋଠି' । ମାନଚିତ୍ରର ଉପତ୍ୟକାରୁ ସେ ଫେରି ଆସୁଛି ବାସ୍ତବ ଜଗତକୁ । ଅନ୍ୟ ଏକ କବିତାରେ ପ୍ରେମକୁ 'ନିର୍ବାସିତ କୋଲାକୋଲିର ସମ୍ଭ୍ରାନ୍ତ ନଗ୍ନତା' କହି କବି ବାସ୍ତବତାର ଗୋଟାଏ ଚିତ୍ରପଟ୍ଟ ଉନ୍ମୋଚନ କରିଛନ୍ତି । ହ୍ୟୁମ୍‌ଙ୍କ ସିଦ୍ଧାନ୍ତ ଅନୁସାରେ ଦେଖିଲେ ଏଇ ଚିତ୍ରକଳ୍ପ-ଗୁଡ଼ିକ ତ ଆଣ୍ଟିରୋମାଣ୍ଟିକ୍ ପରିବେଶ ସୃଷ୍ଟି କରି ଦେଉଛି । ଏଇଟା ସତ୍ୟୋପଲବ୍ଧିର ଗୋଟିଏ ଢଗ । କିନ୍ତୁ ଚିତ୍ରକଳ୍ପବାଦୀ କବି ଯେ ସବୁବେଳେ ଏଇପରି ଆଣ୍ଟିରୋମାଣ୍ଟିକ୍ ଭାବେ ବଞ୍ଚି ରହିବ, ଏହାର କୌଣସି ଯୁକ୍ତି ନାହିଁ । ବରଂ ରୋମାଣ୍ଟିସିଜ୍‌ମ ବିରୁଦ୍ଧରେ ହ୍ୟୁମ୍‌ଙ୍କର ମନ୍ତବ୍ୟକୁ ରିଚାର୍ଡ୍. ଏଚ୍. ଫୋଗ୍‌ଲେ ନାପସନ୍ଦ କରନ୍ତି ତାଙ୍କର Imagery of Keats and Shelley' ଗ୍ରନ୍ଥରେ । ଦୃଶ୍ୟମାନ ଜଗତର ସୌନ୍ଦର୍ଯ୍ୟ ଉଦ୍‌ଘାଟନ ପାଇଁ ନୂତନ ରୂପ ସୃଷ୍ଟି ଅନିବାର୍ଯ୍ୟ ହୋଇ ଉଠେ । ତାହା ରୋମାଣ୍ଟିକ୍ ହେଉ ବା ଆଣ୍ଟି-ରୋମାଣ୍ଟିକ୍ ହେଉ ।

ଚିତ୍ରକଳ୍ପ ମାଧ୍ୟମରେ ଶ୍ରୀ ଲେଙ୍କାଙ୍କ ମୌଳିକ ସ୍ୱର ବେଶ୍ ପ୍ରତିଷ୍ଠିତ । ଯଦିଓ ଲେଖନୀ ତାଙ୍କର ସକ୍ରିୟ, ତଥାପି ସେ ଯେ ସିଦ୍ଧିର ଗୌରବ ଅର୍ଜ୍ଜନ କରିଛନ୍ତି, ଏକଥା କହିଲେ ସତ୍ୟର ଅପଲାପ ହେବ ନାହିଁ । ଅନେକ ସମ୍ଭାବନା ନେଇ ତାଙ୍କର କବିତା ପାଠକ ନିକଟରେ ପ୍ରତିଶ୍ରୁତିବଦ୍ଧ । ତାହା ସତ୍ତ୍ୱେ ବି ବେଳେବେଳେ ପ୍ରତିଶ୍ରୁତିର ଖିଲାପ କରିଛନ୍ତି କବି । ଏଇ ଦୁର୍ବଳତା ଯେ କେବଳ ତାଙ୍କର, ଏହା ମନେ କରିବା ଠିକ୍ ହେବନି । ବରଂ ପ୍ରତ୍ୟେକ ଚିତ୍ରକଳ୍ପବାଦୀଙ୍କ-ଠାରେ ଏଇ ଦୁର୍ବଳତା ସୁଲଭ । କବିତା କ୍ଷେତ୍ରରେ ଯାବତୀୟ ଦୁର୍ବୋଧତା ଓ ଅବୋଧ୍ୟତାର ନିନ୍ଦାଗାନ ପାଇଁ ଏଇ ଚିତ୍ରକଳ୍ପ ଅଳଂବହୁତ ଦାୟୀ । କମଳାକାନ୍ତଙ୍କ

କୃଷ୍ଣ ଭୂମିର ଦେବଦାରୁବଣ, କୁଆଡ଼ିଆ ହାଉର ଢାଉକୁ ନଉଁଷ୍ଠ ଅର୍ଥ ପ୍ରଦାନରେ ପାଠକଙ୍କୁ ହତାଶ କରିଛନ୍ତି । 'ଜନସନ୍ତୁ ଗୋଟିଏ ସାକ୍ଷାତକାର'ରେ ଯଦିଓ ଅନେକ ଚମତ୍କାର ଚିତ୍ର ସଂଗଠନ ଦେଖିବାକୁ ମିଳେ, ତଥାପି କବି କେତୋଟି ଟାସ୍ପାଳନରେ ପାଠକଙ୍କୁ ଜାଣି ଜାଣି ଶବ୍ଦର ଏକପାଖିଆ ବ୍ୟୂହ ଭିତରେ ବନ୍ଦୀ କରିଛନ୍ତି । ଯେମିତି—"ମୁଁ ରଣ କ୍ଷେତ୍ରର କଙ୍କାଳ ଦେଖିଲି ମୋ କୁଣ୍ଡଳୀର କୁଣ୍ଡଳ ଚକଟରେ /ଗୋଟର ଅଂଧାର ହସେ ଗୁଣୁଗୁଣୁ ଲୁଣ୍ଠନ୍ତି ଚଂପୁର ତମ୍ପାଟେ । ଲଂଫନ ଡୋଳୁଥିବାବେଳେ କବି ମଉଆଳ /ସିନ୍ଧୁକ ଖୋଲୁଥିଲାବେଳେ ଘଣ୍ଟିଆଳ /ଚୁମା ଖାଇବା ଶବ୍ଦରେ ଚଉଁକାଯାଏ ଚନ୍ଦ୍ରାବତୀ /ଚୁମା ଖାଇବା ନ୍ୟାୟରେ ଚାଁ ଚାଁ କରେ ଚେମେଣିଆ," ଇତ୍ୟାଦି । ସମାଲୋଚକ ଅଧ୍ୟାପକ ଦାଶରଥି ଦାସ କହନ୍ତି—"ଭଲ କବିତା ଚିରକାଳ କିଛିଟା ଦୁର୍ବୋଧ । କିନ୍ତୁ ଦୁର୍ବୋଧ କବିତା ମାତ୍ରେ ଭଲ କବିତା ନୁହେଁ । ଅଥଚ କେତେକ କବି ଓ ସମାଲୋଚକ ପାଠକକୁ ବୁଝାଇଲେ, "କବିତାରେ ଯେଉଁଠି ଯାହା କିଛି ଅସ୍ପଷ୍ଟ, ଅବୋଧ ଓ ଦୁର୍ବୋଧ ସବୁ ସେଇ କବିଙ୍କ ସଂଯୋଜନାର ଅପୂର୍ବତା । ବୁଝି ନ ପାରିଲେ କବିଙ୍କର ଅପରାଧ ଦୋଷ ନାହିଁ, ନିଜ ଅକ୍ଷମତାର ଗ୍ଳାନିରେ ସଙ୍କୁଚିତ ହୁଅ ।" (୬) । ଶ୍ରୀ ଲେଙ୍କା ଏଇ ଦୁର୍ବୋଧତାକୁ କାଟି କପର୍ ଉପରକୁ ଉଠିବାକୁ ଯତ୍ନଶୀଳ ତାହାର ପ୍ରମାଣ ଉପର୍ଯ୍ୟୁକ୍ତ ଗ୍ରନ୍ଥରୁ ବି ପାଇ ହେବ । "ବର୍ଷା କୋଉଁ ଝଡ଼ି ହେଉଥିବାବେଳେ ମାଟିରେ/ ଖରା ଚନ୍ଦ୍ର ପଦ୍ମଁଘ ଦେଉଥିଲାବେଳେ ବସୁଧର ହୃଦରେ /ସୁଖ ମଥା ଟୁଙ୍ଗାଉଥିଲାବେଳେ ଅରଖ ଗଛରେ /ଦୁଃଖ ହାଣ୍ଡି କଳା ଛଡ଼ାଉଥିଲାବେଳେ କୁଅମୂଳରେ /ଯୌବନ ଦେହରୁ ମଳି ଛଡ଼ାଉଥିଲାବେଳେ ବେଣ୍ଟ ପୋଖରୀରେ /ବାର୍ଦ୍ଧକ୍ୟ ହସୁଥିଲାବେଳେ କୋଥଳି ଫିଟାରେ /ଶିଶୁଟି ଛପି ଯାଉଥିଲାବେଳେ ପ୍ରେମିକାଙ୍କ ଲୋଟଣି ଜୁଡ଼ାରେ /X X X ଯେ ଯେଉଁଠି ଅଛ ଚାଲି ଆସ ।" (ପୃ. ୧୬-୧୮) । କବିତାର ପରିଧି ଅତ୍ୟନ୍ତ ବ୍ୟାପକ । ମା' ପୁଅ ପାଇଁ ଅନ ଖୁଞ୍ଚିବା ବେଳଠାରୁ ଶିଶୁଟି ପ୍ରେମିକାର ଲୋଟଣି ଜୁଡ଼ାରେ ଛପିଯିବା ପର୍ଯ୍ୟନ୍ତ, ଏପରିକି ବାର୍ଦ୍ଧକ୍ୟର କୋଥଳି ସେବା ପର୍ଯ୍ୟନ୍ତ ପରିବ୍ୟାପ୍ତ କବିତାର ଭୂମି । କବିତା ଉର୍ବର ହୁଏ ଏଇଥିପାଇଁ । ମାଟିରେ ବର୍ଷା କୋଉଁ ଝଡ଼ି ହେବା, ଯୌବନ ଉନ୍ମାଦରେ ପଦ୍ମଁଘିବା, ସୁଖର ମଥା ଟୁଙ୍ଗାଇବା ଇତ୍ୟାଦି କଳ୍ପନା କବିଙ୍କ ରସାପ୍ଳୁତ କାବ୍ୟ ମନନର ପରିଚ୍ୟୁତ । ନବ ପରିଣୀତା ବୋହୂଟିଏ କୁଅମୂଳରେ ହାଣ୍ଡିରୁ କଳା ଛଡ଼ାଇଲାବେଳେ ଦୁଃଖର ଅର୍ଥ ବୁଝେ । ସ୍ନାନରତା ଯୌବନବତୀ ଯୁବତୀଟିଏ ଗାଁ ମଝି ବେଣ୍ଟ ପୋଖରୀରେ ଦେହରୁ ମଳି ଛଡ଼ାଉଥିବା ବେଳେ ଯନ୍ତ୍ରଣାର ଅର୍ଥ ବୁଝେ । ଏସବୁର ମନସ୍ତାତ୍ତ୍ୱିକ

---

୬ । ଦାସ, ଦାଶରଥି—ଆଧୁନିକ କାବ୍ୟ ଜିଜ୍ଞାସା : ଚିତ୍ରୋତ୍ପଳା, ୧୯୭୪, ପୃ. ୩୮-୪ ।

ଅର୍ଥ କବି ବ ବୁଝନ୍ତି । ଶୈଶବ ସର୍ଷଂଦୋଷରେ ଶାନ୍ତିସଂପନ୍ନ କବି ଦେଖନ୍ତି ଗାଈ ଗୋଠରେ ବଂଶୀ ଫୁଙ୍କୁଥିବା ପିଲାଟିକୁ, ଅଣ୍ଟାରେ ତାହା ଖୋସିଥିବା ଗୁଲିକୁ, ନଖ କୋଣରୁ ଟୋକ ଖାଉଥିବା ସଂଯୋଗୀ ଯୁବତୀକୁ । ଏସବୁ ତ କବିଙ୍କ କବିତାର ସ୍ମରଣଭୂମି । ଅନାମିକ ପୃଥିବୀର ଅସଲ ଭଲପାଇବା । ଏହାହିଁ ଚିତ୍ରକଳ୍ପର ଏକାନ୍ତ କଣା । ଭଲାନ୍ତ୍ ଯଥାର୍ଥରେ କହନ୍ତି—"It ( image ) comes from the whole of his sensitive life, since early childhood." । ଏହାପରି ବର୍ଣ୍ଣନାରେ କବିଙ୍କର ଆନନ୍ଦ । ମଣିଷକୁ ଭଲଭଳି ପାଖରେ ନେଇ ପଢ଼ୁଥିବାଲୋକଙ୍କୁ ହେଲେ ଏହାପରି କବିତାର ଆବଶ୍ୟକତା ଅଛି । ଜୀବନକୁ ବିପଳ୍ପନକ ଭାବେ ବଞ୍ଚୁଥିବା ମଣିଷ କହେ—

୧ । ମୁଁ ଜଳେ ଗାଉଛି ଗୀତ ।
ମୋ ରକ୍ଷିତ କଳଙ୍କ ସାରଙ୍ଗୀ ଧରି
ବେସରୁଆ ଭୂପୁଣୀ ଝୋଳା ପରି,
ଜଣନ୍ ଗୁଡ଼ର ଓଠେ
ଖିଲ୍ ଖିଲ୍ ବସନ୍ତ ଉଦ୍ଭାସ ।
(ପ୍ରାର୍ଥନା : କଣ୍ଟକ ଭୂମିକୁ ଓ ସମ୍ପୂର୍ଣ୍ଣ ଜଳକୁ—କବିତାର ମୁହଁ)

୨ । ମୁଁ ଏବେ ନ୍ୟୁକ୍ଲିୟ ସୁନା ଜଲ ପୋଛି ଦେଉ ଆଖି ଜଆଁରେ
ଝଟକୁଚ ମାଆ ଜେ ମୁଁ ବୁଡ଼ନ୍ତା ସୂର୍ଯ୍ୟଟା ପରି
ବିକ ଭାଙ୍ଗି ଚୌ ଲୁହର ସମ୍ପତ୍ତି ମୁଁ ବଜାର ହାଟରେ ।
( ମୋ ମା' ପ୍ରତି—କବିତାର-ମୁହଁ )

୩ । ମୁଁ ଜଳେ ନସ୍ତବ୍ଧ ହୋଇ ଗୀତ ଗାଏ ଅଂଧ ପିଲା ପରି
ଆପଣାକୁ ସନ୍ତୁଳ ମୁଁ ଆଷାଢ଼ର ସ୍ତୀରର ଗଙ୍ଗରେ ।
(ମୋ ମୃତ୍ୟୁ ପୂର୍ବରୁ କେତୋଟି ମୁହୂର୍ତ୍ତି—କବିତାର ମୁହଁ)

୪ । ମୁଁ ଅବିକା ଫୁଲମଣି ଫୁଲୁଛି
ମୋ ଗୈରିକ ଚେତନାର ନକ୍ଷ୍ଣଲ ଖୁଣ୍ଟିରେ ।
(ଅଧୀଶ୍ୱର—ସ୍ରୋତର ନାମ ରକ୍ତ)

୫ । ମୁଁ କ ସତେ /ଅସ୍ତ ଯିବା ସୂର୍ଯ୍ୟ ପରି /ଛାୟା ଘନ ଅରଣ୍ୟର ଗଭୀର ଭିତର ।
(ସୂର୍ଯ୍ୟାସ୍ତ—ସ୍ରୋତର ନାମ ରକ୍ତ)

ପ୍ରଥମ ଚିତ୍ରକଳ୍ପରେ ଅପବାଦ, ନିନ୍ଦା, କଳଙ୍କକୁ ଆଦର ନେଇଥିବା କାବ୍ୟ-ନାୟକ ପାଖରେ ଜୀବନ ବଡ଼ ହୋଇ ଦିଶିଛି । ବେସରୁଆ ଜୀବନଯାତ୍ରା ଭିତରେ

ବସନ୍ତର ହଲ୍ଲୀସକ ନୃତ୍ୟକୁ ଉପଭୋଗ କରନ୍ତୁ । ଚିତ୍ରକଳ୍ପଟିରେ ସାନ୍ଦ୍ରତା, ଘନତା, କଠିନତା ଏବଂ ସଙ୍ଗସୂତ୍ରତା ସହ ଅର୍ଥଗାମ୍ଭୀର୍ଯ୍ୟ ଲକ୍ଷ୍ୟକର ହୁଏ । ଦ୍ୱିତୀୟ ଚିତ୍ରଟିରେ କବିଙ୍କର ଆତ୍ମଗ୍ଳାନି ସହଜରେ ବାରି ହୁଏ । କାବ୍ୟନାୟକ ଲକ୍ଷ୍ୟ କରଛନ୍ତି ଯେ ମାଆର ସ୍ନେହ ଶ୍ରଦ୍ଧା ଓ ଲୁହର ସମ୍ପତ୍ତି ଆଜି ମାତୃ ପ୍ରଦର୍ଶିତ ମାର୍ଗଠାରୁ ଦୂରେଇ ଯାଉଛି । ବିଭକ୍ତ ବ୍ୟକ୍ତିତ୍ୱ ନେଇ କାବ୍ୟନାୟକ ମା'ର ସ୍ମୃତିକୁ ରୋମନ୍ଥନ କରୁଥିଲେ ଆଧୁନିକ ମଣିଷର ଅସହାୟତା ପ୍ରତି ତୀବ୍ର ବ୍ୟଙ୍ଗ ପ୍ରକାଶ କରିଛନ୍ତି । ତୃତୀୟ ପଦଟିରେ କାବ୍ୟନାୟକ ନିଜେ ନିଜର ହର୍ତ୍ତା, କର୍ତ୍ତା, ଦୈବ ବିଧାତା । ନିସ୍ପୃହ ସହ ଅନ୍ଧ ପିଲାକୁ ତୁଳନା କରିବା ଭିତରେ ଜୀବନକୁ ସ୍ୱାଭାବିକ ଗତିରେ ଗତିଶୀଳ ହେବାକୁ କବି ପସନ୍ଦ କରନ୍ତି ଓ ଅନ୍ଧ ପିଲାର ପ୍ରାଣମୂର୍ଚ୍ଛା ଗୀତର ସ୍ୱରରେ ଆନ୍ତରିକତାର ଗଭୀରତା ଉପଲବ୍ଧି କରନ୍ତି । ୪ର୍ଥ ଚିତ୍ରକଳ୍ପଟି ପ୍ରୟୋଗ ଦୃଷ୍ଟିରୁ ଆଧୁନିକତାର ପକ୍ଷପାତୀ । ଆପଣାର ଗର୍ବ ଦର୍ପ ସମସ୍ତର ଆଘାତରେ ଚୂର୍ଣ୍ଣିଭୂତ ହୋଇଗଲା ପରେ ନୈତିକ ଚେତନାକୁ ଆଶ୍ରୟ କରି ବଞ୍ଚିବା ଛଡ଼ା ମଣିଷର ଗତ୍ୟନ୍ତର ନାହିଁ । ନିଃସଙ୍ଗତାର ଏହା ଏକ ଏକକ ଅନୁଭବ । ଏହାକୁ ଏକ 'ଟେଲିସ୍କୋପିକ୍ ଇମେଜ୍' କୁହାଯାଇପାରେ । ପଞ୍ଚମ ଚିତ୍ରକଳ୍ପଟି ଗତାନୁଗତିକ ଓ ମୃତ୍ୟୁ ଚେତନାର ବ୍ୟଞ୍ଜନା ଏଥିରେ ସ୍ପଷ୍ଟ ।

ଚିତ୍ରକଳ୍ପର ଗତାନୁଗତିକ ପ୍ରୟୋଗ ମନରେ କ୍ଲାନ୍ତି ଆଣେ । କାଳକ୍ରମେ ରୂପକଳ୍ପ ମଧ୍ୟ ତାର ବୈଚିତ୍ର୍ୟ ହରାଇ ବସେ । ତେଣୁ କବିର କାର୍ଯ୍ୟ ଚିତ୍ରକଳ୍ପରେ ନିତ୍ୟ ନୂତନ ଆବେଗ ଭରିଦେବା । ଶ୍ରୀ ଲେଙ୍କା ଏହି ଦୃଷ୍ଟିରୁ ବେଶ୍ ସଫଳତା ଅର୍ଜନ କରିଛନ୍ତି । ଯଥାସମ୍ଭବ ଚିତ୍ରକଳ୍ପଗୁଡ଼ିକୁ ବ୍ୟକ୍ତି ନିରପେକ୍ଷ କରି-ପାରିଛନ୍ତି । ବ୍ୟକ୍ତିକ ଅନୁଭୂତି ନିର୍ବ୍ୟକ୍ତିକତାର ସିଂହାସନରେ ଆରୂଢ଼ ହେବା ଦ୍ୱାରା କବିତାରେ ସାର୍ଥକତା ଆସିଛି । କେତୋଟି ଦୃଷ୍ଟାନ୍ତ —

୧ । ହଳଦୀ ଲଗାଇ /ତୁ ଆସିବୁ ନାହିଁ, /ଚମ୍ପା ଫୁଲଟି /ପକେଟରୁ /ତଳେ
ପଡ଼ିବାର /ସମ୍ଭାବନା ଅଛି ।

(ଇଚ୍ଛାଟିଏ—ତାରା ଅଧା କାନ୍ଥର ଛବି···)

୨ । "ଭୁଲ ମଣିଷର ପୈତୃକ ସମ୍ପତ୍ତି
ଲୁଚି ହୋଇଯାଏ ଅର୍ଥଲୋଭୀ, ମରହଟ୍ଟୀ
ମହାଜନର ଖାତାରେ ।"

( ଭୁଲ୍ — ଗୀତ ଗା' ନାଚର ମଥା )

୩ । ଜହ୍ନର ଏତେ ଖେଦ ଯେ ତାକୁ ବୁଡ଼ି ମରିବାକୁ ତର ନାହିଁ ।
ମେଘର ଏତେ ଆତୁର କାନ୍ଦଣା ଯେ
ଛାତି ଫାଟି ପଡ଼ିବାର ବେଳ ଆସି ନାହିଁ ।
(ସାରା ରାତି ଉଜାଗର— ଗୀତ ଗା' ନାରେ ପକ୍ଷୀ)

୪ । ଏଠି ସବୁ ଧାନ ବିଲ /ଶରତର ସବୁଜ ଚଅଁର /
ଆଶିଷର ସ୍ୱର୍ଣ୍ଣ ହାଏ /ସ୍ୱର୍ଗିଂ ରୁନ୍ଦ ଜଘର ନଅର ।
(ଏଠି ସବୁ ଧାନ ବିଲ- ସୁରେଣ ବସ୍ତୁରଣ)

ଯୁଗ୍ମ ଚିତ୍ରକଳ୍ପର ବହୁଳ ପ୍ରୟୋଗ କମଳାକାନ୍ତଙ୍କ ରଚନାରୁ ସଂଗ୍ରହ କରାଯାଇ ପାରେ । ପରବର୍ତ୍ତୀ ଚିତ୍ରକଳ୍ପ ପୂର୍ବବର୍ତ୍ତୀ ଦ୍ୱାରା ପ୍ରଭାବିତ । କିନ୍ତୁ ଦୁଇଟି ଚିତ୍ରକଳ୍ପର ମିଳନରେ ଦୁହିଁଙ୍କର ଦ୍ୱୈତ ସତ୍ତା ବିଲୁପ୍ତ ହୋଇ ନ ଥାଏ । ଉଭୟଙ୍କ ମଧ୍ୟରେ ବୈସାଦୃଶ୍ୟ ସୁସ୍ପଷ୍ଟ ଭାବେ ରହିଥାଏ । "ତୁମର ପ୍ରତ୍ୟେକ ବିପନ୍ନ ଅହଙ୍କାରର ତେଜରେ /ଅସମ୍ଭବ ଖସିର କରତାଳି !" (ଈଶ୍ୱରଙ୍କ ଫାଶି ପାଇବା ଦିନ— ଅନ୍ତତଃ ନଷ୍ଟପ) । 'ବିପନ୍ନ ଅହଙ୍କାର' ଏବଂ 'ଖସିର କରତାଳି' ଦୁଇଟି ବିସଦୃଶ ଚିତ୍ର ଅଙ୍କନ କରେ, କିନ୍ତୁ ଦୁହେଁ ଏକାଠି ହୋଇଗଲେ ନିର୍ଦ୍ଦିଷ୍ଟ ଅର୍ଥ ପ୍ରଦାନ କରନ୍ତି ।

କମଳାକାନ୍ତଙ୍କ ଚିତ୍ରକଳ୍ପ ସବୁ ଯୁଗ୍ମରୂପ ନୁହେଁ ବା କେବଳ ଯୁଗ୍ମରୂପ ଚିତ୍ରକଳ୍ପର ମାନବିକ ଅନୁଭୂତିର ପରିପ୍ରକାଶ ଅସମ୍ଭବ । ଇନ୍ଦ୍ରିୟର ଯେ କୌଣସି ଇଲାକାକୁ ଛୁଇଁଗଲେ ତାହା ଯଥେଷ୍ଟ । ତାହାକୁ ଜୈବିକ ସଂଚାର (Organic movement) କହିଲେ ଠିକ୍ ହେବ । କେତୋଟି ଉଦାହରଣ —

୧ । ତୁ ତ ଜାଣୁ ମୁଁ : ସନ୍ଧ୍ୟା ଏବଂ ରାତି କରୁଥିଲି
ମୋ ଦେହର ପକ୍ଷି ଦାଢ଼େ
ତୋ ଦେହର ରୁଆ କାଢି କେମିତି ଗର୍ବରେ (ମାଛ —ସୁରେଣ ବସ୍ତୁରଣ)

୨ । ଜୀବନ କି ହାଇମାରେ ଆଜକାର ରଜାଙ୍କର ଶୂନ୍ୟ ହାରେମରେ ।
(ହେ ମୋର ବାନ୍ଧବୀମାନେ—୧)

୩ । ଆରେ ମୋର ପ୍ରେମବତୀ ସ୍ତ୍ରୀ । ତୁମର ମାର୍ବଲ ଜଙ୍ଘ,
ମୋ ହାତରେ ଲେଗୃ କୋଷ୍ଟ ବକ୍ଷ ଓ ବକ୍ର ନାଭି, ନାତି ଦୀର୍ଘ ଦେହ—
ଯାହା ଏଇ ଏକାକିଆ ରବିବାର ନର୍ଦ୍ଦମାରେ ଗାଧୋଇଲା ବେଳେ
ଲଗାଏ ମୋ କାମନାକୁ—ସିଲ୍କ ଶାଢ଼ୀ ଇସ୍ତ୍ରୀ ଦେଲା ପରି ।
(ମୋ ସ୍ତ୍ରୀ ପାଇଁ ଗୋଟିଏ କବିତା)

୪ । ଏ ବଗିଚ୍ଚ ଝୁଲୁଥିବା କୋଲପ ମୁଁ ଗୁଞ୍ଜି ପକେଟରେ /ରଖି ଯା'
ହେଉଚ ଧନ୍ଦା ।

(ଅର୍ଥ ହୀନ ଗୀତର ପ୍ରସ୍ତାବ)

୫ । ମୋ ଦେହର ବାସ୍ନା ପୁଣି ସଞ୍ଚରିଲା କାହାର ଦେହରେ ?
ଆମ୍ବ ବଉଳର ଗନ୍ଧ, କଆଁଫୁଲ ମହକ ଦେହରୁ
କିଏ ନେଲା କେତେବେଳେ
ସମୁଦ୍ରର ଡାକକୁ ଓହ୍ଲାଇ ?

(ଜଣେ ଅବିବାହିତା ଯୁବତୀଙ୍କ ଡାଏରୀରୁ କଥିତ)

ଗ୍ରାମୀଣ ଚିତ୍ରକଳ୍ପ ଏବଂ ବର୍ଣ୍ଣ ରୂପକ (Colour image) ପ୍ରଦାନରେ କମଳାକାନ୍ତଙ୍କର ଦକ୍ଷତା କିଛି କମ୍ ନୁହେଁ । ଅନେକ ସମୟରେ ଗ୍ରାମୀଣ ଚିତ୍ରକଳ୍ପ ଭିତରେ କଲର୍ ଇମେଜ୍ ମିଶି ଯାଇ ରହିଥାଏ । ଆଭିଜାତ୍ୟର ହୋଲି ଖେଳ, ହାତଭମ୍ପ ବଢ଼େଇର ବାଣି, ଦାଣ୍ଡ ଚଉଁରୀର କଇଁଫୁଲ, ଶିଳ ଶିଣ ପବନର ଚଗଲା ଆଖି, ଚିକ ଚିକ ବାଳର ବୁନ୍ଦାରେ ଆଖି ମଳେ ସୂର୍ଯ୍ୟ, ଦରବୁଢ଼ୀ ଇଚ୍ଛାଙ୍କର ଖଇବୁଡ଼ା ସଞ୍ଜର ରଙ୍ଗ ପ୍ରଭୃତି ରୂପକଳ୍ପର ପ୍ରୟୋଗ ଖୁବ୍ ମର୍ମସ୍ପର୍ଶୀ । ଏହାର ପୂର୍ଣ୍ଣାଙ୍ଗ ନିଦର୍ଶନ କେତୋଟି କବିତାରୁ ଦିଆଯାଉ ।

୧ । ଦେଶରବଣା ଶିଳପୁଆର ହଳଦୀ ରଙ୍ଗରେ
ଝାଳ ସରସର ଫଗୁଣର ମୁହଁକୁ
ଆଉଁସି ଦେଇ ଅରୁଣା, ଅଟୋଲକନ୍ଥା, ଅର୍ଦ୍ଧେକ ଶ୍ରାବଣ ।

(କେମିତେ ସମସ୍ତ ନାଇଁ—ଗୀତ ଗା' ନାରେ ପକ୍ଷୀ)

୨ । ଶୀତ ଋତୁଟି ଭଲ ରକ୍ତର /ଆକାଶ ଭୂମ ପ୍ରତିଶ୍ରୁତି, ଓ /ସ୍ମୃତିଟି ଉଦ୍‌ବେଗ /ହଳଦୀ ବସନ୍ତ—(ଅପେକ୍ଷା—ଉନ୍ମୋଚନ)

୩ । ଗୋଟେ କଅଁଳ ସକାଳର କାକଳିରେ ପାରିବତରୁ ଉଙ୍କିଆସନ୍ତି
ହରବଙ୍ଗୀ ଚଢ଼େଇ ଓ ମହୁମାଛିଙ୍କ ଶୁଣ୍ଢରେ
ଟହଲୁଥାଏ ବୈଶାଖର ଆମ୍ରମ୍ଳାନତା ।

(ଗିରଧାରୀ ନାଗର—ଗୀତ ଗା' ନାରେ ପକ୍ଷୀ)

୪ । କଳସୀ କଳସୀ ପାଣି କିଏ ଢାଳୁଥାନ୍ତା କି
ଟୋପେ ହେଲେ ଜହ୍ନର ଶୋଷ
ନ ଥାନ୍ତା ଫୁଲକର କଣ୍ଠରେ ।

(ପାଗଳ କହୁଚି ପାଗଳକୁ ଯେ—ଗୀତ ଗା' ନାରେ ପକ୍ଷୀ)

କମଳାକାନ୍ତ ଜଣେ ଚିତ୍ରକଳ୍ପର ଯାଦୁକର । ଚିତ୍ରକଳ୍ପହିଁ ତାଙ୍କ କବିତାର, ତାଙ୍କ ଜୀବନର ଇତିହାସ । ଉଚ୍ଚ ମୂଲ୍ୟବୋଧର ଆଦର୍ଶରେ ତାହା ପରିପ୍ଲୁତ । ଆତ୍ମାନୁସନ୍ଧାନ ଓ ଆତ୍ମାନୁଭୂତି ଏଠାରେ ସୀମା ସରହଦ । ନୈସର୍ଗିକତା ଓ ଆବେଗିକ ଅନୁଭବ ତାଙ୍କ ଭାବସଂପନ୍ନ ଚିତ୍ରକଳ୍ପର ଜନନୀ । ବହୁବର୍ଣ୍ଣୀୟ ଚିତ୍ରକଳ୍ପ ସଂଯୋଜନା ପ୍ରତି ତାଙ୍କର ଅନାସ୍ଥା ତୀବ୍ର । ନିଜେ, ନିଜ ଦେଶ, ଓ ନିଜ ସଂସ୍କୃତିହିଁ ତାଙ୍କ କାବ୍ୟଚେତନାର ମୂଳାଧାର । ଏଇ ଦୃଷ୍ଟିରୁ ତାଙ୍କର ଚିତ୍ରକଳ୍ପ ଉଲ୍ଲାସ ଓ ବୈରାଗ୍ୟର ମିଳନ ବିନ୍ଦୁ ।

ଶ୍ରୀ ଲେଙ୍କାଙ୍କୁ ପ୍ରତୀକବାଦୀ କବି ବୋଲି କୁହାଯାଇ ନ ପାରେ । ସେ ଜଣେ ଚିତ୍ରକଳ୍ପବାଦୀ, କିନ୍ତୁ ଚିତ୍ରକଳ୍ପଗୁଡ଼ିକ ଅନେକ ସମୟରେ ପ୍ରତୀକାତ୍ମକ । ମଣିଷର ଯେଉଁ ସବୁ ଅନୁଭୂତି ଓ ଅନ୍ତର୍ଗତ ଭାବକୁ ଭାଷା ପ୍ରକାଶ କରିବାରେ ଅକ୍ଷମ, ପ୍ରତୀକ ତାହା ଅକ୍ଳେଶରେ ପ୍ରକାଶ କରିଥାଏ । ଅବଶ୍ୟ ଭାଷା ବି ଏକ ପ୍ରତୀକ । କିନ୍ତୁ ଭାଷା ଊର୍ଦ୍ଧ୍ୱରେ ବହୁ କଥା ରହିଯାଏ । ଊନବିଂଶ ଶତାବ୍ଦୀର ଅନ୍ତିମ ପର୍ଯ୍ୟାୟରେ ପ୍ରତୀକବାଦୀ ଆନ୍ଦୋଳନ ଆରମ୍ଭ ହେବାର ବହୁ ପୂର୍ବରୁ ପ୍ରତୀକର ପ୍ରଚଳନ ହୋଇ ଆସୁଥିଲା । କମଳାକାନ୍ତଙ୍କ କବିତାରୁ ସେଇ ନ୍ୟାୟରେ କିଛି ପ୍ରତୀକର ହିସାବ ରଖିବା ଅନ୍ୟାୟ ହେବ ନାହିଁ । କବିଙ୍କର ଜୀବନ ଓ ଜଗତ ସମ୍ବନ୍ଧରେ ବିଶ୍ଳେଷଣହିଁ ଭାଷାର ଆବେଗମୟୀ ରୂପକୁ ନେଇ ପ୍ରତିଭାତ ହୁଏ ପ୍ରତୀକ ରୂପରେ । ମାତ୍ର ପ୍ରତୀକମାନଙ୍କର ନୂତନତ୍ୱ ପାଇଁ କମଳାକାନ୍ତ ସେତେ ଚିନ୍ତିତ ନୁହନ୍ତି । ସ୍ଥଳ ବିଶେଷରେ ଅବଶ୍ୟ ପ୍ରତୀକାତ୍ମକ ଶବ୍ଦଗୁଡ଼ିକ ନୂତନ ଅର୍ଥ-ଦ୍ୟୋତକ ହୋଇ ପାରିଛି । ଶଙ୍ଖ—ଶୁଭ୍ରତା, ନିର୍ମଳତା, ଆନନ୍ଦର ପ୍ରତୀକ, ମୂର୍ଦ୍ଧାର—ମୁକ୍ତଚେତନାର ପ୍ରତୀକ, ଶାମୁକା—ନାରୀ ଯୌନାଂଶ, ନଈ ଓ ସମୁଦ୍ର—ଜୀବନ, ଅରଣ୍ୟ—ସେକ୍ସ, ଆକାଶ—ସୀମାହୀନତା, ମହମ୍ନତା, ଝଡ଼—ସେକ୍ସ ଓ ଯନ୍ତ୍ରଣା, ଟ୍ରେନ୍—ପ୍ରଗତି, ସୂର୍ଯ୍ୟ—ଜ୍ଞାନ, ମାଛ—ସେକ୍ସ, ସମ୍ରାଟ୍—ଈଶ୍ୱର, ସପ୍ତଫେଣୀ—ଯନ୍ତ୍ରଣା ଓ ନିଷ୍ଠୁରତା, ପେଚା—ଅଶୁଭର, ଧୂପକାଠି—ପବିତ୍ରତା ଓ ତ୍ୟାଗର, ନିଆଁ—ସମତା ଓ ସେକ୍ସର, ବର୍ଷା—ଆଶିଷ ଓ ପ୍ରେମର, ସଁବାଳୁଆ—ଜୀବନ ଯନ୍ତ୍ରଣାର ପ୍ରତୀକ । ଗୋଟିଏ ଗୋଟିଏ ଶବ୍ଦ ମଧ୍ୟ ଭିନ୍ନ ଭିନ୍ନ ସମୟରେ ଭିନ୍ନ ଭିନ୍ନ ଅର୍ଥରେ ବ୍ୟବହୃତ ହୋଇଥିବାର ଦେଖାଯାଏ । ସବୁ ପ୍ରତୀକ କବିତା ଭିତରେ ଯଥାର୍ଥ ଭାବେ ସଂଯୋଜିତ । ସବୁଠି ପ୍ରତୀକ ରହସ୍ୟମୟତାର ସଙ୍କେତବାହୀ । ତେଣୁ ଭାଷା ସେଠାରେ ମୁଖ୍ୟ ନୁହେଁ, ମୁଖ୍ୟ ହେଉଛି ଆଶୟ । ଶ୍ରୀ ଦାଶରଥୀ ଦାସଙ୍କ ଭାଷାରେ—"ଠିକ୍ ଗୋଧୂଳି ଲଗ୍ନ ପରି ପ୍ରତୀକର ମାୟା, କିଛି

ଆଲୋକ ଓ ଅନ୍ଧକାରର ଲୁଚକାଲି ଖେଳ ।" (୮) ଶ୍ରୀ ଲେଙ୍କାଙ୍କ ପ୍ରତୀକ ବୈଚିତ୍ର୍ୟର ଅବଧାରଣା ପାଇଁ ଏଠାରେ ଗୋଟାଏ ଝଲକ ଦେବା ଅପ୍ରାସଙ୍ଗିକ ହେବ ନାହିଁ । ପୋଖରୀ, ଜଙ୍ଗଲ, କଦଳୀ ଜଙ୍ଘ, ସାପର ଗଡ଼, ନରସିଂହାର ଡମ, ଫେରାର ଅସାମୀ, ବ୍ୟାଧିର ବୈଠକଖାନା, ଲୁହାଣିଆ ଅକ୍ଷି, ଜହ୍ନର ହ୍ରଦ, ଅପଚଣ୍ଡ ସୃଷ୍ଟି, ସଫେଦ ଫୁଲ, ରକ୍ତ ନଈ, ନୀଳ ଆଇନା, ସପ୍ତଫେଣୀ ଚଦର, ପ୍ରାର୍ଥିତ ସକାଳ, ଝଲମଲ ଇନ୍ଦ୍ରଧନୁ, ସତ୍ୟର ପଂଜରା, ଧୂଳିଆ ଆଶା, ଅମିଳ ଆଖି, ଆତଙ୍କର ସୁରା, ମୁହୂର୍ତ୍ତର ଓଟପକ୍ଷୀ, ନୀଳ ଅଲୁଅ, ଛଦ୍ମବେଶୀ ବିଶ୍ୱାସ, ସୁନାଗୋଲା ନବବଚା, ରାକ୍ଷିଶୁଙ୍କି ଅହଙ୍କାର, ବୃହନ୍ନଳା ବ୍ୟକ୍ତିତ୍ୱ, ଦାଢ଼ୁଆ ହତିଆର, ଜହ୍ନିଫୁଲିଆ ମଙ୍ଗଳବଣ, ଅଚ୍ଛଡ଼ା କ୍ଷୁଦ୍ରକ, ଫିକାସ୍ୱପ୍ନ, ନାଚୁଣୀ ଖରା, ଗେରୁଆ ସଞ୍ଜ, ନୀଳ ଜଙ୍ଗଲ, ଓଜନଦାର ସମୟ, ଶୀତୁଆ ନଦ ଇତ୍ୟାଦି । ଏତଦ୍‌ବ୍ୟତୀତ ଶ୍ରୀ ଲେଙ୍କାଙ୍କ ରଚନାରେ ଆର୍କିଟାଇପାଲ ପ୍ରତୀକ ଯଥା—ଅଶ୍ୱ, ସାପ, ମାଛ, କୁକୁର, ଚନ୍ଦ୍ର, ସୂର୍ଯ୍ୟ, ତାରା ସମୁଦ୍ର, ମରୁଭୂମି, ଝଡ଼, ବିଷ, ରକ୍ତ ଇତ୍ୟାଦି ଦେଖିବାକୁ ମିଳେ । ଶ୍ରୀ ଲେଙ୍କାଙ୍କ ବଶିଷ୍ଟ ଭାବନାର ବାହନ ଭାବେ ପ୍ରତୀକ ବ୍ୟବହୃତ । ନିଜ ଇଚ୍ଛା ମୁତାବକ କବି ମଧ୍ୟ ତାହାର ପରିବର୍ତ୍ତନ କରି ପାରନ୍ତି । ଯେମିତି—ନୀଳ ଆଇନା, ନୀଳ ଅଲୁଅ, ନୀଳ ଜଙ୍ଗଲ । ପାଠକର ବିଚାର ବୁଦ୍ଧି ଉପରେ ଏହାର ଅର୍ଥମୂଲ୍ୟ ନିର୍ଭରଶୀଳ । ଫରାସୀ ପ୍ରତୀକବାଦୀ କବିମାନେ କହିବାକୁ ଚାହିଁଥିଲେ ଯେ ପ୍ରତିଟିକା ଚେତନା, ଅନୁଭୂତି କେବଳ ସ୍ୱତନ୍ତ୍ର ନୁହେଁ, ପ୍ରତି ମୁହୂର୍ତ୍ତରେ ତାର ଅଛି ରୂପାନ୍ତର । ଆମର ଦୈନନ୍ଦିନ ଭାଷା ସେ ଚେତନା ପ୍ରକାଶ ପାଇଁ ଅସମର୍ଥ । ପ୍ରତି ମୁହୂର୍ତ୍ତର ସ୍ୱତନ୍ତ୍ର ସ୍ୱର ପ୍ରକାଶ ପାଇଁ ସ୍ୱତନ୍ତ୍ର ପରିଭାଷା ଆବଶ୍ୟକ, ଯାହା ଖୁବ ଗତିଶୀଳ ଓ ପ୍ରତୀକ ମଧ୍ୟ ଦେଇ ସେହି ଚିନ୍ତାକୁ ପାଠକ ନିକଟରେ ପହଞ୍ଚାଇ ଦେଇ ପାରେ । (୯) ଶ୍ରୀ ଲେଙ୍କାଙ୍କ ପ୍ରତୀକର ବ୍ୟାପକତା ଏହି ଦୃଷ୍ଟିରୁ ବିଚାର୍ଯ୍ୟ ।

ଭଙ୍ଗାନୁସାରୀ ଭାଷା ଓ ଛନ୍ଦ—ସାହିତ୍ୟସହ ଭାଷାର ସମ୍ବନ୍ଧ ଆଜନ୍ମରୁ । ଭାଷା ଭାବର ବାହାନ । ତେଣୁ ସାହିତ୍ୟିକ ଓ ସାହିତ୍ୟ ରସିକ ଏଥିପ୍ରତି ସବୁବେଳେ ସତର୍କ ଦୃଷ୍ଟି ସମ୍ପନ୍ନ । ପରିବର୍ତ୍ତନଶୀଳତା ଭାଷାର ପ୍ରବହମାନ ଧାରା । ସେଇ ନ୍ୟାୟରେ ଆଧୁନିକ କାଳରେ ଭାଷାର ପରିବର୍ତ୍ତନ ଘଟିଛି । ମାତ୍ର ପରମ୍ପରା-

---

୮ । ଦାସ, ଦାଶରଥି—'ପ୍ରତୀକବାଦ'—ଆଧୁନିକ କବିତାର ଦିଗ୍‌ଦର୍ଶନ—ସ. ଅପୂର୍ବ ରଞ୍ଜନ ରାୟ, ୧୯୭୬, ପୃ. ୮୫ ।

୯ । ରାଉତରାୟ, ସଚ୍ଚିଦାନନ୍ଦ—ସାହିତ୍ୟ ବିଚାର ଓ ମୂଲ୍ୟବୋଧ, ୧୯୭୨ ପୃ, ୧୭୮ ।

ବାଦୀମାନଙ୍କ ଦୃଷ୍ଟିରେ ଏହା ବେଶି ସମାଲୋଚିତ ହୋଇଛି । ବିଶେଷ କରି ସାହିତ୍ୟର ଅନ୍ୟାନ୍ୟ ବିଭାଗ ତୁଳନାରେ କବିତା ବିରୁଦ୍ଧରେ ଅଭିଯୋଗ କରୁଛି ବେଶି । ଇତିହାସର ଉତ୍‌ଥାନ ପତନ ସଙ୍ଗେ ସଙ୍ଗେ ସାଂସ୍କୃତିକ ସ୍ତରରେ ପରିବର୍ତ୍ତନ ମଣିଷର ହୃଦୟବୃତ୍ତିକୁ ବଦଳାଇ ଦେଇଛି । ସେଥିପାଇଁ ସମୟର ହାତରେ ଭାଷା ନିୟନ୍ତ୍ରିତ ହେବାକୁ ବାଧ୍ୟ ହୋଇଛି । ଜ୍ଞାନ ବିଜ୍ଞାନର ସୀମା ଅତ୍ୟନ୍ତ ପରିବ୍ୟାପ୍ତ ହୋଇପଡ଼ିବା ଫଳରେ ଭାଷାର ସ୍ୱାଧୀନତା ବ୍ୟାପକ ହୋଇ ଉଠିଛି । କିନ୍ତୁ ଭାଷା ନିରଙ୍କୁଶ ହେବାଟାକୁ କେହି ପସନ୍ଦ କରନ୍ତି ନାହିଁ । ପ୍ରାଚୀନ କବିତା ପରି ଭାଷା ଶୃଙ୍ଖଳାବଦ୍ଧ ହେବା ଆଜି କେତେକ ସମ୍ଭବ ନୁହେଁ । କିନ୍ତୁ ଅନ୍ତଃଶୃଙ୍ଖଳା ଅନିବାର୍ଯ୍ୟ । ଆଜିକାଲିର ଅନେକ କବିତାରେ ଏହି ଅନ୍ତଃଶୃଙ୍ଖଳା ବିପର୍ଯ୍ୟସ୍ତ । ବିଶୃଙ୍ଖଳ ଭାବକୁ ଶୃଙ୍ଖଳିତ ଭାବେ ଉପସ୍ଥାପିତ କଲେ ତାହା ଭାବ ସଂକ୍ରମଣର ଯୋଗ୍ୟତା ଅର୍ଜନ କରେ । ବାକ୍‌ଭଙ୍ଗୀର ଅନନ୍ୟତା ପାଇଁ ଏହା ନିତାନ୍ତ ଜରୁରୀ । ଟି. ଇ. ହ୍ୟୁମ୍ ଓ ଏଜରା ପାଉଣ୍ଡ ବିଂଶ ଶତକର ପ୍ରଥମ ଭାଗରେ ତିନୋଟି ମୂଲ୍ୟବାନ ମତର ଅବତାରଣା କରି କହିଥିଲେ—

(କ) ବସ୍ତୁର ପ୍ରତ୍ୟକ୍ଷ ଉପସ୍ଥାପନ (ଖ) ଅନିବାର୍ଯ୍ୟ ହୋଇନଥିବା ଶବ୍ଦର ପରିବର୍ଜନ (ଗ) ଛନ୍ଦୋନିଷ୍ଠ କବିତା ବଦଳରେ ସାଙ୍ଗୀତିକ ଶବ୍ଦପୁଞ୍ଜକୁ କ୍ରମାନୁଯାୟୀ ସଂସ୍ଥାପନ । ହ୍ୟୁମ୍ କବିତାରେ କ୍ଲାସିକାଲ ଭାଷା ଓ ଶୁଷ୍କ ଆଙ୍ଗିକ ବ୍ୟବହାର ପକ୍ଷପାତୀ । କ୍ଲାସିକାଲ ଭାଷା ବସ୍ତୁସଚେତନ ( Objective ) ନୁହେଁ । ସେଥିପାଇଁ ହ୍ୟୁମ୍ ଓ କ୍ଲାସିକ୍ ସାହିତ୍ୟିକମାନେ ଚାହାନ୍ତି, କବିତାର ଭାଷାକୁ ପରିଚ୍ଛନ୍ନ, ପ୍ରାଞ୍ଜଳ ଓ ବସ୍ତୁଧର୍ମୀ କରିବାକୁ । ରୋମାଣ୍ଟିକ କବିମାନଙ୍କ ପରି ଧୂମାଭ ବା ରହସ୍ୟମୟ ଭାଷା ବ୍ୟବହାରକୁ ସେମାନେ ପସନ୍ଦ କରନ୍ତି ନାହିଁ (୧୦) ଏହି ନିୟମକୁ ଅନୁସରଣ କରି ଶ୍ରୀ ସଚ୍ଚିଦାନନ୍ଦ ରାଉତରାୟ ଯେଉଁ ନୂତନ ଭାଷାର ପ୍ରୟୋଗ ପ୍ରଥମେ ଆରମ୍ଭ କରିଥିଲେ ତାହା ପ୍ରଥମେ ଅବଶ୍ୟ ଯଥାଯୋଗ୍ୟ ଆଦୃତ ଲାଭ କରି ନ ଥିଲା । ମାତ୍ର ପରେ ଏହାର ମର୍ଯ୍ୟାଦା ସ୍ୱୀକୃତ ହେଲା । ୧୯୫୦ ମସିହା ପରେ ତାର ପରିବର୍ତ୍ତନ ଘଟିଲା ଏବଂ ଷଷ୍ଠ ଦଶକ ବେଳକୁ ଭାଷାର ନୂଆ ନୂଆ ପରୀକ୍ଷା ନିରୀକ୍ଷା ଆରମ୍ଭ ହୋଇଗଲା । ଶ୍ରୀ ଲେଙ୍କା କିନ୍ତୁ ତାଙ୍କ କାବ୍ୟ-ସାଧନାର ପ୍ରାରମ୍ଭିକ ପର୍ଯ୍ୟାୟରେ ଏହି ପରିବର୍ତ୍ତନକୁ ଠିକ୍ ଭାବେ ଲକ୍ଷ୍ୟ କରି

---

୧୦ । Hulme, T. E.—Notes on language and style. "Poetry can be effective compromise for a language of intuition which would handover sensations bodily."

ପାର ନାହାନ୍ତି । ୧୯୬୭ ମସିହାରେ ପ୍ରକାଶିତ 'ପ୍ରୀତି ଓ ପ୍ରତୀତି'ରେ କାବ୍ୟ ଭାଷା ପରିବର୍ତ୍ତନର ସଙ୍କେତ ମିଳେ ଏବଂ ୧୯୬୭ ରେ ପ୍ରକାଶିତ 'ହୃଦୟରଣ'ରେ ଶ୍ରୀ ଲେଙ୍କା ଆଶ୍ଚର୍ଯ୍ୟଜନକ ଭାବେ ନୂଆ ଭାଷାକୁ ଆୟତ୍ତାଧୀନ କରନ୍ତି । କିନ୍ତୁ ଏଥିରେ ସରରିୟାଲିଜମ୍‌ର ପ୍ରଭାବ ବହୁତ ବେଶି । ତେବେ 'ସୁନାଫସଲ' (୧୯୪୮) ଠାରୁ ଆରମ୍ଭକରି 'ଗୀତ ଗା' ନା ରେ ପକ୍ଷୀ' (୧୯୮୨) ପର୍ଯ୍ୟନ୍ତ ତାଙ୍କ ଭାଷିକ କ୍ରମବିକାଶର ଚମତ୍କାରିତା ଲକ୍ଷ୍ୟ କରି ହେବ । ଅଭିଜ୍ଞତାର ପରିପକ୍ୱତା ସଙ୍ଗେ ସଙ୍ଗେ ଭାଷା କ୍ରମଶଃ ଅବୋଧତା ବା ଦୁର୍ବୋଧତା ମାୟାଜାଲରୁ ମୁକ୍ତ ପାଇ ପାରିଛି । ଏହା ପାଠକ ପକ୍ଷରେ ଏକ ବଡ଼ ଆଶ୍ୱାସନାର ବିଷୟ । କବିମାନେ ଭାଷାର ଖେଳୁଆଡ଼ । ଖେଳୁଆଡ଼ ମନୋବୃତ୍ତିରେ ଯେପରି ଥାଏ ଶୃଙ୍ଖଳା, କବି ପକ୍ଷରେ ସେପରି ଶୃଙ୍ଖଳାବୋଧର ଆବଶ୍ୟକତା ଅଛି । ବ୍ରହ୍ମମୟ ଭାଷା ସହ ଖେଳ ଖେଳିବାକୁ ହେଲେ ଶବ୍ଦ ଓ ଅର୍ଥର ଯୁଗଳ ମୂର୍ତ୍ତିକୁ ଉପାସନା କରିବା ଏକାନ୍ତ ବାଞ୍ଛନୀୟ । କାଳିଦାସ ତେଣୁ ଶବ୍ଦ ଓ ଅର୍ଥକୁ ଶିବ ଓ ପାର୍ବତୀଙ୍କ ସମ୍ପର୍କ ଭଳି ଘନିଷ୍ଠ ହେବାର ଆବଶ୍ୟକତାକୁ ଉପଲବ୍ଧି କରିଛନ୍ତି । (୧୧) ତେବେ ଏହି ଘନିଷ୍ଠତାକୁ ହୃଦୟଙ୍ଗମ କରିବା ପାଇଁ ପାଠକୀୟ ନିଷ୍ଠା, ଆନ୍ତରିକତା ଏବଂ ସତତାର ଭୂମିକା ରହିଛି ।

ଶ୍ରୀ ଲେଙ୍କାଙ୍କ କବିତାକୁ ବିଚାରକୁ ନେଲେ ଜଣାପଡ଼ିବ ଯେ ଫର୍ମ ତାଙ୍କ ଭାବର ପରିଚୟର ସ୍ୱଚ୍ଛତା ପାଇଁ ଅଭିପ୍ରେତ । ତାଙ୍କ କବିତାର ଫର୍ମ ତାଙ୍କ କଳ୍ପନାନୁକୂଳ ପୃଷ୍ଠଭୂମିରେ ବନ୍ଧା । କିନ୍ତୁ ଫର୍ମକୁ ନେଇ ସେ ନିଜ କାବ୍ୟାନୁଭୂତିର ରୂପାୟନ ପାଇଁ ସଚେଷ୍ଟ ନୁହନ୍ତି । ଜଳା ସୁଲଭ ଭାଷା ତାଙ୍କ ବୌଦ୍ଧିକ ସାନ୍ଦ୍ରତା, ଚିନ୍ତାଶୀଳତା ଓ ଗଭୀର ଅନୁଭୂତି ଉପରେ ପର୍ଯ୍ୟବସିତ । ଗଦ୍ୟଗନ୍ଧୀ ଭାଷା, ଉକ୍ତି, ଶ୍ଳେଷ, ଚେତନାପ୍ରବାହ ଶୈଳୀ, ସଂସ୍କୃତିର ଅନୁଶୀଳନ ତାଙ୍କ କାବ୍ୟଭାଷାର ପ୍ରତିପୋଷକ । ମିଥ୍, ସିମ୍ବଲ, ଇମେଜ୍, ଆର୍କିଟାଇପ୍‌ର ସମ୍ମେଳନରେ ତାଙ୍କର ଭାଷା ବିଚିତ୍ର ଭାବବାହୀ । କବିତାର ଅନ୍ତର୍ନିହିତ ଭାବଧାରା ଓ ସୌନ୍ଦର୍ଯ୍ୟଶୀଳ ଦୃଷ୍ଟିଭଙ୍ଗୀର ରୂପଦାନ ତାଙ୍କ ଭାଷା ବୈଭବର ବୈଶିଷ୍ଟ୍ୟ । 'ସୁନାଫସଲ', 'ପ୍ରୀତି ଓ ପ୍ରତୀତି'ରେ କିନ୍ତୁ ଭାଷାର ନିରପେକ୍ଷତା ଅନୁପଲଭ୍ୟ । କବିତା ସବୁବେଳେ ପକ୍ଷପାତ ଶୂନ୍ୟ ଏବଂ ଅନନୁଗତ ହେବା ନିତାନ୍ତ ଦରକାର । ସାର୍ତ୍ରେଙ୍କ ମତରେ—''କବିତା ଗଦ୍ୟ ପରି ଭାଷା ବ୍ୟବହାର କରେ ନାହିଁ । ବସ୍ତୁତଃ ଏହା ଆଦୌ ଭାଷାକୁ ବ୍ୟବହାର କରେ ନି । ଏହା ଭାଷାର ସେବା କରେ । କବି

---

୧୧ । ''ବାଗର୍ଥାବିବ ସମ୍ପୃକ୍ତୌ ବାଗର୍ଥ— ପ୍ରତିପତ୍ତୟେ /ଜଗତଃ ପିତରୌ ବନ୍ଦେ ପାର୍ବତୀ—ପରମେଶ୍ୱରୌ''— (ରଘୁବଂଶମ୍—୧ମ ଶ୍ଳୋକ) ।

ଯେଉଁ ଲୋକ ଯିଏ ଭାଷାକୁ ବ୍ୟବହାର କରିବାପାଇଁ, କାମରେ ଲଗାଇବା ପାଇଁ ସମ୍ପୂର୍ଣ୍ଣ ଅଜ୍ଞ୍ଚ ନ, ସେ ଶବ୍ଦମାନଙ୍କୁ ବସ୍ତୁ ବୋଲି ଜ୍ଞାନ କରେ, ଚିହ୍ନ ବୋଲି ନୁହେଁ।" (୧୨) ଶ୍ରୀ ମହାନ୍ତିଙ୍କ ଭାଷା ତେଣୁ ଭାବ ସହ ସ୍ୱତଃସ୍ଫୂର୍ତ୍ତି ଭାବରେ ଆସେ। ସେଥିପାଇଁ କବିଙ୍କୁ ଆୟାସ କରିବାକୁ ପଡ଼େ ନାହିଁ। ପ୍ରକାଶ ବେଳେ ତାହା ଆପଣାଛାଏଁ ଛନ୍ଦରେ ବାନ୍ଧି ହୋଇଯାଏ। ବାକ୍‌ଶକ୍ତି ସଙ୍ଗେ ଘଟେ କାବ୍ୟଶକ୍ତିର ମିଳନ। ଚଳନକ୍ଷମ ଅଥଚ ବ୍ୟଞ୍ଜନାପୂର୍ଣ୍ଣ ଶବ୍ଦ କମଳାକାନ୍ତଙ୍କ କବିତାର ଶୈଳୀ ନିର୍ମାଣ କରିଛି। ତାଙ୍କର ଶବ୍ଦ ଭଣ୍ଡାର ଅତ୍ୟନ୍ତ ବ୍ୟାପକ। ବୋଧହୁଏ ବ୍ୟାପକ ଅନୁଭୂତିର ପ୍ରକାଶ ପାଇଁ ବ୍ୟାପକ ଶବ୍ଦ ଭଣ୍ଡାର ଲୋଡ଼ା ହୁଏ। ଶବ୍ଦର ଉଦ୍‌ବୋଧନ ଶୀଳତା ( evocativeness ) ତାଙ୍କ ହୃଦୟା-ବେଗର ତୀବ୍ରତାକୁ ସୂଚାଇ ଦିଏ। ଭାଷାକୁ ନେଇ ଯେ କୌଣସି ତତ୍ତ୍ୱ ବିଚାରରେ ପ୍ରବୃତ୍ତ ହେବାକୁ ସମୁଚିତ ମଣି ନାହାନ୍ତି। ଭାଷାର ପ୍ରଚଳିତ ଅର୍ଥର ଉର୍ଦ୍ଧ୍ୱକୁ ଉଠିଯାଇ ତାହାକୁ ମହିମାନ୍ୱିତ କରିଦେବାହିଁ ଶ୍ରୀ ମହାନ୍ତିଙ୍କ କବିତାର ଲକ୍ଷ୍ୟ। "କ୍ଲାନ୍ତିର ମଇଳା ଧୋଇ /ବର୍ଷା କେବେ ଶୋଇଯାଏ ଚୁପ୍‌ଚାପ୍ ଆମ ଅଗଣାରେ" (କବିତାର ଅନ୍ୟ ନାମ—କବିତାର ମୁହଁ) ଅବାରିତ ବର୍ଷାକୁ 'ବର୍ଷାର ଶୋଇବା' କହିବାଦ୍ୱାରା ଏକ ସୁନ୍ଦର କାବ୍ୟ ମଣ୍ଡଳର ପରିଚୟ ମିଳେ। ଏପରି ଅସଂଖ୍ୟ ଦୃଷ୍ଟାନ୍ତ ଦିଆଯାଇପାରେ। କମଳାକାନ୍ତଙ୍କ ଶବ୍ଦ ଭଣ୍ଡାରର ବିଶେଷତ୍ୱ ସ୍ୱୀକୃତ। କିନ୍ତୁ ସମାଲୋଚକ ଦାଶରଥି ଦାସ 'ନିଜ ସହ ଗୋଟେ ସାକ୍ଷାତକାର' (୧୯୬୮)ର ମୁଖବନ୍ଧ ଲେଖିଲାବେଳେ ମନ୍ତବ୍ୟ ଦେଇଥିଲେ ଯେ 'ଭାଷା ତାଙ୍କ କବିତାର ଜ୍ଞାତ ଶତ୍ରୁ।' କିନ୍ତୁ ଏହା ପୂର୍ବରୁ 'ସ୍ମରଣ ବିସ୍ମରଣ' ( ୧୯୭୩ ), 'କବିତାର ମୁହଁ' (୧୯୭୪), 'ଅନ୍ତତଃ ନିଷ୍ଟୁପ' (୧୯୭୫) ରେ ଭାଷାର ଏପରି ଅସଙ୍ଗତି ପରିଲକ୍ଷିତ ହୁଏ ନାହିଁ। ଏପରିକି 'ନିଜ ସହ ଗୋଟେ ସାକ୍ଷାତକାର' ପ୍ରକାଶ ପାଇବା ବର୍ଷ 'ସ୍ରୋତର ନାମ ଋତୁ' ( ୧୯୬୮ ), 'ନିତ୍ୟ ନିୟମିତ' ( ୧୯୬୮ ) ପ୍ରକାଶିତ ହୋଇଥିଲା। ଏ ଦୁଇଟି ବହିଠାରୁ 'ସାକ୍ଷାତକାର' ର ଭାଷା ନିଶ୍ଚିତ ଭାବେ ସ୍ୱତନ୍ତ୍ର ଓ ନାଟକୀୟ। 'ଉତ୍ତରଣ', ( ୧୯୬୬ )ର ଭାଷା ଓ କାବ୍ୟ ଚେତନାସହ 'ସାକ୍ଷାତକାର'ର କିଛିଟା ସାମଞ୍ଜସ୍ୟ ଲକ୍ଷ୍ୟ କରି ହେବ। 'ଉତ୍ତରଣ'ରେ ତତ୍ସମ ଶବ୍ଦର ବହୁଳ ବ୍ୟବହାର ଏହାର କାବ୍ୟାବେଗକୁ କିଛି ମାତ୍ରାରେ କ୍ଷୁଣ୍ଣ କରିଛି। କେବଳ ତତ୍ସମ ନୁହେଁ ଦେଶଜ, ତଦ୍‌ଭବ, ବୈଦେଶିକ ଶବ୍ଦର ପ୍ରୟୋଗ ଏଥିରେ ସନ୍ନିବିଷ୍ଟ। ତେବେ ଭାଷାରେ ଭାବଗାମ୍ଭୀର୍ଯ୍ୟ ଏହାଦ୍ୱାରା ବ୍ୟାହତ ହୋଇଛି ବୋଲି କହି ହେବନି। ବରଂ ଜଟିଳ ମାନସିକ ଅନୁଭୂତିର ପ୍ରକାଶ ପାଇଁ ଏଇ ଶବ୍ଦଗୁଡ଼ିକ ଉପଯୁକ୍ତ ପରିବେଶ ସୃଷ୍ଟି କରି ପାରିଛନ୍ତି।

---

୧୨। ମହାପାତ୍ର, ସୀତାକାନ୍ତ—'ଭିନ୍ନ ଆକାଶ ଭିନ୍ନ ସାଥି'—ପୃ. ୬।

"ପିଙ୍ଗଳ ମାଟିର କଟିରେ ମୋ ଦୁଦ୍ଦାର ତୃଷାର ମେଖଳା । /ପ୍ରାର୍ଥିତ ପୁରସ୍କାରର ଦେହଳୀରେ ପୀଡ଼ିତ ଜନତାର ଅଶ୍ରୁର ଫସଲ ।" (ଉତ୍ତରଣ—ପୃ.୪) ଅନୁପ୍ରାସଧର୍ମୀ ରଚନାରେ କବି ମୂଳରୁ ଅଭ୍ୟସ୍ତ । ସେଇ ଅଭ୍ୟାସ ଅଦ୍ୟାବଧି କବିଙ୍କ ରଚନାରେ ସୁଲଭ । ବେଳେବେଳେ ସେଇ ଆନୁପ୍ରାସିକ କବିତା ଚମତ୍କାର ଲାଗେ, କିନ୍ତୁ ଶ୍ରୁତି ମଧୁର ନିରର୍ଥକ ଶବ୍ଦ ପ୍ରୟୋଗ ବେଳେବେଳେ ବିରକ୍ତିକର ମନେ ହୁଏ । "ନାରାୟଣ ଶବ୍ଦରେ ଉଭା ହୁଏ ନାରଦ /ନାରାୟଣ ଶବ୍ଦରେ ପହରା ଦିଏ ମୃତ୍ୟୁ । /ମୃତ୍ୟୁର ନାଁ ଧରି ଡାକିଲେ ଦ୍ୱାରରେ /ନିଦ୍ରା ବେଢ଼ଧରି ଠିଆ ହୁଏ ଜୀବନ ।" ଏହା ଯେପରି ଭାବଦ୍ୟୋତକ, ସେହିପରି ମନନଶୀଳ କିନ୍ତୁ "ଜନ୍ଦୁକ ଖୋଲୁଥିଲି ବେଳେ କବି ମଉଆଳ /ସିନ୍ଦୁକ ଖୋଲୁଥିଲାବେଳେ କବି ଘର୍ଣ୍ଣିଆଳ /ଚୁମା ଖାଇବା ଶବ୍ଦରେ ଚହଲିଯାଏ ଚନ୍ଦ୍ରାବତୀ /ଚୁମାଖାଇବା ନ୍ୟାୟରେ ଚଁ ଚଁ କରେ ଚେମେଣିଆ ।" ଇତ୍ୟାଦି ଶବ୍ଦର ଅପପ୍ରୟୋଗ ଛଡ଼ା କିଛି ନୁହେଁ । ଭାଷା ଓ ଶବ୍ଦ ଯଦି ଅର୍ଥଚ୍ୟୁତ ହୁଏ ଏବଂ କେବଳ ଚିହ୍ନା ବୋଲି ସ୍ରଷ୍ଟା ଦ୍ୱାରା ଗୃହୀତ ହୁଏ, ତେବେ ଭାଷା ପ୍ରତି ଅବମାନନା କରାଯାଏ । ବାସ୍ତବତାର ଆଲୋକୋଚ୍ଛ୍ୱାସରେ କବିତ୍ୱରୂପୀ ଅବଶ୍ୟ ଫୁଟି ଉଠିପାରେ, କିନ୍ତୁ କବିତ୍ୱ ପାଇଁ ବାସ୍ତବତାର ବିସର୍ଜନ ଅନୁଚିତ । କେତେଗୁଡ଼ିଏ ତ୍ରୁଟିପୂର୍ଣ୍ଣ ପଦରଚନାକୁ ଛାଡ଼ିଦେଲେ ଶ୍ରୀ ଲେଙ୍କାଙ୍କ ଶବ୍ଦଚୟନ ଓ ଶବ୍ଦ ଗୁମ୍ଫନ ବେଶ୍ ସଂଯତ, ଶାଳୀନ ଏବଂ ବାସ୍ତବତାର ଅବାଧକ । ଯୋନି, ଲିଙ୍ଗ, ସ୍ତନ ଇତ୍ୟାଦି ଶବ୍ଦ ପ୍ରୟୋଗରେ କବି ଭାବାନୁସାରୀ ଆବେଗ ଓ ଚିନ୍ତାର ସମର୍ଥନ ପାଆନ୍ତି ଏବଂ ତାହା ଅଶ୍ଳୀଳତା ଦୋଷ ଦୁଷ୍ଟ ନ ହୋଇ କବିତାର ସୌନ୍ଦର୍ଯ୍ୟର ଦିଗ୍ବଳୟକୁ ପ୍ରସାରିତ କରନ୍ତି । ସେହିପରି ଗ୍ରାମ୍ୟ ଶବ୍ଦ, ଦେଶଜ ବୈଦେଶିକ ଶବ୍ଦ ତାଙ୍କ କବିତାକୁ ବିଭିନ୍ନ ଭାବେ ବିଭୂଷିତ କରିଥିବାର ଦୃଷ୍ଟିଗୋଚର ହୁଏ । ଲୋକ ମୁଖରେ ପ୍ରଚଳିତ ଶବ୍ଦକୁ ଛଡ଼ାଇ ଆଣି କବିତାରେ ପ୍ରୟୋଗ କରିବାର ସଉକ କମଳାକାନ୍ତଙ୍କ ଅଧିକ । ସେଥିପାଇଁ ତାଙ୍କ କବିତାର ଭାଷା ଜନଭାଷାର ନିକଟବର୍ତ୍ତୀ । ତେଣୁ ତାଙ୍କର ଶବ୍ଦଗୁଡ଼ିକ ଗତିଶୀଳ ଏବଂ ବହୁମୁଖୀ । ପ୍ରେମ କବିତା ଲେଖିଲାବେଳେ ଶଙ୍କରାଚାର୍ଯ୍ୟଙ୍କ ମୋହ ମୁଦ୍ଗର, ସାର୍ତ୍ରେଙ୍କ ସ୍ଥିତିବାଦ, ଫ୍ରଏଡ୍ଙ୍କ ସାଇକୋ ଅନାଲିସିସ୍ ଏକାଠି ଭିଡ଼ ଜମାନ୍ତି । ତା' ସାଥିରେ ନିଜ ବ୍ୟକ୍ତିକ ଅନୁଭୂତିର ବର୍ଣ୍ଣାଢ୍ୟ ପରିପାଟୀ ତାଙ୍କ କବିତାକୁ ସତେଜ ଓ ହୃଷ୍ଟ କରି ରଖିବାରେ ସର୍ବଦା ତତ୍ପର । ଶ୍ରୀ ଲେଙ୍କାଙ୍କ ଜୀବନାନୁଭୂତି ଯେପରି ଗଭୀର, ଭାଷା ଓ ପ୍ରକାଶଭଙ୍ଗୀ ମଧ୍ୟ ସେଇପରି ତାଙ୍କ କବିତାରେ ବିଚିତ୍ରବର୍ଣ୍ଣା । କବି ଏବେ ବି ଶବ୍ଦର ନୂଆ ନୂଆ ଅର୍ଥର ପରିମଣ୍ଡଳ ଅନ୍ୱେଷଣରେ ସାଧନାରତ । ମୋର ବିଶ୍ୱାସ ଶ୍ରୀ ଲେଙ୍କାଙ୍କ ସାଧନା ଏ ଦିଗରେ 'ଚରୈବେତି' ନ୍ୟାୟରେ ଅଧିକ ପ୍ରତ୍ୟୟ ଓ ସିଦ୍ଧିର ସ୍ୱାକ୍ଷର ହେବ ।

## ଲିରିକ୍‌ଧର୍ମ ଓ ନାଟକୀୟତା :

ଆଧୁନିକ କବିତା ସାଙ୍ଗୀତିକତାକୁ ବର୍ଜନ କରିବାର ଘୋଷଣା କରିଥିଲେ ବି ସେଥିରେ ସଫଳ ହୋଇପାରି ନାହିଁ । ସାଙ୍ଗୀତିକତାର ଅପରିହାର୍ଯ୍ୟ ପ୍ରଭାବକୁ କବିତା ପ୍ରତିହତ କରିବାର ଦୃଷ୍ଟାନ୍ତ ପ୍ରାପ୍ୟ ନାହିଁ କହିଲେ ଚଳେ । ଗୀତିମୟତା କବିତାର ମୂଳ ଉତ୍ସ ଓ ଏହା କ୍ରମଶଃ ଜଟିଳ ଗଦ୍ୟମୟ ଜୀବନର ପରିଧି ବାହାରକୁ ଚାଲି ଯାଉଥିବାରୁ କବିତା ଭିତରେ ଏହା ଅନ୍ତର୍ଲୀନ ହେବା ସ୍ୱାଭାବିକ । ତେବେ ଗଦ୍ୟର ଶୃଙ୍ଖଳାରେ ଯେପରି ଗୋଟାଏ ଲିରିକ୍‌ଧର୍ମ ଥାଏ, ପଦ୍ୟରେ ତାହା ଛନ୍ଦୋବଦ୍ଧ ଓ ରାଗରାଗିଣୀଯୁକ୍ତ । ପ୍ରାଚୀନ କାବ୍ୟକବିତାରେ ଏହା ସୁଲଭ ଏବଂ ଯୁଗ ସମର୍ଥିତ ଥିଲାବେଳେ ଏବର କବିତା ବାକ୍‌ଛନ୍ଦ ଓ ମୁକ୍ତଛନ୍ଦ, ଏପରିକି ଗଦ୍ୟଧର୍ମିତାକୁ ଗ୍ରହଣ କରି ନେଇଛି । ରାଗରାଗିଣୀକୁ ବର୍ଜନ କରି ଅନ୍ତର୍ବିଶ୍ଳେଷୀ ବୈୟକ୍ତିକ ଆବେଗ ଓ ଜଟିଳ ଅନୁଭବକୁ ଅଙ୍ଗୀକାର କରି ପ୍ରକାଶ କରିଛି ଗଦ୍ୟଧର୍ମୀ ରଚନାରେ । ଜୀବନର ଗଦ୍ୟମନସ୍କତା ସହ କାବ୍ୟକବିତାର ରସଘନ ଆବେଦନ ସାମିଲ ହୋଇ ଯାଇଛି । ତେବେ ଆଧୁନିକ କବିତା ପ୍ରାଚୀନ ଅର୍ଥରେ ସାଙ୍ଗୀତିକ ନୁହେଁ, ସାଂକେତିକ ଓ ଅନ୍ତର୍ବିଶ୍ଳେଷୀ । ସଙ୍ଗୀତଧର୍ମିତା ତା' ପାଇଁ ଭୂଷଣ, କିନ୍ତୁ ବିଭୂଷଣ ନୁହେଁ ।

କମଳାକାନ୍ତଙ୍କ କବିତା ଏହି ଦୃଷ୍ଟିରୁ ଅନେକଟା ଲିରିକ୍‌ଧର୍ମୀ । ସ୍ୱବାନୁପ୍ରାସ ଛନ୍ଦ ଗ୍ରହଣ କରିବାରେ ଶ୍ରୀ ଲେଙ୍କାଙ୍କ ଦକ୍ଷତା ସ୍ୱାଗତଯୋଗ୍ୟ । "ରାଜକବି ଜାଣେ ନାହିଁ ଗୀତଟିଏ ବୋଲି । /ଖଣ୍ଡକବି ଜାଣେ ନାହିଁ ଖୁଣ୍ଟିବାର ପାଲି । /ନାହିଁ ଜାଣେ ମୁଣ୍ଡବାଳ ଆଉଁସିବା କାନକୁହା ଛଇ /ଆପଣାକୁ ଶୋଧି ଜାଣେ /ଅନ୍ୟକୁ ବଧେଇ ।/ ଶୁଣ୍ ଶୁଣ୍ କାନ୍ତ କବି, ଶୁଣ୍ କମଳାକାନ୍ତ !/କାନ ମୋଡ଼ ନାକ ଘଷ୍ । /କବିତାରେ ହେବୁ ତୁ ଯେ ଶେଷ୍ ।" ( କବି ଉବାଚ—ଗୀତ ଗା' ନା ରେ ପକ୍ଷୀ ) । ଗଦ୍ୟ ଛନ୍ଦ ଓ ମୁକ୍ତ ଛନ୍ଦରେ ବି ଯତିପାତ ହୁଏ । ତାହା ଉପରିସ୍ଥ ଉଦାହରଣରୁ ସ୍ପଷ୍ଟ । ପଦ୍ୟ ଛନ୍ଦରେ ଯତିପାତର କ୍ରମ ନିର୍ଦ୍ଦିଷ୍ଟ ଥିବାବେଳେ ଗଦ୍ୟଛନ୍ଦର କବିତାରେ ସମଗ୍ର ବକ୍ତବ୍ୟର ଏକ ଏକ ପର୍ଯ୍ୟାୟର ( Strophic unity ) ଓ ଗୋଟିଏ ଭାବର ପୂର୍ଣ୍ଣ ଅଭିବ୍ୟକ୍ତି ଉପରେ ଯତିପାତ ହେବାହିଁ ବିଧି । "ଆଜି ଯେ 'ବସନ୍ତ ନାହିଁ, /ବଇଶାଖ ଝଇ ଫୁଟାଖରା /ନାଚୁଚି ଏ ନଈଧାରେ, ଦେହେ, ମନେ, ଭରି ଦରିଆରେ /କେତେ ଯେ କ୍ଲାନ୍ତିର ଝଞ୍ଜା ପିଟି ହୁଏ ମନର ପଠାରେ । ଅନେକ ହଜିଲା ଗୀତ ଗୁଞ୍ଜରୁଚି ହତାଶାର ମନର ମରୁରେ ।" (ହେ ମୋର ବାନ୍ଧବୀମାନେ —ସୁବର୍ଣ୍ଣ ବିସ୍ମରଣ) । ଏ କବିତାଂଶଟି କେବଳ ନୁହେଁ, କମଳାକାନ୍ତଙ୍କ ଅନେକ ଅନେକ କବିତା—ଯଥା, ମୋ ମା' ସ୍ତୁତି, ସନ୍ନ୍ୟାସ, ଏ ଥାନ କାଲିଠା ସହି, ଏତି

ସବୁ ଧାନ ବଲି, ବଡ଼ କଷ୍ଟରେ ମନେ ପଡ଼ (ଆଶ୍ଚର୍ଯ୍ୟ ସ୍ମରଣ), ତୁମେ ଯେଉଁମାନେ ଆସୁଚ, କି ଯାଏ ବଞ୍ଚେ ଅବା ମରେ, କବିତାର ନଈ ବହିଯାଏ ନୂଆ ଗୀତ, ତାଙ୍କର କବିତା ପ୍ରଭୃତି ସବୁଥିରେ ଗୀତିଧର୍ମିତା ସହଜରେ ଲକ୍ଷ୍ୟ କରି ହେବ । କବିତା କିନ୍ତୁ ଗାନଯୋଗ୍ୟ ନୁହେଁ ସତ, ଆଖି ଓ କାନକୁ ବାଧିଲା ଭଳି ରୁନ୍ଧିଲା ଭଳି ତା'ର ଅପପ୍ରୟୋଗ ନାହିଁ । କବିତାର ପ୍ରଥମ ଦାବୀ ହେଲା ତ ମନକୁ ଘେନିବା, ପ୍ରାଣକୁ ଛୁଇଁବା, ହୃଦୟ ଭେଦି ହୃଦୟର କଥା କହିବା । ଆଖିରେ ଶୁଣିବା, ଭିତରେ ଭିତରେ ଗୁଣିବା, ଝୁଣିବା । କମଳାକାନ୍ତଙ୍କ କବିତାର ଏ ବୈଶିଷ୍ଟ୍ୟ ରହିଛି । ମୋର ମନେହୁଏ ଗୁରୁପ୍ରସାଦଙ୍କ ଉତ୍ତର ଦାୟାଦଭାବେ ଶ୍ରୀ ଲେଙ୍କା ଏଇ ମୌଳିକ କାବ୍ୟ ସ୍ୱରର ଅଧିକାରୀ ହେବାକୁ ହକ୍‌ଦାର ।

କମଳାକାନ୍ତଙ୍କ କବିତାର ଶୈଳୀ ନାଟକୀୟ । କବିତାର ନାଟକୀୟ ବିନ୍ୟାସ ପାଇଁ ଲିରିକ୍ ଧର୍ମ ଅନେକ ମାତ୍ରାରେ ଦାୟୀ । 'ଉତ୍ତରଣ' ଏବଂ 'ନିଜ ସହ ଗୋଟିଏ ସାକ୍ଷାତକାର'ରେ ନାଟକୀୟତାର ମାତ୍ରା ଅଧିକ । ତେବେ ନିର୍ଦ୍ଦିଷ୍ଟ ବ୍ୟକ୍ତି ସମ୍ପର୍କରେ', 'ମୋ ମା ପ୍ରତି, 'ଯେ ଯାହାକୁ ରସେ' 'ସ୍ତନ' 'କମଳାକାନ୍ତ', 'ହେ ମୋର ବାନ୍ଧବୀମାନେ' 'ଜିଭ' ପ୍ରଭୃତିରେ ଏହାର ନିଃଶବ୍ଦ ପଦଧ୍ୱନି ବାରି ହୋଇଯାଏ ।

ନାଟ୍ୟକଳା ବହୁ ପ୍ରାଚୀନ କାବ୍ୟିକ ବିଭବ ହୋଇଥିବାରୁ ସାହିତ୍ୟର ଅନ୍ୟାନ୍ୟ ବିଭାଗକୁ ତାହା ପ୍ରଭାବିତ । କବିତାରେ ଏହାର ଅଧିକ ପ୍ରଭାବର ମୁଖ୍ୟ କାରଣ ହେଲା ପୂର୍ବେ ନାଟ୍ୟକଳା ଥିଲା ପଦ୍ୟଧର୍ମୀ । ବିଂଶ ଶତକରେ ଆଧୁନିକ କବିତା ଗୀତିଧର୍ମିତାଠୁଁ କରଛଡ଼ା ଦେଇ କ୍ରମଶଃ ଆତ୍ମକେନ୍ଦ୍ରିକ ଓ ବୌଦ୍ଧିକ ହୋଇଯିବା ଫଳରେ ଲୋକପ୍ରିୟତା ହରାଇ ବସିଛି । ଫଳତଃ ଏବର କବି ନାଟ୍ୟଧର୍ମିତାର ଆଶ୍ରୟ ନେଇ କବିତାକୁ ଲୋକମୁଖୀ କରିବାପାଇଁ ପ୍ରଯତ୍ନ କରୁଛି । କମଳାକାନ୍ତଙ୍କ କବିତା ଏଇ ପ୍ରଯତ୍ନକୁ ସମର୍ଥନ କରେ । ଦୃଷ୍ଟାନ୍ତ—"ମୋ ପୁଣ୍ୟର ତୁମେ ଅଂଶୀଦାର, /ମୋ ପାପର ମୁଁ ଅଧିକାରୀ । /ମୁଁ ବଞ୍ଚେ ଅବା ମରେ, ମରେ ଅବା ବଞ୍ଚେ /କି ଯାଏ ତୁମର, ହେ ନବୀନ ସୁନ୍ଦର ଶ୍ୟାମ ବଂଶୀଧାରୀ ! !" (କି ଯାଏ : ବଞ୍ଚେ ଅବା ମରେ) । ଶ୍ରୀ ଗିରୀଶ ଚନ୍ଦ୍ର ମିଶ୍ରଙ୍କ ଭାଷାରେ, ସ୍ୱଗତୋକ୍ତି, ସ୍ୱୀକାରୋକ୍ତି, ଓ ଆତ୍ମସଂଳାପ ମାଧ୍ୟମରେ କବି ନିଜର ଆତ୍ମକଥାକୁ ଜନ୍ମ ଦେଇଥାଏ । ଏ ସ୍ୱଗତୋକ୍ତି, ଆତ୍ମସଂଳାପ ଓ ସ୍ୱୀକାରୋକ୍ତି ଆଧୁନିକ କବିର ପ୍ରତ୍ୟକ୍ଷ ସରଳ ବକ୍ତବ୍ୟ ନୁହେଁ, ବରଂ ଏହା ନିଜ ଅନ୍ତଃସତ୍ତାର ବିଶ୍ଳେଷଣ ଓ ମୂଲ୍ୟାଙ୍କନ । ଏ ଧରଣର

ପରପ୍ରକାଶର ମାଧ୍ୟମରୁ ନାଟ୍ୟଧର୍ମିତା ।" (୧୩) ଅନନ୍ୟ ନାଟକୀୟତାରେ ଭରପୂର ଶ୍ରୀ ଲେଙ୍କାଙ୍କ କବିତା । କବିର ବୈୟକ୍ତିକ ଅନୁଭୂତି ଏଇ ନାଟକୀୟତା ହେତୁ ହୋଇଯାଏ ସହଜବୋଧ୍ୟ । ପାଠକ ମନରେ ଚିନ୍ତାର ଖୋରାକ ଯୋଗାଇବା ପାଇଁ ଏହା ଏକ ଉପଯୁକ୍ତ ମାଧ୍ୟମ । (୧୪) ନିଜର ତଥା ମଣିଷର ଦୁଃଖ ଦୁର୍ଦ୍ଦଶା ସ୍ୱୀକାର କରିବା ପାଇଁ ସ୍ୱଗତୋକ୍ତି ଅନୁକୂଳ ଏବଂ ଶ୍ରୀ ଲେଙ୍କା ଆତ୍ମନେପଦୀ ଭୂମିକାରେ ଠିଆହୋଇ ପ୍ରତ୍ୟକ୍ଷ ଓ ପରୋକ୍ଷ ସ୍ୱପକ୍ଷର ଉଦ୍‌ବୋଧନଶୀଳତାକୁ ସ୍ୱୀକୃତ ଦିଅନ୍ତି ।



୧୩ । ମିଶ୍ର, ଗିରିଶଚନ୍ଦ୍ର—'ଆଧୁନିକ ଓଡ଼ିଆ କବିତାରେ ନାଟ୍ୟଧର୍ମିତା—
ଝଙ୍କାର—ମାର୍ଚ୍ଚ, ୧୯୮୧ ।

୧୪ । ମହାନ୍ତି, ପ୍ରଫୁଲ୍ଲ କୁମାର—'ଆଧୁନିକ ଓଡ଼ିଆ କବିତାର ଭାଷା'—
'ଝଙ୍କାର'—୧୯୭୪, ଅଗଷ୍ଟ ସଂଖ୍ୟା ।

# ଏକାଦଶ ଅଧ୍ୟାୟ

## ଉପସଂହାର

କମଳାକାନ୍ତ ଆଧୁନିକତାର ଜଣେ ଜାଗ୍ରତ ପ୍ରହରୀ । ଓଡ଼ିଆ କବିତାର ଆଧୁନିକ ଚେତନାକୁ ଗତିଶୀଳ କରାଇବାରେ ତାଙ୍କର ଦାନ ଅନନ୍ୟ । ନିରପେକ୍ଷ ଦୃଷ୍ଟିରେ ସେ ଉଚ୍ଚ ହେବେ ନିବିଡ଼ ଅନୁଚିନ୍ତା ଓ ନିରବଚ୍ଛିନ୍ନ ସାଧନାର କବି ରୂପେ । ତାଙ୍କ ସମ୍ପର୍କରେ ଶେଷ କଥା ଶୁଣାଇବାର ବେଳ ହୋଇ ନାହିଁ । କାରଣ କବି ଏବେ ବି ସକ୍ରିୟ ଓ ଅନୁଭୂତିର ନୂଆ ନୂଆ ଝଲକାର ଦ୍ୱାର ଉନ୍ମୋଚନ ପାଇଁ ତାଙ୍କର ଉଦ୍ୟମ ଅବ୍ୟାହତ । ଭବିଷ୍ୟତରେ ଓଡ଼ିଆ ସାହିତ୍ୟ ତାଙ୍କଠାରୁ କ'ଣ ପାଇବ, ସେଥିରେ ମଥା ଖେଳେଇବାର କୌଣସି କାରଣ ନାହିଁ । ଏ ପର୍ଯ୍ୟନ୍ତ ସେ ଯେତିକି ଲେଖିଛନ୍ତି ତାହାର ପରିମାଣ କିଛି କମ୍ ନୁହେଁ । କେବଳ ପରିମାଣାତ୍ମକ ଦିଗରୁ ନୁହେଁ ଗୁଣାତ୍ମକ ଦୃଷ୍ଟିରୁ ତାଙ୍କ ସୃଷ୍ଟିଶୀଳତାର ମୂଲ୍ୟ ଅନେକ । ନିଜର ମର୍ଜିରେ ତାଙ୍କ କବିତାର ଭାବ, ଯାହାକୁ ପାଥେୟ କରି ସେ ଚଳନ୍ତି ପଥରେ, ପୁଣି ବନ୍ଧ ଘରରେ ଆଗକୁ ଚାଲିବାର ସୁଯୋଗ ସୃଷ୍ଟି କରିଛନ୍ତି । ତେଣୁ ତାଙ୍କର କବିତା ହୋଇଛି ପ୍ରତିବାଦୀ । ସଂଶୟ, ଜିଜ୍ଞାସା, ବିସ୍ମୟ ଓ ଆନନ୍ଦର କବିତା । ପ୍ରେମ, ବିରହ, ଆଶା ନୈରାଶ୍ୟର ମିଳିତ ଅନୁଭବରେ ତାଙ୍କ କବିତା ବିଭୂତିମୟ । ମଣିଷ ଓ ମଣିଷପଣିଆର କଥା କହିବା ପାଇଁ ମାଗ ଭଣ୍ଡି ତାହାର ଥିବା ଦୁର୍ଦ୍ଦାନ୍ତ ମାନବିକତାର ସେ ଏକ ପ୍ରତିନିଧି । ଅନ୍ୟର କବି ଗଣେଶଙ୍କ ଭଳି ବୁଦ୍ଧିମାନ । ସେ କାର୍ତ୍ତିକେୟଙ୍କ ଭଳି ବୀରତ୍ୱ ଦେଖାଇବା ପାଇଁ ଚଉଦ ବ୍ରହ୍ମାଣ୍ଡ ଘୂରିବାର ଆବଶ୍ୟକତାକୁ ପସନ୍ଦ କରେ ନାହିଁ । ତେଣୁ ସେ ଗଣେଶଙ୍କ ଭଳି ନିଜ ଭିତରେ ଥିବା ଶିବଙ୍କୁ /ନିଜକୁ ପରିକ୍ରମା କରେ । "ଆପଣାକୁ ଆପେ ଚହ୍ନିଲେ ତୁଟିଯାଏ ଭ୍ରାନ୍ତ ।" ଶ୍ରୀ ଲେଙ୍କା ଏଇ ଦର୍ଶନରେ ବିଶ୍ୱାସୀ ।

କବିତା କାଳଜୟୀ ହୁଏ ଦୁଇଟି କାରଣରୁ । ପ୍ରଥମରେ କବିତ୍ୱ ଦ୍ୱିତୀୟରେ ଦାର୍ଶନିକ ବିସ୍ମୟ-ଶୀଳତାର ସମନ୍ୱୟ । ପ୍ରତିଟି ମଣିଷର ବଞ୍ଚିବାର ଭଙ୍ଗୀ ସ୍ୱତନ୍ତ୍ର । ଅଥଚ କବି ତ ସହଜେ ସାଧାରଣ ମଣିଷଠାରୁ ବହୁ ଊର୍ଦ୍ଧ୍ୱରେ । ତଥାପି କବି କାହିଁକି ଜଣେ ସମାଜ ଛଡ଼ା ମଣିଷ ହୁଏ ? ପ୍ଲେଟୋ ତାର ଉତ୍ତର ଦେଇଛନ୍ତି । ସେ କହନ୍ତି — କବି କୃତଘ୍ନ ନୁହେଁ । ସମାଜଠାରୁ ସେ ଯାହା ପାଇଥାଏ ତାହାକୁ

ସୁଧସହ ଫେରାଇ ଦିଏ ବୋଲି ସମାଜ ତାକୁ ଦେଇ ପାରେ ନା । ସମାଜଠାରୁ ପ୍ରାପ୍ତ ବସ୍ତୁକୁ ନିଜ ଚେତନାରେ ପରିମାପ କରି ଏକ ନୂତନ ମୂଲ୍ୟଶୀଳ ଜଗତର ସନ୍ଧାନ ଦେଉଥିବାରୁ ସମାଜ ଆଖିରେ ସେ ସୃଷ୍ଟିଛଡ଼ା ମଣିଷ ! ସ୍ରଷ୍ଟା ସବୁବେଳେ କଂସର କାରାଗାରରେ । ମନ୍ତ୍ରଣାହିଁ ସ୍ରଷ୍ଟା ପାଇଁ ଏକମାତ୍ର ଉପହାର । ତଥାପି ସଂସାର ପାଖରେ ଦାୟଗ୍ରସ୍ତ ହୋଇ ସ୍ରଷ୍ଟା ଆଣୁଆ ଗୋପାଳର ଅଭିନୟ କରି ପାରିବ ନାହିଁ । 'ସଂସାର' କବିତାରେ ଶ୍ରୀ ଲେଙ୍କା ଆପଣାର ଦୃଢ଼ ମନୋବଳ ଏବଂ ସଂକଳ୍ପର ଯେଉଁ ପରିଚୟ ଦେଇଛନ୍ତି, ତାହାକୁ ତାରିଫ୍ ନ କରି ରହି ହୁଏ ନା । "ଯେତେ ପାଇଚ /ତାଠୁଁ ଅଧିକ ଯେତେ ପାର/ ଦେଇଯାଅ : ଯେମିତି /ଜଣେ ହେଲେ /କହିବ ନାହିଁ—ଦାୟଗ୍ରସ୍ତ /କୃତଘ୍ନ ! /ଯେତେ ନେଇଚ /ତାଠୁଁ ଅଧିକ ଯେତେ ପାର /ଧୋଇ ଯାଅ : ଯେମିତି /ଜଣେ ହେଲେ /କହିବ ନାହିଁ—ଅହଂକାରୀ, /କପଟ ଆଗ୍ରହୀ ! /ଯେତେ ଅପଚୟ କରିଚ /ନିଜକୁ, ନିଜ ସମର୍ଥ /କ୍ଷମାକୁ, ତା'ଠୁଁ /ଅଧିକ ଯେତେ ପାର /ସଞ୍ଚୟ କରିଯାଅ / : ଯେମିତି— ଜଣେ ହେଲେ /କହିବ ନାହିଁ—ହୃଦୟ ଗୋଟେ ବଧିର ! ଜୀବନ /ମୃତଦାର ॥" ସୁତରାଂ ଜୀବନ ପ୍ରତି ସ୍ରଷ୍ଟା ଶ୍ରଦ୍ଧାଶୀଳ ହେବାକୁ ବାଧ୍ୟ । ସ୍ରଷ୍ଟା ଜୀବନରେ ଆବେଦନ ନ ଥିଲେ ପାଠକ ନିକଟରେ ତାର ସ୍ଥିତି ନଗଣ୍ୟ । ଅନ୍ୟ ପକ୍ଷରେ ପାଠକର ଜୀବନ ପ୍ରତି ଶ୍ରଦ୍ଧା ନ ଥିଲେ କବିତା ଓଷ୍ଟବିନ୍ ମଇଳାର ଦୁର୍ଦ୍ଦଶା ଭୋଗେ । ଓଡ଼ିଶାର ଜ୍ଞାନ ବୃଦ୍ଧ ମନୀଷୀ ସ୍ୱର୍ଗତ ମଧୁ ମହାନ୍ତିଙ୍କ ଉକ୍ତି ଏଠାରେ ଉଲ୍ଲେଖ କରିବା ଅପ୍ରାସଙ୍ଗିକ ହେବ ନାହିଁ । "ଏ ଯାବତ୍ ଯାହା କହୁ ·· ଆଜି ମୁଣ୍ଡରୁ ବାଳ ଉଡ଼ି ଯାଇ କାଙ୍ଗାଳ ହୋଇ ପଡ଼ିଛୁ ତାହା ଯେ କବିତାରେ ଆପଣ ବେଦନଥା ହୋଇ ମଧ୍ୟ ଅକ୍ଷରରେ ପ୍ରକାଶ କରି ପାରିଛନ୍ତି ସେଇ ଭାବର ବନ୍ଦନାରୁ ଏ ଅଜ୍ଞଜନର ଏତିକି ନୈବେଦ୍ୟ ।

ଆପଣଙ୍କ କଲମ ଜାଗ୍ରତ ରହୁ । ଏ ସମାଜର ଧର୍ମ ଛଦ୍ମ ଧୂର୍ତ୍ତଙ୍କ ମୁଖା ଖୋଲି ଦିଅନ୍ତୁ । ଆଜି ଲେଖନୀର ଏକମାତ୍ର କର୍ତ୍ତବ୍ୟ ନଜରୁଲ୍‌ଙ୍କ ଭାଷାରେ— ଉଗ୍ରର ନକାଲ୍—ଓଢ଼ଣା ଉଠାଅ ।

ଆପଣଙ୍କ କବିତାକୁ ଯିଏ ଛପାଇଲେ ତାଙ୍କର ସେ ଦୁଃସାହସିକତାକୁ ସଲାମ କରୁଛି । ଏଥିରେ ନଗ୍ନ ରୂପସୀର ସ୍ତନ ନାହିଁ, 'ଅଛି ସତ୍ୟର ଅକୁଣ୍ଠ ପ୍ରକାଶ । ଆପଣଙ୍କ ଏ ବନ୍ଧୁର ପୃଷ୍ଠା ଯେଉଁଦିନ ଚିରି ହୋଇ ପୋଡ଼ା ହେବ ସେ- ଦିନ ଜାଣିବେ ଲକ୍ଷ୍ୟ ଭେଦ କରିଛନ୍ତି । ଅନୁଭବରୁ କହୁଚି । ଗରମ ପାଣିରେ ଘର ପୋଡ଼େ ନାହିଁ । ସମାଜକୁ ସଂଶୋଧନ କରିବାକୁ ହେଲେ ସତ ଲଗି ନାଉ

ଖାଇବାକୁ ହେବ ।" (୧) ପ୍ରକୃତରେ କବିଙ୍କର ଅନ୍ତର୍ଦାହ ଭାବାପ୍ଲୁତ କବିତାରେ କେବଳ ଢଙ୍ଗରେ କେତେବେଳେ ମୂର୍ତ୍ତ ଓ ନଗ୍ନ ଭାବରେ, କେତେବେଳେ ସୂକ୍ଷ୍ମ ଓ ଚତୁର ଭାବରେ ଶିଳ୍ପାୟିତ । ଆଧୁନିକତାକୁ ଯିଏ ଯେଉଁଭଳି ବ୍ୟାଖ୍ୟା କରନ୍ତୁ ନା କାହିଁକି ଆଧୁନିକତା କବି ଦୃଷ୍ଟିରେ କୋଟିଏ ମୁଣ୍ଡ. ଅନେକ ପରସ୍ପର ବିରୋଧୀ ଜୀବନଚର୍ଯ୍ୟାର ସମନ୍ୱୟ । ଗତାନୁଗତିକ ସ୍ରୋତର ପ୍ରତିକୂଳରେ ଠିଆ ହୋଇ ଖୁବ୍ ନିକଟରୁ ସବୁ କିଛି ପର୍ଯ୍ୟବେକ୍ଷଣ କରିବା ଏବଂ ତାର ସାର-ବସ୍ତୁକୁ କବିତାରେ ରୂପ ଦେବା ଆଧୁନିକତାର ଲକ୍ଷ୍ୟ । ଶ୍ରୀ ଲେଙ୍କା ଏ ଦୃଷ୍ଟିରୁ ଯେତିକି କୃତକାର୍ଯ୍ୟ ହୋଇଛନ୍ତି ସେତିକି ବୁମେରଙ୍ଗର ଯନ୍ତ୍ରଣା ଭୋଗିଛନ୍ତି । ମୋଟ କଥା, ଆଧୁନିକତା ତାଙ୍କୁ ଓ ତାଙ୍କର ସାମସମୟିକ ପୃଥିବୀକୁ ନିଷ୍କୃତି ଦେଇ ନାହିଁ । ଭାବପ୍ରବଣ କଳାତ୍ମକତା ଯଦି କବିତାର ମୁଖ୍ୟ ଉପାଦାନ ହୁଏ, ତେବେ କହିବାକୁ ହେବ ଯେ କମଳାକାନ୍ତ ସେଇ କାବ୍ୟିକ ଉପାଦାନର ସଂରକ୍ଷଣ ପାଇଁ ଆଜି ପର୍ଯ୍ୟନ୍ତ ଯତ୍ନଶୀଳ । ଏଥିପାଇଁ କମଳାକାନ୍ତ ଯେଉଁ କାବ୍ୟକୌଶଳର ପ୍ରୟୋଗ କରିଛନ୍ତି, ତାହା ତାଙ୍କର ନିଜସ୍ୱ । ମୌଳିକ ଆବେଦନ, ଆତ୍ମାନୁସନ୍ଧାନ ଏବଂ ପରିବେଶର ନିରପେକ୍ଷ ଅନୁଶୀଳନ ତାଙ୍କ ମାନସିକ ଅଭିଜ୍ଞତାର ଅଭିବୃଦ୍ଧିରେ ସହାୟକ ହେବା ସଙ୍ଗେ ସଙ୍ଗେ କବିତାର ମୂଲ୍ୟମାନ ବଢ଼ାଇଛି । ତାଙ୍କ କବିତାର ଆଲୋଚନା କରି ଅଧ୍ୟାପିକା କଲ୍ୟାଣୀ ଦତ୍ତ କହନ୍ତି—"As evidenced by the themes and images of the poems here, Lenka is a poet of considerable lyrical talent. His poems are united in their strong commitment to life and his art. ।" (୨) ଖାଲି ପ୍ରତିଭା, ଜୀବନନିଷ୍ଠା ଓ କଳାନିଷ୍ଠାକୁ ନେଇ କମଳାକାନ୍ତଙ୍କୁ ବିଚାର କରାଯାଇ ନ ପାରେ । ଜଣେ ବ୍ୟକ୍ତି ଭାବରେ ସେ ବହୁ ବିତର୍କିତ କାବ୍ୟପୁରୁଷ । 'ମୁଁ' ରେ ଉଚ୍ଚାରିତ ତାଙ୍କ କାବ୍ୟସ୍ୱର ତେଣୁ 'ଆମେ'ର ପ୍ରତିନିଧିତ୍ୱ କରିବାକୁ ଉତ୍ତମ ପାଠକୀୟତାର ଅପେକ୍ଷା ରଖେ । ତାଙ୍କ କବିତାର 'ମୁଁ' ଟି କେତେବେଳେ ନିଜ ପ୍ରତି ଉଦ୍ଦିଷ୍ଟ, ପୁଣି କେତେବେଳେ ବହୁବଚନ ପାଇଁ ଖଣ୍ଡ୍‌ଗନ୍ଧସ୍ତ । ତେବେ ବୈୟକ୍ତିକତା ଓ ସାମୂହିକତାର ଦ୍ୱନ୍ଦ୍ୱରୁ ନିବର୍ତ୍ତିବା ପାଇଁ କମଳାକାନ୍ତଙ୍କ 'ମୁଁ' ଏକ ଚମତ୍କାର କାବ୍ୟିକ ଅବଲମ୍ବନ ।

---

୧ । କବି ଶ୍ରୀ ଲେଙ୍କାଙ୍କ ପାଖକୁ 'ନିତ୍ୟ ନୟମିତ' ଗ୍ରନ୍ଥ ଉପରେ ଅଭିମତ ଜଣାଇ ଡ. ମଧୁ ମହାନ୍ତିଙ୍କ ଚିଠି—ତା ୧ । ୧୨ । ୧୯୬୮ ।

୨ । Dutta, Kalyani—Review of 'What I Look Like'—'Prativa India'—January-March—1986.

'ତେବେ ଅମୂର୍ତ୍ତ ଭାବନାର କବିରୂପେ ଆମେ କମଳାକାନ୍ତଙ୍କୁ ଚିହ୍ନଣ କରି ପାରିବା । ବୈୟକ୍ତିକ ଅନୁଭୂତି ସମ୍ପୃକ୍ତିରୁ ତାଙ୍କ ଅମୂର୍ତ୍ତ ଭାବନାର ଜନ୍ମ, ଯାହା ତାଙ୍କ ନୈତିକ ନିଷ୍ଠା ଓ ସାର୍ବଜନୀନ ସତ୍ୟର ଉଦ୍‌ଘାଟକ । ଶବ୍ଦପୁଞ୍ଜର ଗୁରୁତ୍ୱ, ଛନ୍ଦର ଶକ୍ତିଶାଳୀ ପ୍ରଭାବ ଓ ଚିତ୍ରକଳ୍ପର ଅମିତଶକ୍ତି ମିଳିତ ଭାବେ ଏକ ସୁସ୍ଥ କାବ୍ୟିକ ପରିମଣ୍ଡଳ ସୃଷ୍ଟି କରିବାରେ ତାଙ୍କ କବିତାକୁ ସାହାଯ୍ୟ କରନ୍ତି । ଏଭଳି କାବ୍ୟିକ ନିପୁଣତା ଯେ କୌଣସି ଭଲ କବିତାରୁ ପାଇବା କଷ୍ଟକର ହୁଏ ନାହିଁ । ତାଙ୍କ କବିତା ଇନ୍‌ଟେନ୍‌ସନ ବା ସ୍ୱଜ୍ଞାନକୁ ଅଭିଜ୍ଞତାରେ, ଏବଂ ଅନୁଭବକୁ ଚିନ୍ତାରେ ରୂପାନ୍ତରିତ କରିଥାଏ । ସେଥିପାଇଁ 'ଉତ୍ତରଣ'. 'ଜଳ ସହ ଗୋଟେ ସାକ୍ଷାତକାର' ଓ 'ସେଣ୍ଟ୍ରାଲ ପାର୍କ ରାତି' ରେ ବା 'ଅନ୍ତତଃ ନିଶୂନ୍'ରେ କବି ଓ କବିତା ସ୍ଥଳ ବିଶେଷରେ ବୌଦ୍ଧିକତାରେ ଅଚ୍ଛନ୍ନ । ମାତ୍ର ଭାବପ୍ରବଣତାର ଚରମ ଉତ୍କର୍ଷ 'ସ୍ମରଣ ବିସ୍ମରଣ' ରେ ଲକ୍ଷ୍ୟ କରିହୁଏ, ଯାହାର କାବ୍ୟିକ ମୂଲ୍ୟ ଏବଂ ଚେତନାର ପ୍ରସାରିତ ଦିଗନ୍ତ ଅନେକ କାଳ ଯାଏ ପ୍ରଭାବଶାଳୀ ହୋଇ ରହିବ । ପ୍ରକୃତିର ପ୍ରସ୍ତାବ, ଅନ୍ତର୍ଦୃଷ୍ଟି ଓ ଆତ୍ମିକ ଉପଲବ୍ଧିର ଶୁଦ୍ଧ ଉଚ୍ଚାରଣ ହେତୁ ମୋ ଦୃଷ୍ଟିରେ 'ସ୍ମରଣ-ବିସ୍ମରଣ'ର ଏ ଅନନ୍ୟତା ରହିଛି ।

କମଳାକାନ୍ତଙ୍କ କବିତା ଅନେକ ନିଜ ଅନୁଭବ ଓ ଅନୁଭୂତିର କବିତା । ଗୋଟାଏ ଗୋଟାଏ ଘଟଣା, ସ୍ଥାନ ଓ କାଳର ତାଡ଼ନାରୁ ତାଙ୍କ କାବ୍ୟାନୁଭବର ଉତ୍ପତ୍ତି । ସ୍ଥଳ ବିଶେଷରେ ଏଇ କାବ୍ୟାନୁଭବ ଯଥାଯଥ ପ୍ରକାଶିତ ନ ହେଉଁଠି ବେଶ୍ ଧର୍ମିକ୍ ଓ ପରିଶୀଳିତ । କିନ୍ତୁ କାବ୍ୟ ବିଷୟରେ ଗୋଟାଏ ଆନ୍ତର୍ଜାତିକ ଧାରାବାହିକତା ତାଙ୍କ କବିତାରେ ପରିଲକ୍ଷିତ ଏବଂ ଅଧିକାଂଶ କବିତା ତାଙ୍କ ଏକକ ଆତ୍ମାର ସାକ୍ଷାତକାର ଭିନ୍ନ ଅନ୍ୟ କିଛି ନୁହେଁ । ଏଇଥିପାଇଁ ପ୍ରେମ, ଜୀବନ, ଆଧ୍ୟାତ୍ମିକତା ଓ ଆନୁଷଙ୍ଗିକ ମୂଲ୍ୟବୋଧକୁ ନେଇ ସେ ଯେତିକି ଦ୍ୱିଧାଗ୍ରସ୍ତ ସେତିକି ପ୍ରଶଂସାମୁଖର । କବି ସୀତାକାନ୍ତ ମହାପାତ୍ରଙ୍କ ଭାଷାରେ—
"Some of the more charming and essential qualities of modern Oriya poetry are to be seen in him : a sense of detachment in observing external reality and oneself, an endeavour to achieve a degree of lucidily and clarity in expression, and a lack of obsession with the sense of form." (୩)

---

୩ । 'What I Look Like'—Foreword by Sitakanta Mohapatra.

କମଳାକାନ୍ତ ଲେଙ୍କା କବିତାକୁ ନେଇ ବଞ୍ଚନ୍ତି । ପ୍ରତିଟି ନିଶ୍ୱାସ ପ୍ରଶ୍ୱାସ ଭିତରେ କବିତାର ଗନ୍ଧ ବାରନ୍ତି । ବୁଦ୍ଧି ଓ ହୃଦୟର ସମୀକରଣକୁ ପସନ୍ଦ କରନ୍ତି । ଭଲ ମନ୍ଦ, ପାପ ପୁଣ୍ୟକୁ ସମୁଚିତ ମର୍ଯ୍ୟାଦା ଦିଅନ୍ତି । ଜୀବନ ତାଙ୍କ ପାଇଁ ଗୋଟାଏ ଆହ୍ୱାନ । କଳା ତାଙ୍କ ପକ୍ଷରେ ସେମିତି ଏକ ନିତ୍ୟ ନୂତନ ସାହଚର୍ଯ୍ୟ । ମଣିଷର ଭାବଜଗତ, ବୁଦ୍ଧି ଜଗତ ଓ ବସ୍ତୁ ଜଗତ ଭିତରେ କମଳାକାନ୍ତଙ୍କ କବିତା ଜୀବନାନୁଶୀଳନରେ ବ୍ରତୀ । ସେଥିପାଇଁ କାବ୍ୟିକତା ଦାର୍ଶନିକତା ଆଡ଼କୁ ମାଡ଼ିଯାଏ । ଜନ୍ମ ଓ ବିଶ୍ୱର ଅସ୍ମାକ୍ ତନ୍ମସେ । ଆମର ଅଜ୍ଞତା, ମୂଢ଼ତା ଓ ମୂର୍ଖତାକୁ ବିସ୍ତୃତିଶୀଳ ଦୃଷ୍ଟିରେ ଅନାଏ । କମଳାକାନ୍ତ ଚେତନାଶୀଳତାର ପରିଧିରେ ଘୂରନ୍ତି । ତାଙ୍କ କବିତା ବି । ବାସ୍ତବତାର ଛବି ଆଙ୍କନ୍ତି, କିନ୍ତୁ ଦୃଶ୍ୟଜଗତର ବାସ୍ତବତାକୁ ଟପି ଯାଆନ୍ତି । ବ୍ରାଡ୍‌ଲେଙ୍କ ମତରେ ଦେଖିପାରୁ ନ ଥିବା ଜଗତରେ ବି ଗୋଟାଏ ଅସ୍ତିତ୍ୱ ଅଛି, ଯାହାକୁ କେବଳ ଅନୁଭୂତି ଭିତରକୁ ଆଣି ହୁଏ ଏବଂ ବ୍ୟକ୍ତିର ସୁଖଦୁଃଖର ପରିଧିକୁ ସେ ପର୍ଯ୍ୟନ୍ତ ପରିବ୍ୟାପ୍ତ କରି ହୁଏ । ସେଇ ଦୃଷ୍ଟିରୁ ତାଙ୍କୁ ଆମେ ରୋମାଣ୍ଟିକ୍ କିମ୍ବା ବାସ୍ତବବାଦୀ ଶ୍ରେଣୀଭୁକ୍ତ କରି ପାରିବା ନାହିଁ । ଏ. ରସେଲଙ୍କ ମତରେ—
" The poet is neither a romantic nor a realist, often he seems to be a critic of the values that life in interaction with the world begets inorder to satisfy the puny ego of man contained in the shell of its experience." (୪)

କବି ଶ୍ରୀ ଲେଙ୍କା ବ୍ୟକ୍ତି ସ୍ୱାଧୀନତାର ପକ୍ଷପାତୀ । ମୁକ୍ତ ଓ ବିସ୍ତୃତିଶୀଳ ଜୀବନଚର୍ଯ୍ୟାରେ ବିଶ୍ୱାସୀ । ତଥାକଥିତ ସ୍ୱାଧୀନତା ନାଁରେ ବ୍ୟକ୍ତି ପରାଧୀନତାକୁ ପ୍ରଶ୍ରୟ ଦେଉଥିବା ସାମାଜିକତା ତାଙ୍କ କବିତାରେ ତେଣୁ ବ୍ୟଙ୍ଗ ବାଣରେ ଜର୍ଜରିତ । ଥରେ ତରୁଣ କବି ହରପ୍ରସାଦ ପରିଚ୍ଛା ପଟ୍ଟନାୟକ କମଳାକାନ୍ତଙ୍କ ସମ୍ବନ୍ଧରେ ସଂକ୍ଷିପ୍ତ ଟିପ୍ପଣୀ ଦେଇ 'ଆବର୍ତ୍ତ' ପତ୍ରିକାରେ କହିଥିଲେ—"ପୁରୀରେ ଦର୍ଶନୀୟ କେବଳ ସମୁଦ୍ର, କମଳାକାନ୍ତ ଓ କମଳାକାନ୍ତ । ନୀଳଚକ୍ର ଓ ଦଧିନଉତିରେ ଖରଦାନ୍ତ ବଡ଼ ଦେଉଳର କମଳାକାନ୍ତ ଅପେକ୍ଷା ନୀଳାଚଳ ନିବାସରେ ୧୦/୧୦ ଫୁଟ କୋଠରୀ ଭିତରେ ରହୁଥିବା କମଳାକାନ୍ତ ଅତି ତାତ୍ପର୍ଯ୍ୟପୂର୍ଣ୍ଣ । ଜୀବନରେ ଓ ସାହିତ୍ୟରେ କବି ହେବା ସହଜ କଥା ନୁହେଁ ।

---

୪ । Poetry Time—'What I Look Like' review by A. Russel, Dec, 1983

ଦୈହିକ ଲାଳସାକୁ ତୃପ୍ତ କରି ଅଦେହକୁ ଆମନ୍ତ୍ରଣକୁ ନରେଖିବା କେତେ କଠିନ ବ୍ୟାପାର ତାହା ଅନୁଭବୀହିଁ ଜାଣେ । କମଳାକାନ୍ତ ସେଇ ଚେତନାର କବି ......।" (୫) ବ୍ୟକ୍ତି ସ୍ୱାତନ୍ତ୍ର୍ୟ ଓ ବେହିସାବୀ ଜୀବନ ତାଙ୍କ କାବ୍ୟଚେତନାକୁ ବହୁ ଭାବରେ ପ୍ରଭାବିତ କରିଛି । ଦୁଃସାହସ ଓ ଐକାନ୍ତିକ ସାଧନାରୁ ତାଙ୍କ କବିତାର ଉନ୍ମେଷ ଓ ଉତ୍ତରଣ । କବି ଦୃଷ୍ଟିର ଦୂରତା ଓ ପରିପକ୍ୱତା କଳ୍ପନାର ଇନ୍ଦ୍ରଧନୁକୁ ନେଇ ସର୍ବଦା ଅଗ୍ରସର । ଜୀବନ ଯନ୍ତ୍ରଣାରେ ପୀଡ଼ିତ କବି ପକ୍ଷରେ କବିତା ହୋଇ ଉଠିଛି ଏକ ସ୍ୱସ୍ତି ଓ ପୂର୍ଣ୍ଣତାର ସେତୁ, ହୋଇ ଉଠିଛି ନିର୍ଭୀକତାର ନିଶ୍ୱାସ ! ଏଇଥିପାଇଁ ତାଙ୍କ ପ୍ରେମ କବିତାଗୁଡ଼ିକ ଏତେ ମର୍ମସ୍ପର୍ଶୀ, ସତେଜ ଓ ଜୀବନ୍ତ । ଅଥଚ ରୂପଚର୍ଯ୍ୟାର ସାନ୍ଦ୍ର ଅନୁଭବ ଭିତରେ ବେଳେବେଳେ ଦାର୍ଶନିକ ବିସ୍ମୃତିର ଖେଳ ସହଜଲଭ୍ୟ । ତେଣୁ ବୌଦ୍ଧିକ ଶୁଷ୍କତା ଭିତରେ କେତେକ କବିତା ମାଧୁର୍ଯ୍ୟହୀନ । "ଅନେକ ସ୍ଥଳରେ ବୌଦ୍ଧିକ ଅନୁଭବର ସାର୍ଥକ ସ୍ରୋତ ଭିତରେ ଭାବନିଷ୍ଠା ସମନ୍ୱିତ ହୋଇଥିବାରୁ କବିତାଗୁଡ଼ିକ ମସ୍ତିଷ୍କ ଓ ହୃଦୟର ନିର୍ଯ୍ୟାସରୁ ଉତ୍ପନ୍ନ ହୋଇ ପାରିଛି ।" (୬) 'ସ୍ରୋତର ନାମ ରାତି', 'ଜନ୍ତ୍ୟ ନିର୍ମିତି', 'ସ୍ମରଣ ବିସ୍ମରଣ', 'ଗୀତ ଗାଏ ନା ରେ ପକ୍ଷୀ' ପ୍ରଭୃତି ଗ୍ରନ୍ଥରେ କବିଙ୍କର ଏଇ କୃତିତ୍ୱର ସନ୍ଧାନ କରିଯାଇପାରେ ।

ପ୍ରାୟତଃ କବିହିଁ ଆଧୁନିକ କବିତାର ନାୟକ । ଏଇଥିପାଇଁ ସେ ବାସ୍ତବତାର ଅଧିକ ନିକଟବର୍ତ୍ତୀ । ଆପଣାର ଅନୁଭୂତି ଓ ଜୀବନ ବିମୁଖୀ ମନୋଭାବକୁ କମଳକାନ୍ତ ସ୍ୱୀକାର କରନ୍ତି । ନିଜ ଜୀବନ ଓ କାବ୍ୟାନୁଭବ ସହ ସାମଞ୍ଜସ୍ୟ ଥିବା ଦେଶୀ ବିଦେଶୀ ଲେଖକ, କବିଙ୍କୁ ପଢ଼ନ୍ତି । ପାରଂପରିକ ପାଠକୀୟତାର ଓଡ଼ିଶୀ ବାତାବରଣକୁ ଅପେକ୍ଷା ନ କରି ସେ ନିଜସ୍ୱ ରୁଚି ଓ ଭାବବୋଧକୁ ନେଇ କବିତା ଲେଖନ୍ତି । ତାଙ୍କ ଦୃଷ୍ଟିରେ ବୌଦ୍ଧିକ ସଙ୍କଟ ଅପେକ୍ଷା ମଣିଷର ଆବେଗିକ ସଙ୍କଟ ଅଧିକ ପୀଡ଼ାଦାୟକ । ଅଧ୍ୟାପକ ଦେବେନ୍ଦ୍ର କୁମାର ଦାଶ ଏଇ ସଙ୍କଟର କାରଣ ଦର୍ଶାଇ କହନ୍ତି—"ଓଡ଼ିଶାରେ ବାସ କରୁଥିବା ଜନଗଣ ଆର୍ଥିକ ଓ ସାମାଜିକ ଅବସ୍ଥା ଦୃଷ୍ଟିରୁ ତିନୋଟି ମୁଖ୍ୟ ସ୍ତରରେ ବିଭକ୍ତ କେବଳ ନୁହନ୍ତି, ସେମାନେ ପରସ୍ପରଠାରୁ ବିଚ୍ଛିନ୍ନ ଇତିହାସର ତିନିଗୋଟି ପର୍ଯ୍ୟାୟରେ ରହି ଯାଇଛନ୍ତି । ଲେଖକ ସର୍ବାଧୁନିକ ପର୍ଯ୍ୟାୟର ହୋଇଥିଲାବେଳେ ଅଧିକାଂଶ ଜନଗଣ ମଧ୍ୟ ଯୁଗରେ ରହି ଯାଇଛନ୍ତି । ଏହି ଦୁଇ ସ୍ତରର ମଧ୍ୟବର୍ତ୍ତୀ ପର୍ଯ୍ୟାୟରେ

---

୫ । 'ଝଙ୍କାର'—ଫେବୃୟାରୀ—୧୯୮୩

୬ । ସାହୁ, ଆଦିକନ୍ଦ,—'ସ୍ରୋତର ନାମ ରାତି' ସମୀକ୍ଷା—'ସମାସ', ୧ ବର୍ଷ ୧ମ ସଂଖ୍ୟା ।

ଥିବା ଲୋକେ ଶିକ୍ଷାଲାଭ କରୁଛନ୍ତି, ଚାକିରି /ବ୍ୟବସାୟ କରି ଆଧୁନିକ ଜୀବନ-ଚର୍ଯ୍ୟାସହ ସଂପୃକ୍ତ ହେଉଛନ୍ତି, କିନ୍ତୁ ମାନସିକ ବିକାଶ ଦୃଷ୍ଟିରୁ ସେମାନଙ୍କ ନାବାଳକ କହି ନାହିଁ ।" (୭) କବିଙ୍କ ଉପରେ ଦୋଷାରୋପ ପ୍ରାୟତଃ ଏହି କାରଣରୁ । ପାଠକୀୟ ଅସହିଷ୍ଣୁତା କବିଙ୍କ ସୃଷ୍ଟିଧର୍ମୀ ସାଧୁତା ନିକଟରେ ଯେ ସବୁଦିନେ ହାର୍‌ମାନେ, କମଳାକାନ୍ତଙ୍କ କବିତା ତାହାହିଁ କହେ ।

କମଳାକାନ୍ତ ଲେଙ୍କା ଏକ ସତ୍ କବି । ଆପଣାର ସନ୍ଧାନ ତାଙ୍କ କାବ୍ୟ ଧର୍ମର ବିଶେଷତ୍ୱ । ରକ୍ତ ମାଂସର ଅହଂକାରର ଉପଯୋଗିତା ଜୀବନ ପାଇଁ ଯେତିକି ତାଙ୍କ କବିତା ପାଇଁ ମଧ୍ୟ ସେତିକି । ବେଳେବେଳେ ତାଠୁଁ ମଧ୍ୟ ଅଧିକ । ନିଃସଙ୍ଗତା, ମୃତ୍ୟୁ, ହତାଶା ପ୍ରେମ, ପ୍ରାପ୍ତି ଓ ବିଫଳତା ତାଙ୍କ କବିତାକୁ ଘେରି ରହିଛନ୍ତି । ପୁଣି ସାମାଜିକ ନୀତି ନିୟମକୁ ଲଙ୍ଘନ କରିବାର ଦୁର୍ଦ୍ଦଶାରେ ତାଙ୍କ କବିତା ସମେତ ସେ ନିଜେ ମଧ୍ୟ ଲହୁ ଲୁହାଣ । ମଣିଷ ଜୀବନର ବୈଚିତ୍ର୍ୟର ଛବି ତୋଳି ଧରିବାରେ ତାଙ୍କର ଆଦୌ କୁଣ୍ଠା ନାହିଁ । କବିତାରେ ଇଲ୍ୟୁଜନ ସୃଷ୍ଟି କରିବା ଯଦି କାବ୍ୟଶିଳ୍ପର ଅନ୍ୟତମ ବୈଶିଷ୍ଟ୍ୟ ହୁଏ, ତେବେ ଶ୍ରୀ ଲେଙ୍କା ଜୀବନ ମରୁରେ ମରୂଦ୍ୟାନ ସୃଷ୍ଟି କରିବାରେ ପ୍ରୟାସୀ । ଏବଂ ଏକାକୀ ମଣିଷ ପାଇଁ, ଏପରିକି ସ୍ୱୟଂ କବିଙ୍କ ପାଇଁ ଏହା ଏକ ଆଶ୍ୱାସନା ।

ଆଧୁନିକ କାଳର ପ୍ରତିନିଧି ସ୍ଥାନୀୟ କବି ହିସାବରେ କମଳାକାନ୍ତଙ୍କ ଭୂମିକା ନିଶ୍ଚିତ ଭାବେ ଗୁରୁତ୍ୱପୂର୍ଣ୍ଣ । ତିନିଦଶକରୁ ଊର୍ଦ୍ଧ୍ୱକାଳ ନିରବଚ୍ଛିନ୍ନ ଲେଖନୀ ଚାଳନା ତାଙ୍କ ସାଧନାର ନିଷ୍ଠା ପ୍ରମାଣିତ କରେ । ଏଯାବତ୍ ବାରଖଣ୍ଡ କବିତା ଗ୍ରନ୍ଥର ରଚୟିତା ହେଲେବି କବି ଶ୍ରୀ ଲେଙ୍କାଙ୍କର ବହୁ କବିତା ପତ୍ରପତ୍ରିକା ଓ ପାଣ୍ଡୁଲିପିରେ ଆତ୍ମଗୋପନ କରିଛନ୍ତି । ତେଣୁ ଏ ଗ୍ରନ୍ଥ ତାଙ୍କ କାବ୍ୟ ପରିଧିର ଶେଷ ଆକଳନ ନୁହେଁ । କାବ୍ୟ ଲକ୍ଷ୍ମୀଙ୍କର ସ୍ୱୟଂବର ପାଇଁ ଏ କେବଳ ଏକ ଶୁଭ ନହବତ୍ । କବି ବ୍ୟକ୍ତିତ୍ୱ ଓ ପ୍ରତିଭାର କ୍ରମ ବର୍ଦ୍ଧମାନ ବିକାଶ ପାଇଁ ଏହା ଅତ୍ୟନ୍ତ ଉପଯୋଗୀ ।



୭ । ଦାଶ, ଦେବେନ୍ଦ୍ର କୁମାର —'ଆଧୁନିକ ଓଡ଼ିଆ ସାହିତ୍ୟିକଙ୍କର ମାନସିକ ସ୍ଥିତି,' 'ନବପତ୍ର,' ମାର୍ଚ୍ଚ—୧୯୮୭ ।

# ସହାୟକ ଗ୍ରନ୍ଥପଞ୍ଜୀ


## ଓଡ଼ିଆ

୧। ଆଚାର୍ଯ୍ୟ, ବୃନ୍ଦାବନଚନ୍ଦ୍ର—ଓଡ଼ିଆ ସାହିତ୍ୟର ସଂକ୍ଷିପ୍ତ ପରିଚୟ, କଟକ, ୧୯୬୪।

୨। ଚଇନି, ରତ୍ନାକର—ସ୍ୱାଧୀନୋତ୍ତର ଓଡ଼ିଆ ସାହିତ୍ୟ, କଟକ, ୧୯୭୭।

୩। ଦାସ, ଦାଶରଥି—ଆଧୁନିକ କାବ୍ୟ ଜିଜ୍ଞାସା: ଚତୁଷ୍କଲ୍ପ, କଟକ, ୧୯୭୪।

୪। ପଣ୍ଡା, ରାଜେନ୍ଦ୍ର କିଶୋର—ଚୌକାଠରେ ଚିରକାଳ, କଟକ, ୧୯୮୧।

୫। ପଟ୍ଟନାୟକ, ପ୍ରସନ୍ନ କୁମାର—ଆଧୁନିକ ଓଡ଼ିଆ କବିତାରେ ଶାସ୍ତ୍ରୀୟ ଚିନ୍ତାଧାରା, କଟକ, ୧୯୮୪।

୬। ମହାପାତ୍ର, ସୀତାକାନ୍ତ—ଭିନ୍ନ ଆକାଶ ଭିନ୍ନ ଦୀପ୍ତି, କଟକ, ୧୯୮[illegible]।

୭। ମହାପାତ୍ର, ସୀତାକାନ୍ତ—ନିଃସଙ୍ଗ ମଣିଷ, କଟକ, ୧୯୮୦।

୮। ମହାନ୍ତି, ଶରତକୁମାର—ଅସ୍ତିତ୍ୱବାଦର ମର୍ମକଥା, କଟକ, ୧୯୬୭।

୯। ମହାନ୍ତି, ଶରତ କୁମାର—ସନ୍ଦେହ ଓ ସ୍ପନ୍ଦନ, କଟକ, ୧୯୭୦।

୧୦। ମହାନ୍ତି, ଶରତ କୁମାର—ଜାଁପଲ ସାର୍ତ୍ତ୍ରେ, କଟକ, ୧୯୭୩।

୧୧। ମିଶ୍ର, ସୌଭାଗ୍ୟ କୁମାର—ଅନ୍ଧ ମହୁମାଛି, କଟକ, ୧୯୬୭।

୧୨। ମିଶ୍ର, ବାମନ—କବି : କବିତା ଓ ତା'ର ପୃଷ୍ଠଭୂମି, କଟକ, ୧୯୭୭।

୧୩। ରାଉତରାୟ, ସଚ୍ଚିଦାନନ୍ଦ—କବିତା—୧୯୬୨, କଟକ, ୧୯୬୨।

୧୩। ରାଉତରାୟ, ସଚ୍ଚିଦାନନ୍ଦ—ପଲ୍ଲିଶ୍ରୀ, କଟକ, ୧୯[illegible]୧।

୧୪। ରାଉତରାୟ, ସଚ୍ଚିଦାନନ୍ଦ—ପାଣ୍ଡୁଲିପି, କଟକ, ୧୯୪[illegible]।

୧୫। ରାଉତରାୟ, ସଚ୍ଚିଦାନନ୍ଦ—ସାହିତ୍ୟ ବିଚାର ଓ ମୂଲ୍ୟବୋଧ, କଟକ, ୧୯୭୨।

୧୬। ବସୁ, ଅପୂର୍ବ ରଞ୍ଜନ—ଆଧୁନିକ କବିତାର ଦିଗଦର୍ଶନ (?), ୧୯୭୨।

୧୭। ଶତପଥୀ, ନିତ୍ୟାନନ୍ଦ—ଆଧୁନିକ ଓଡ଼ିଆ ସାହିତ୍ୟ, କଟକ, ୧୯୬୭।

୧୮। ଷଡ଼ଙ୍ଗୀ, ନୃସିଂହ—ପ୍ରାଚୀନ ଓ ଆଧୁନିକ ସାହିତ୍ୟ ସମୀକ୍ଷା, କଟକ, ୧୯୮୦।

୧୯। ଲେଙ୍କା, କମଳାକାନ୍ତ—ସୁନା ଫସଲ (୧୯୫୮), ପ୍ରୀତି ଓ ପ୍ରଣତି (୧୯୬୩), ଉତ୍ତରଣ (୧୯୬୭), ମୁକ୍ତି ଅନ୍ୱେଷଣ (୧୯୭୩), ଜଟିତାର ମୃନ୍ମୟ (୧୯୬୮), ଅନ୍ତଃ ସ୍ତୂପ (୧୯୬୪), ଏକ ସ୍ୱପ୍ନ ଗୋଟିଏ ଆଷାଢ଼ଚାର (୧୯୭୮), ସତ୍ୟ ସନ୍ଧିତ (୧୯୭୮) ଢୋଲର ନାମ ଗୀତ (୧୯୭[illegible]), କମଳାକାନ୍ତଙ୍କ ଶ୍ରେଷ୍ଠ କବିତା ୧୯୭୯, ଝିପିଙ୍କର ଖେଳ (୧୯୮୦), ଗୀତ ଗା' ନାରେ ପକ୍ଷୀ (୧୯୮[illegible])।

## ବଙ୍ଗଳା

୨୦। ଦତ୍ତ, ସୁଧୀର କୁମାର—ଦର୍ଶନତତ୍ତ୍ୱ, କଲିକତା, (୧୯୭୯)।

ଇଂରାଜୀ

21. Bowra. C. M.—The Romantic Imagination, Oxford University Press, 1950
22. Caudwell, Christopher Illusion and Reality, New Delhi, 1981.
23. Das Gupta, Shashibhusan.- Obscure Religious Cults As Background of Bengali Literature, Calcutta, 1946.
24. Feder, Lillian—Ancient Myth in Modern Poetry, 1977.
25. Freud— S. New Introductory Lectures on Psycho-ana lysis, Trans. W. H. J. Sprott, London, 1949.
26. Grierson, H. J. C. (Edited) Metaphysical Lyrics and Poems of the Seventeenth Century, London, 1972.
27. Hulme, T. E.—Notes on Language and Style.
28. Joad, C. E. M.- Guide to ModernT hought.
29. Lenka, Kamalakanta—What I Look Like, Puri, 1982.
30. Lawrence, D. H.—Selected Essays, Penguin Edition, 1961.
31. Leishman, J. B. Selected Poems.: Rilke (Translated)
32. Lowell, Robert.—Life Studies, Farrar Straus and Cudahy, 1960.
33. Mckay, David.— The Living Thoughts of Kierkegaard (Edited), New York, 1952.
34. Rimbaud,- Arthun A Season in hell, New York, 1952.
35. Read, Herbert.- Phases of English Poetry, London, 1928.

36. Rosenthal, M L.—The New Poets American and British since World War—London. 1970.

37. Srivastava, Narasingha, W. H· Auden: A poet of Ideas. New Delhi, 1978.

38. Spender, Stephen.—The Creative Element, Great Britain, 1953.

39. Scarfe, Fracnis (Ed.), Baudelaire, Penguin Books, 1961.



# ପତ୍ର ପତ୍ରିକା

## ଓଡ଼ିଆ

୧ । ଆବର୍ତ୍ତି — ଫେବ୍ରୁଆରୀ, ୧୯୮୫ ।

୨ । ଇସ୍ତାହାର — ନଭେମ୍ବର, ୧୯୭୪; ଅକ୍ଟୋବର, ୧୯୭୮, ଜାନୁଆରୀ-ମାର୍ଚ୍ଚ, ୧୯୭୯; ଜାନୁଆରୀ — ମାର୍ଚ୍ଚ, ୧୯୮୩; ଏପ୍ରିଲ-ଜୁନ୍, ୧୯୮୦ ।

୩ । ଉଷା — ୧୯ଶ ସଂଖ୍ୟା, ୧୯୮୫-୮୬ ।

୪ । ଝଙ୍କାର — ୨୭ଶ ବର୍ଷ, ୪ର୍ଥ ସଂଖ୍ୟା; ୩୧ଶ, ବର୍ଷ, ୫ମ ସଂଖ୍ୟା, ଏପ୍ରିଲ, ୧୯୬୯; ଡିସେମ୍ବର, ୧୯୮୨; ଜାନୁଆରୀ, ୧୯୭୯; ମେ, ୧୯୮୬; ମାର୍ଚ୍ଚ, ୧୯୮୧; ଅଗଷ୍ଟ, ୧୯୭୪ ।

୫ । ନବପତ୍ର — ମାର୍ଚ୍ଚ, ୧୯୮୭ ।

୬ । ନବଲିପି — ଫେବ୍ରୁଆରୀ, ୧୯୮୬; ମାର୍ଚ୍ଚ, ୧୯୮୨; ମାର୍ଚ୍ଚ, ୧୯୮୧ ।

୭ । ନବୂନନ୍ଦ — ୨ୟ ବର୍ଷ /୧ମ ସଂଖ୍ୟା ।

୮ । ବିଶୁବରଣ ଦୀପିକା — ୧୯୮୦ ।

୯ । ଶବ୍ଦ — ପ୍ରଥମ ବର୍ଷ, ପ୍ରଥମ ସଂଖ୍ୟା ।

୧୦ । ସମାସ — ୧ମ ବର୍ଷ, ୧ମ ସଂଖ୍ୟା ।

୧୧ । ସଂଯୋଗ — ଏପ୍ରିଲ, ୧୯୮୦ ।

୧୨ । ସୂଚରିତା — ମାର୍ଚ୍ଚ, ୧୯୮୩ ( ଲେଖକ ବିଶେଷାଙ୍କ ) ।

୧୩ । ସାରଥି — ଏପ୍ରିଲ, ୧୯୮୧ ।

## ଇଂରାଜୀ

1. Prativa India—January-March, 1986
2. Poetry Time — December, 1983.
3. Time—April, 1973.
4. The Plain Truth—July-August, 1973.
5. The Journal of Indian Writings in English—July, 1983.
6. The Indian P. E. N—June 1968.
7. Vision—March, 1982.